

କାଞ୍ଚନଜଂଘା ଆରୋହଣ ପୂର୍ବରୁ ପ୍ରଧାନମନ୍ତ୍ରୀଙ୍କ ଠାରୁ ତ୍ରିଶୂଳ ଗ୍ରହଣ

# ଉତ୍କଳ ପ୍ରସଙ୍ଗ

ଚୈତ୍ର ୧୯୦୯ ଶକାବ୍ଦ ୪୩ ଭାଗ ୯ମ ସଂଖ୍ୟା ଅପ୍ରେଲ ୧୯୮୮



**ପ୍ରକାଶନ :** ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ ''ଉତ୍କଳ ପ୍ରସଙ୍ଗ''ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଭଳି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠବୋଲି ଭାବିବା ଉଚିତ ନୁହେଁ ।

**'ଉତ୍କଳ ପ୍ରସଙ୍ଗ'** ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁକ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

**ମୁଦ୍ରଣ :** ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

# ସୂଚୀପତ୍ର

# ବନ୍ଦେ ଉତ୍କଳ ଜନନୀ

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର

ବନ୍ଦେ ଉତ୍କଳ ଜନନୀ ।
ଚାରୁହାସମୟୀ ଚାରୁ ଭାଷମୟୀ ଜନନୀ, ଜନନୀ, ଜନନୀ ॥

ପୂତ-ପୟୋଧି-ବିଧୌତ-ଶରୀରା,
ତାଳତମାଳ-ସୁଶୋଭିତ-ତୀରା,
ଶୁଭ୍ର ତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ॥

ଘନ ବନଭୂମି ରାଜିତ ଅଙ୍ଗେ
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ॥

ସୁନ୍ଦରଶାଳି-ସୁଶୋଭିତ-କ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ ॥

ସୁନ୍ଦର ମନ୍ଦିର ମଣ୍ଡିତ-ଦେଶା,
ଚାରୁକଳାବଳି-ଶୋଭିତ ବେଶା,
ପୁଣ୍ୟତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ ॥

ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡନ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ ॥

କବିକୁଳମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନବିଘୋଷିତ-କୀର୍ତ୍ତି ଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିର ଶରଣ୍ୟେ
ଜନନୀ, ଜନନୀ, ଜନନୀ ॥



• କୋଟି କୋଟି କଣ୍ଠେ ଆଜି ଉଠୁଛେ ଗର୍ଜ୍ଜନରେ ବାଜି, ଉତ୍କଳର ଜୟଗୀତି ଉନ୍ମାଦନା ଭରା,
କମ୍ପିଉଠୁ ଶୈଳଭୂମି ସସାଗରା ଧରା ।
କମ୍ପିଉଠୁ ଶୁଣେ ଶୁଣେ ଆକାଶ ଅବନୀ,
ସୁଧାମୟୀ ମା ମୋର ଉତ୍କଳ ଜନନୀ,
ମୋର ଉତ୍କଳ ଜନନୀ,
ମୋର ଉତ୍କଳ ଜନନୀ ॥



राष्ट्रपति
भारत गणतंत्र
PRESIDENT
REPUBLIC OF INDIA



## MESSAGE

The creation of the Province of Orissa on April 1, 1936, gave a geopolitical personality to an important facet of India's cultural heritage. I would like to felicitate the Government of Orissa on its decision to commemorate this event suitably.

Orissa played a memorable part in the unfolding of the freedom movement, with Utkalmani Pandit Gopabandhu Das becoming a veritable legend of our times. His autobiography written as a political prisoner in jail stirred the whole country, while his self-abnegating dedication to the uplift of the poor people of Orissa culminating in premature death, has served as an object-lesson in patriotism. Other leaders like the great patriot Madhusudan Das, Biswanath Das, Nabakrushna Choudhury, Monomohan Choudhury, and Harekrushna Mahtab kept Orissa's name in the forefront of the nation's renaissance.

The Sarvodaya Movement found notable adherents in the State, especially among its women leaders such as the universally respected late Shrimati Ramadevi Choudhury.

Orissa's vast mineral and marine resources have facilitated the setting up of the Steel Plant at Rourkela, the Power and Aluminium Plants at Talcher, the Fertilizer Plant and Port at Paradip, the Hirakund Power Project, to name a few.

With a careful husbanding of resources I have every confidence that Orissa will soon emerge as one of the forward and developed States in the Country. On this auspicious occasion, I extend my felicitations to the people of Orissa and wish them every happiness and well-being.

New Delhi,
March 26, 1988

R. VENKATARAMAN

गणराज्य जयते



उप-राष्ट्रपति, भारत
नई दिल्ली
VICE-PRESIDENT
INDIA
NEW DELHI

March 26, 1988

MESSAGE

On the occasion of the Golden Jubilee of the formation of Orissa, I extend my warm greetings and good wishes to the people of Orissa for their all-round progress, happiness and development.

History stands witness to the rich contributions made by Orissa to the ethos of our country from ancient times. Orissa has enriched the country's spiritual, cultural and intellectual heritage.

May modern Orissa remain in the forefront of our various nation-building activities.

S. D. Sharma
( S. D. Sharma )



# ୧୯୮୮
# ଓଡ଼ିଶା ଦିବସ ଉପଲକ୍ଷେ
# ପ୍ରଧାନମନ୍ତ୍ରୀଙ୍କ ବାର୍ତ୍ତା

"୧୯୮୮ ଓଡ଼ିଶା ଦିବସ ଉପଲକ୍ଷେ ମୁଁ ଓଡ଼ିଶାବାସୀଙ୍କୁ ମୋର ଶୁଭେଚ୍ଛା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଆଗାମୀ ବର୍ଷଗୁଡ଼ିକରେ ସେମାନଙ୍କର ସୁଖ ଓ ସମୃଦ୍ଧି କାମନା କରୁଛି ।"



# ୧୯୯୮

# ଓଡ଼ିଶା ଦିବସ ଉପଲକ୍ଷେ

## ରାଜ୍ୟପାଳଙ୍କ ବାର୍ତ୍ତା

"୧୯୯୮ ମସିହା ଅପ୍ରେଲ ପହିଲା ଦିନ ଓଡ଼ିଶା ତା'ର ୫୨ ତମ ଜନ୍ମବାର୍ଷିକୀ ପାଳନ କରୁଛି । ଏହି ଶୁଭ ଅବସରରେ ମୁଁ ରାଜ୍ୟର ଜନସାଧାରଣଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରୁଛି । ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ଦିଗରେ ଯେଉଁ ନେତୃବୃନ୍ଦ ଏହି ଆନ୍ଦୋଳନରେ ନେତୃତ୍ୱ ନେଇଥିଲେ ସେମାନଙ୍କୁ ରାଜ୍ୟବାସୀଙ୍କ ସହ ମୁଁ ମୋର ସମ୍ମାନ ଜଣାଉଛି ।

"ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବା ପରଠାରୁ ରାଜ୍ୟରେ ବହୁବିଧ ପରିବର୍ତ୍ତନ ଦେଖାଦେଇଛି । ଆମର କବି, ଲେଖକ ଓ ବିଦ୍ୱାନ୍ ବ୍ୟକ୍ତିଗଣ କେବଳ ଯେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ତାହା ନୁହେଁ, ପ୍ରତ୍ୟୁତ ଜାତୀୟ ସଂସ୍କୃତି ଓ ଐତିହ୍ୟକୁ ଋଦ୍ଧିମନ୍ତ କରି ଗଢ଼ି ତୋଳିବାରେ ସେମାନଙ୍କର ଉଲ୍ଲେଖନୀୟ ଅବଦାନ ରହିଛି । ଆମର ନୃତ୍ୟ ଓ ସଂଗୀତର ଲାଳିତ୍ୟ, କମନୀୟତା ଓ ନିଖୁଣତା ଦେଶ-ବିଦେଶର ଅଗଣିତ ନରନାରୀଙ୍କ ହୃଦୟକୁ ବିମୁଗ୍ଧ କରିଛି । ରାଜ୍ୟର ଜନସାଧାରଣଙ୍କ ଅର୍ଥନୈତିକ ବିକାଶ ଲାଗି ଆମର ବିପୁଳ ଭୂ-ସଂପଦ, ଜଳରାଶି ଓ ପ୍ରାକୃତିକ ସମ୍ବଳ ବିନିଯୋଗ କରାଯାଉଛି । ଓଡ଼ିଶାକୁ ପର୍ଯ୍ୟଟକମାନଙ୍କର ଏକ ମନୋରମ ଆକର୍ଷଣୀୟ ସ୍ଥଳୀରେ ପରିଣତ କରିବା ନିମିତ୍ତ ତା'ର ବିପୁଳ ପ୍ରାକୃତିକ ବିଭବର ବିକାଶ ସାଧନ ଲାଗି ସବିଶେଷ ଧ୍ୟାନ ଦିଆଯାଉଛି । ଏ ଦିଗରେ ବିଶେଷ ସାଫଲ୍ୟ ମିଳିଛି ଓ ଆହୁରି ଅନେକ କିଛି କରିବାକୁ ରହିଛି । ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ବହୁବିଧ ସମ୍ଭାବନାକୁ ଦୃଢ଼ ବାସ୍ତବତାର ରୂପରେଖ ଦେବା ଲାଗି ଓଡ଼ିଶାର ଜନସାଧାରଣ ନୂତନ ଉତ୍ସାହ ଓ ଉଦ୍ଦୀପନା ସହିତ ସେମାନଙ୍କର ଉତ୍ସର୍ଗୀକୃତ ଉଦ୍ୟମ ଅବ୍ୟାହତ ରଖିବେ । ଓଡ଼ିଶାର ପ୍ରଗତି ଓ ସମୃଦ୍ଧିର ଧାରା ସହିତ ନିବିଡ଼ ଭାବରେ ସଂଶ୍ଲିଷ୍ଟ ଥିବାରୁ ମୁଁ ଗର୍ବ ଅନୁଭବ କରୁଛି ।"



# ୧୯୮୮
# ଓଡ଼ିଶା ଦିବସ ଉପଲକ୍ଷେ

## ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା

"ଅପ୍ରେଲ ପହିଲା ଓଡ଼ିଶା ପାଇଁ ମହତ୍ୱପୂର୍ଣ୍ଣ । କାରଣ, ଏହିଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଜନ୍ମଲାଭ କରିଥିଲା । ଗତବର୍ଷ ଓଡ଼ିଶାର ସୁବର୍ଣ୍ଣ ଜୟନ୍ତୀ ବର୍ଷ ପୂର୍ତ୍ତି ହେବାପରେ ଆଜି ଓଡ଼ିଶା ରାଜ୍ୟ ତା'ର ସ୍ୱତନ୍ତ୍ରତାର ୫୧ ବର୍ଷରେ ପଦାର୍ପଣ କରୁଛି । ଏକ ମୃତ୍ୟୁଞ୍ଜୟୀ ଜାତିର ଉତ୍‌ଥାନ ପତନ ମଧ୍ୟରେ ଗୋଟିଏ ଗୋଟିଏ ସମୟ ବିଶେଷ ଭାବରେ ସ୍ମରଣୀୟ । ଗତ ୫୧ ବର୍ଷ ସେହିପରି ଗୋଟିଏ ଗୌରବମୟ ଯୁଗ । ଏକ ପରାଧୀନତାର ଯୁଗରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ କରିବା ପାଇଁ ଓଡ଼ିଶାର ଜନଗଣଙ୍କୁ ବହୁ ସଂଗ୍ରାମ କରିବାକୁ ପଡ଼ିଥିଲା । ସ୍ୱାଧୀନତା ସଂଗ୍ରାମ ଓ ସ୍ୱତନ୍ତ୍ର ପ୍ରଦେଶ ପାଇଁ ସଂଗ୍ରାମ, ଏହି ଦୁଇଟି ଯାକ ପାଇଁ ଯେଉଁ ତ୍ୟାଗ, ତପସ୍ୟା, ସଂଗ୍ରାମ ଓ ସାଧନା କରିବାକୁ ପଡ଼ିଚି, ତା'ର ତୁଳନା ନାହିଁ । ଉତ୍କଳ ଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଓ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଫକୀର ମୋହନ, ରାଧାନାଥ, ମଧୁସୂଦନ, ଗଙ୍ଗାଧର ଓଡ଼ିଆ ଜାତୀୟତା, ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟକୁ ବଞ୍ଚାଇ ରଖିବା ପାଇଁ ଓ ଏହାର ଅଭିବୃଦ୍ଧି ପାଇଁ ଆପ୍ରାଣ ଚେଷ୍ଟା କରିଛନ୍ତି । ତାହାରି ଫଳରେ ୧୯୩୬ ସାଲରେ ବହୁ ଭାଷାଭାଷୀ ଲୋକେ ସ୍ୱତନ୍ତ୍ର ପ୍ରଦେଶ ପାଇଁ ଦାବୀ କରି ଆସୁଥିଲେ ମଧ୍ୟ କେବଳ ଓଡ଼ିଆ ଜାତି ତା'ର ଏକ ସ୍ୱତନ୍ତ୍ର ପ୍ରଦେଶ ଲାଭ କରି ପାରିଥିଲା । ଆଜି ଏହି ପୂର୍ବସୂରୀମାନଙ୍କୁ ଏବଂ ସେମାନଙ୍କ ସହିତ ଯେଉଁ ଅଗଣିତ ଜନତା ସଂଗ୍ରାମ କରିଥିଲେ ମୁଁ ସେମାନଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଚି ।

"୧୯୩୬ରୁ ୧୯୮୮ ମଧ୍ୟରେ ଓଡ଼ିଶାର ଅଭୂତପୂର୍ବ ଉନ୍ନତି ଘଟିଚି । ଏହାର ମାନଚିତ୍ର ବଦଳି ଯାଇଚି । କୃଷି, ଶିଳ୍ପ, ଶିକ୍ଷା, ସଂସ୍କୃତି, ସମସ୍ତ କ୍ଷେତ୍ରରେ ଓଡ଼ିଶାର ବିପୁଳ ଅଗ୍ରଗତି ସମ୍ଭବ ହୋଇଚି । ଆଜି ଓଡ଼ିଶାର ଲୋକେ ସଂକଳ୍ପବଦ୍ଧ ଭାରତରେ ନିଜର ପ୍ରାଚୀନ ଗୌରବକୁ ଫେରାଇ ଆଣିବା ପାଇଁ । ଉତ୍ତର ଭାରତ ଓ ଦକ୍ଷିଣାବର୍ତ୍ତ ମଧ୍ୟରେ ଅବସ୍ଥିତ ଓଡ଼ିଶା ହେଉଚି ଭାରତୀୟ ସଂସ୍କୃତିର ଏକ ସମନ୍ୱୟ ଭୂମି । ଭାଷା, ନୃତ୍ୟ, ସଂଗୀତ, ସାହିତ୍ୟ, ଧର୍ମ, ଆଗ୍ରହ, ବ୍ୟବହାର, ସମସ୍ତ କ୍ଷେତ୍ରରେ ଓଡ଼ିଶାରେ ଯେଉଁ ମହାନ୍ ସାଂସ୍କୃତିକ ସମନ୍ୱୟ ଗଢ଼ି ଉଠିଛି, ଭାରତବର୍ଷରେ ତାହା ଅତୁଳନୀୟ । ଓଡ଼ିଶାର ବିପୁଳ ପ୍ରାକୃତିକ ସମ୍ପଦ, ବୁଦ୍ଧିମାନ୍ ଓ ପରିଶ୍ରମୀ ଲୋକଶକ୍ତି ଏବଂ ବିଶେଷ ଭାବରେ ଏକ ଜାଗ୍ରତ ଯୁବଶକ୍ତି ନିଶ୍ଚିତ ଭାବରେ ଏହାକୁ ଆଗେଇ ନେବ ଏବଂ ଓଡ଼ିଶା ଅଚିରେ ଭାରତରେ ଶୀର୍ଷସ୍ଥାନ ଅଧିକାର କରିବ । ଆଜି ଏହି ପୁଣ୍ୟ ଦିନରେ ଆମର ସଂକଳ୍ପ ହେଉ— ଓଡ଼ିଶାକୁ ଆମେ ସବୁକ୍ଷେତ୍ରରେ ଆଗେଇ ନେବା ଏବଂ ଏକ ଗୌରବମୟ ସମୃଦ୍ଧିଶାଳୀ ଓଡ଼ିଶା ଗଠନ କରିବା ।"

# ମୋ ଦୃଷ୍ଟିରେ ....

''ଉତ୍କଳ ପ୍ରସଙ୍ଗ'' ଉତ୍କଳ ଦିବସ ଉପଲକ୍ଷେ ଅଭିନନ୍ଦନ ଜଣାଇ ଆତ୍ମପ୍ରକାଶ କରୁଛି ।

ଆଜିକୁ ବାଆନ ବର୍ଷ ପୂର୍ବେ ବ୍ରିଟିଶ ସରକାର ଓଡିଆମାନଙ୍କର ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଦାବୀକୁ ଉପେକ୍ଷା କରି ନପାରି ୧୯୩୬ ମସିହା ଅପ୍ରେଲ ପହିଲା ଦିନ ଓଡିଶାକୁ ଭାରତର ପ୍ରଦେଶ ରୂପେ ଗଢ଼ିବାକୁ ସିଦ୍ଧାନ୍ତ କଲେ । ସେହି ଦିବସକୁ ପାରଂପରିକ ଭାବରେ ''ସ୍ୱତନ୍ତ୍ର ଉତ୍କଳ ଦିବସ'' ଭାବେ ଓଡିଶାବାସୀ ପାଳି ଆସୁଛନ୍ତି । ଏହି ଦିନର ତାତ୍ପର୍ଯ୍ୟ ଆଜିର ଯୁବକମାନେ ଭଲ ଭାବରେ ହୃଦୟଙ୍ଗମ କରି ଏ ଦିନର ମହତ୍ୱକୁ ଉପଲବ୍ଧି କରିବେ ବୋଲି 'ଉତ୍କଳ ପ୍ରସଙ୍ଗ' ଦୃଢ ବିଶ୍ୱାସ ରଖୁଛି ।

ଏ ସଂଖ୍ୟାରେ ଓଡିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ''ମୋର ସ୍ୱପ୍ନ : ଓଡିଶା ଭାରତର ସର୍ବଶ୍ରେଷ୍ଠ ରାଜ୍ୟ'' ପ୍ରବନ୍ଧ ତାଙ୍କର ଏକ ଭାଷଣର କିୟଦଂଶ । ଓଡିଶାର ମୁଖ୍ୟମନ୍ତ୍ରୀଙ୍କ ସ୍ୱପ୍ନ ବାସ୍ତବତାରେ ପରିଣତ କରିବାକୁ ପ୍ରତ୍ୟେକ ଓଡିଆ ଓ ଓଡିଶାବାସୀ ଆଗଭର ହୋଇ ଐକାନ୍ତିକ ନିଷ୍ଠାର ସହ ଚେଷ୍ଟା କରିବାକୁ ''ଉତ୍କଳ ପ୍ରସଙ୍ଗ'' ସ୍ୱର ଉତ୍ତୋଳନ କରୁଛି । ଶୁଭସ୍ୟ ଶୀଘ୍ରମ୍ ।

ଏ ସଂଖ୍ୟାରେ ଓଡିଶାର ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡାଙ୍କ 'ଏକବିଂଶ ଶତାବ୍ଦୀ ପଥେ : ବସତି ଓ ଆଶ୍ରୟ ଯୋଜନା' ଶୀର୍ଷକ ପ୍ରବନ୍ଧ ଓଡିଶାରେ ଗଢି ଉଠୁଥିବା ନଗରମାନଙ୍କ ଭବିଷ୍ୟତ ବିଷୟରେ ଆଲୋକପାତ କରୁଛି । ଏଥିପ୍ରତି ଆମେ ପାଠକଙ୍କର ସହୃଦୟ ଦୃଷ୍ଟି ଆକର୍ଷଣ କରିବୁ ।

ଓଡିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରି ଗଠନ କରିବାରେ ଉତ୍କଳ ସମ୍ମିଳନୀ ଓ ପାରଳାଖେମୁଣ୍ଡିର ପ୍ରାତଃ ସ୍ମରଣୀୟ ମହାରାଜା ତଥା ଓଡିଶା ପ୍ରଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କର ଅନନ୍ୟ ଅବଦାନ ଓଡିଆ ଜାତି [illegible] ଦିନ ସ୍ମରଣ କରି ରହିବ । ଏ ସମ୍ପର୍କରେ ଡକ୍ଟର ହରିହର କାନୁନ୍‌ଗୋ, ଡକ୍ଟର ସତ୍ୟ ନାରାୟଣ ରାଜଗୁରୁ ଓ ଡକ୍ଟର ପ୍ରସନ୍ନ କୁମାର ମିଶ୍ରଙ୍କର ଲିଖିତ ତିନିଗୋଟି ପ୍ରବନ୍ଧ ପ୍ରତି ଆମେ ପାଠକମାନଙ୍କର ସ୍ୱତନ୍ତ୍ର ଦୃଷ୍ଟି ଆକର୍ଷଣ କରିବୁ । ଓଡିଶାରେ ଯେଉଁ ନବଜାଗରଣ ହୋଇଛି ତାହାକୁ ଉତ୍ତମ ମାର୍ଗରେ ପରିଚାଳନା କରି ଓଡିଶାକୁ ଭାରତର ସର୍ବଶ୍ରେଷ୍ଠ ରାଜ୍ୟରେ

ପରିଣତ କରିବା ଦାୟିତ୍ୱ ସମ୍ପର୍କରେ ଶ୍ରୀ ସାତକଡି ହୋତାଙ୍କର ''ଓଡିଶାର ଜାଗରଣ'' ପ୍ରବନ୍ଧ ପ୍ରତି ଆମେ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିବୁ ।

ଓଡିଶା ସରକାର ଓଡିଆ ଭାଷାକୁ ସରକାରୀ ଭାଷା ରୂପେ ସ୍ୱୀକୃତି ଦାନ କରି ସରକାରୀ ସ୍ତରରେ ଏହାକୁ ଚଳାଇବା ନିମନ୍ତେ ନିଷ୍ପତ୍ତି ନେଇଛନ୍ତି । ଏହି ପରିପ୍ରେକ୍ଷୀରେ ଶ୍ରୀ ସହଦେବ ସାହୁଙ୍କର ପ୍ରବନ୍ଧ ନୂତନ ଚିନ୍ତାଧାରାର ଉଦ୍ରେକ କରାଉଛି ଏବଂ ଆମେ ପାଠକଙ୍କର ଦୃଷ୍ଟି ଏଥିପ୍ରତି ଆକୃଷ୍ଟ କରିବୁ ।

ରାଜନୈତିକ ସ୍ୱାଧୀନତା ସର୍ବଦା ଅର୍ଥନୈତିକ ସ୍ଥିତି ଉପରେ ନିର୍ଭର କରେ । ଓଡିଶାର ଅର୍ଥନୈତିକ ସ୍ଥିତି ସମ୍ପର୍କରେ ଡକ୍ଟର ବୈଦ୍ୟନାଥ ମିଶ୍ରଙ୍କର ପ୍ରବନ୍ଧ ଏକ ବିଶ୍ଳେଷଣାତ୍ମକ ଆଲୋଚନା । ଏହି ଅବସରରେ ଅଧ୍ୟାପିକା ସ୍ମିତା ମିଶ୍ର ୧୯୮୮-୮୯ରେ କେନ୍ଦ୍ରୀୟ ବଜେଟର ସମୀକ୍ଷା କରିଛନ୍ତି । ଆମେ ଏଇ ଦୁଇଟି ପ୍ରବନ୍ଧ ପ୍ରତି ଅର୍ଥନୀତିବିତ୍‌ମାନଙ୍କର ଦୃଷ୍ଟି ଆକର୍ଷଣ କରୁଛୁ ।

ସ୍ୱତନ୍ତ୍ର ଓଡିଶାର ଇତିହାସ, ବର୍ତ୍ତମାନ ଏବଂ ଭବିଷ୍ୟତ ସମ୍ପର୍କରେ ବିଭିନ୍ନ ଦୃଷ୍ଟିକୋଣରୁ ଏ ସଂଖ୍ୟାରେ ସବିଶେଷ ଆଲୋଚନା କରାଯାଉଛି । ଆମର ଆଶା ସୁଧୀ ପାଠକମାନେ ଏହି ପ୍ରବନ୍ଧ ପାଠ କରି ସ୍ୱତନ୍ତ୍ର ଓଡିଶାର ସମୃଦ୍ଧିମୟ ଭବିଷ୍ୟତ ପାଇଁ ଆମ ସାଥିରେ ଆଶା ଓ ଆକାଂକ୍ଷା ନେଇ ଆଗେଇ ଯିବେ ।

ପାଠକ ପାଠିକାଙ୍କୁ ''ଉତ୍କଳ ପ୍ରସଙ୍ଗ'' ଆରଥରେ ସ୍ୱତନ୍ତ୍ର ଉତ୍କଳ ଦିବସର ଅଭିନନ୍ଦନ ଜଣାଉଛି ।

# ମୋର ସ୍ୱପ୍ନ - ଓଡ଼ିଶା ଭାରତର ସର୍ବଶ୍ରେଷ୍ଠ ରାଜ୍ୟ



ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ଓଡ଼ିଶା ଆମର ମାତୃଭୂମି । ଓଡ଼ିଶାକୁ ଭାରତର ସର୍ବଶ୍ରେଷ୍ଠ ରାଜ୍ୟ କରି ତୋଳିବାକୁ ମୋର ଅନେକ ଦିନରୁ ସ୍ୱପ୍ନ ରହି ଆସିଛି । ସେହି ସ୍ୱପ୍ନକୁ ସାର୍ଥକ କରିବାକୁ ମୁଁ ଆଜୀବନ ଚେଷ୍ଟା କରିଛି । ସେହି ସ୍ୱପ୍ନର ଓଡ଼ିଶାକୁ ବାସ୍ତବରେ ପରିଣତ କରିବା ପାଇଁ ମୁଁ ସବୁ ଓଡ଼ିଆଙ୍କୁ ଆହ୍ୱାନ ଦେଉଛି ଏବଂ ସେଥି ନମନ୍ତେ ଆଜୀବନ ଅହରହ ଚେଷ୍ଟା କରିବା ନିମନ୍ତେ ମୁଁ ଦୃଢ଼ ପ୍ରତିଶ୍ରୁତିବଦ୍ଧ ।

ଓଡ଼ିଶା ଏକ କୃଷି ପ୍ରଧାନ ଦେଶ । ଓଡ଼ିଶାର ଉନ୍ନତି କରିବାକୁ ହେଲେ କୃଷିର ଉନ୍ନତି ସର୍ବାଦୌ ଆବଶ୍ୟକ । କୃଷିର ଉନ୍ନତି ହେଲେ କୃଷକର ଉନ୍ନତି ହେବ । କୃଷକର ଉନ୍ନତି ମୁଖ୍ୟତଃ ଜଳସେଚନ ଉପରେ ନିର୍ଭର କରେ । ଜଳସେଚନ ନିମନ୍ତେ ଆଜି ସରକାର ସବୁଠାରୁ ବେଶୀ ଗୁରୁତ୍ୱ ଦେଉଛନ୍ତି । ଜଳସେଚନର ଉନ୍ନତି ନ ହେଲେ ଓଡ଼ିଶାର କୃଷି ବ୍ୟବସ୍ଥା କେବେହେଲେ ବଦଳି ପାରିବ ନାହିଁ । ତୁଳନାତ୍ମକ ବିଗ୍ଧରରେ ଦେଖା ଯାଉଛି ଯେ ଯେଉଁ ଗାଁ ଗଣ୍ଡାରେ ବା ବ୍ଲକରେ ଜଳସେଚନର ଉନ୍ନତି ହୋଇଛି, ସେହି ଗାଁ ଗଣ୍ଡାର ଅବସ୍ଥା ସ୍ୱଚ୍ଛଳ ହୋଇ ଯାଇଛି, ସେଠାରେ ଚାଷୀ ଗୋଟିଏ ଫସଲ, ଦୁଇଟି ବା ତିନୋଟି ଫସଲ କରି ପାରୁଛି । ତା'ର ଘରଦ୍ୱାର ଭଲ କରିଛି । ତା'ର ପିଲାମାନେ ଭଲ ପୋଷାକ ପିନ୍ଧୁଛନ୍ତି । ସେ ସ୍କୁଲରେ ପିଲାମାନଙ୍କୁ ପଢ଼ାଇ ପାରୁଛି । ସେ ଭଲ ଖାଉଛି ଓ ଭଲ ପିନ୍ଧୁଛି । କିନ୍ତୁ ଯେଉଁଠି ଜଳସେଚନ ନାହିଁ, ସେଠାରେ କୃଷକ କିପରି ଦରିଦ୍ର ଅବସ୍ଥାରେ ରହିଛି, ତାହା ତାଙ୍କର ଘରଦ୍ୱାର, ବେଶଭୂଷା ଓ ଖାଦ୍ୟପେୟ ଦେଖିଲେ ଜଣା ପଡ଼ିବ । ତେଣୁ ଏ ଅବସ୍ଥା ଦୂର କରିବା ପାଇଁ ଗାଁ ଗଣ୍ଡାର ଚାଷୀଙ୍କର ଅବସ୍ଥା ପରିବର୍ତ୍ତନ କରିବା ନିମନ୍ତେ ଜଳସେଚନର ବ୍ୟବସ୍ଥା କରିବାକୁ ହେବ । ସେଥିପାଇଁ ଆମ ରାଜ୍ୟ ସରକାର ନିଷ୍ପତ୍ତି ନେଉଛନ୍ତି ଯେ ଆଗାମୀ ଦୁଇବର୍ଷ ଆମେ ଜଳସେଚନର ବର୍ଷ କରିବା । ଯେଉଁଠି କେନାଲ ଅଛି, ସେଠି ଯଦି ପୂର୍ବରୁ କିଛି କେନାଲ କାମ ବାକୀ ଥାଏ ତାକୁ ଆମେ ଶେଷ କରିବା । ଡେଲ୍ଟା କେନାଲ ଅଞ୍ଚଳରେ କେତେକ ସ୍ଥାନରେ ଅର୍ଥର ଅଭାବ ଯୋଗୁଁ କେନାଲ କାମ ଅଧାରେ ରହି ଯାଇଛି । କାରଣ ସେତେବେଳେ ଭାରତ ସରକାର କହିଲେ, ବହୁ ବର୍ଷଧରି ଏ କେନାଲ କାମ ଚାଲିଲଣି ଏବଂ ଆଉ ଏ କେନାଲ କାମ କରିବା ସମ୍ଭବ ନୁହେଁ । ଏହାକୁ ଏଠାରେ ପୂର୍ଣ୍ଣଚ୍ଛେଦ କରାଯାଉ । ଏହି ନିଷ୍ପତ୍ତି ଫଳରେ ଅନେକ କେନାଲ କାମ ଏହିପରି ଅଧାରେ ରହି ଯାଇଛି । ତାକୁ ଆମେ ଯଦି ସଂପୂର୍ଣ୍ଣ କରି ପାରିବା ତେବେ ମୋ' ହିସାବରେ ଲକ୍ଷେ ଏକରରୁ ଦେଢ଼ଲକ୍ଷ ଏକର ଜମିରେ ଅଧିକା ଜଳସେଚନ କରି ପାରିବା । ତା' ଭିତରେ ପଟ୍ଟାମୁଣ୍ଡାଇ କେନାଲ ମଧ୍ୟ ଅନ୍ତର୍ଭୁକ୍ତ । ପଟଟାମୁଣ୍ଡାଇ କେନାଲର ଷୋଳ ନମ୍ବର ଡିଷ୍ଟ୍ରିବ୍ୟୁଟାରୀକୁ ଯଦି ସଂମ୍ପୂର୍ଣ୍ଣ କରି ଦିଆଯାଏ ତା' ହେଲେ ପାଞ୍ଚଟି ପଞ୍ଚାୟତର ଜଳସେଚନ ସମସ୍ୟା ଦୂର କରାଯାଇ ପାରିବ । ସେଥି ନିମନ୍ତେ ଆମ ସରକାର ନିଷ୍ପତ୍ତି ନେଇଛି ଯେ ପଟ୍ଟାମୁଣ୍ଡାଇ କେନାଲର ଷୋଳ ନମ୍ବର ଡ଼ିଷ୍ଟ୍ରିବ୍ୟୁଟାରୀକୁ ଆଗାମୀ ବର୍ଷେ ଦେଢ଼ବର୍ଷ ଭିତରେ ସଂପୂର୍ଣ୍ଣ କରି ଦିଆଯିବ । ଏହିପରି ଓଡ଼ିଶାର ଅନ୍ୟାନ୍ୟ କେନାଲଗୁଡ଼ିକ ମଧ୍ୟ ସଂପୂର୍ଣ୍ଣ କରି ଦିଆଗଲେ ଆମର ଜଳସେଚିତ ଅଞ୍ଚଳ ବହୁ ପରିମାଣରେ ବୃଦ୍ଧି ପାଇବ ।

ଅନ୍ୟ ଗୋଟିଏ ପନ୍ଥା ହେଉଛି ଲିଫ୍ଟ୍ ଇରିଗେସନ୍ । ସମୁଦ୍ରରେ ଯେଉଁ ସବୁ ନଦୀ ମିଶି ଯାଇଛି, ସେହି ନଦୀ ଗୁଡ଼ିକରେ ଜୁଆର ଆସିବା ବେଳେ ଲୁଣି ପାଣି ଆସି ଆମର ଫସଲ ନଷ୍ଟ କରି ଦେଉଛି । ଯଦି ଆମେ ସେଠାରେ କବାଟବନ୍ଧ କରି ପାରିବା, ଯେପରିକି କବାଟବନ୍ଧ ପକେଇ ଦେଲେ ବର୍ଷା ଦିନରେ ପାଣି ସମୁଦ୍ରକୁ ଚାଲିଯିବ ଓ ଅନ୍ୟ ସମୟରେ ଜୁଆରିଆ ଲୁଣା ପାଣି କବାଟକୁ ଡେଇଁ ନଦୀ ଭିତରେକୁ ନ ଆସି ପାରିବ, ତା'ହେଲେ ମଧୁର ପାଣି ସାହାଯ୍ୟରେ ଆମେ ଚାଷବାସ କରିପାରିବା ଏବଂ ଅନେକ ଜମିରେ ଆମେ ଭଲ ଉତ୍ପାଦନ କରି ପାରିବା । ଏହା କିଛି ନୂଆ କଥା ନୁହେଁ । ଏପରି ଅନେକ କବାଟବନ୍ଧ ଗୁଜୁରାଟରେ ହୋଇଛି । ତେଣୁ ଆମ ସରକାର ନିଷ୍ପତ୍ତି ନେଉଛନ୍ତି ଯେ ଏପରି ଭାବରେ ବହୁ କାର୍ଯ୍ୟକ୍ରମ ଓଡ଼ିଶାର ସାମୁଦ୍ରିକ ଉପକୂଳବର୍ତ୍ତୀ ଅଞ୍ଚଳରେ କରାଯିବ । ଏହିପରି କାର୍ଯ୍ୟ କରିବା ନିମନ୍ତେ ବାଲେଶ୍ୱର ଜିଲ୍ଲାରେ ଓ କଟକ ଜିଲ୍ଲାରେ ବହୁତ ସୁବିଧା ରହିଛି । ଏହାକୁ ଶୀଘ୍ର କାର୍ଯ୍ୟକାରୀ କରାଗଲେ ହଜାର ହଜାର ଏକର ଜମି ଜଳସେଚିତ ହୋଇ ପାରିବ । ଆମର ପୁରୁଣା ଧାରଣା ଥିଲା ଯେ ଜଳସେଚନ ନିମନ୍ତେ ବଡ଼ ବଡ଼ ବନ୍ଧ ତିଆରି ହେବ ଏବଂ ସେହି ବନ୍ଧରୁ ଅନେକ କେନାଲ ଶାଖା ପ୍ରଶାଖା ବିସ୍ତାରୀ ଭୁରିଆଡ଼େ ବିଛାଇଯିବ । କିନ୍ତୁ ସେ କାମ ହେଲା ବେଳକୁ ଖାଡ଼ିଏ ମହଣ ଘିଅ ହେଲେ ରାଧା ନାଚିବା ପରି ହୋଇ ଯାଉଛି । ଗୋଟିଏ ଗୋଟିଏ ବଡ଼ଯୋଜନା କାର୍ଯ୍ୟକାରୀ କରିବା ନିମନ୍ତେ ଶହେ ଦେଢ଼ଶ କୋଟି ଟଙ୍କା ଖର୍ଚ୍ଚ ହେଉଛି ଏବଂ ପନ୍ଦର କୋଡ଼ିଏ ବର୍ଷ ସମୟ ବିତିଯାଉଛି, ତେଣୁ ନିଷ୍ପତ୍ତି ନିଆ ଯାଉଛି ଯେ ଯେଉଁ ଯୋଜନା କମ୍ ଖର୍ଚ୍ଚରେ କାର୍ଯ୍ୟକାରୀ



ହୋଇ ବର୍ଷେ ଦୁଇବର୍ଷ ଭିତରେ ଚାଷୀଙ୍କୁ ଜଳ ଯୋଗାଇ ଦେଇ ପାରିବ, ସେହି ଯୋଜନା ଏବେଠୁ କାର୍ଯ୍ୟକାରୀ କରାଯିବ ।

ଜଳସେଚନ ନିମନ୍ତେ ଅନ୍ୟ ଉପାୟ ହେଉଛି, ଉଠା ଜଳସେଚନ । ଉଠା ଜଳସେଚନ ନିମନ୍ତେ ଏବେ ବହୁତ ଜାଗାରେ ପମ୍ପ ବସିଲାଣି ଏବଂ ଆମର ଅନୁଭୂତି ଯେ ଏହି ଉଠା ଜଳସେଚନ ପଏଣ୍ଟ ଭଲ କାମ କରି ପାରୁଛି । ଗୋଟିଏ ପମ୍ପ ସାହାରେ ଆମେ, ପାଖୋଟି ଉଠା ଜଳସେଚନ ପଏଣ୍ଟ କରି ଲୋକଙ୍କୁ କିଭଳି ସାହାଯ୍ୟ କରି ପାରିବା, ତାହା ବିଗ୍ଭର କରିବା ଉଚିତ୍ । ଏହିପରି ବାଟରେ ଆମ ସରକାର ବହୁ କ୍ଷୁଦ୍ର ଜଳସେଚନ କାର୍ଯ୍ୟକ୍ରମ ଗ୍ରହଣ କରି ଆଗାମୀ ଦୁଇବର୍ଷ ଭିତରେ ଓଡ଼ିଶାରେ ଅଧିକ ଦଶଲକ୍ଷ ଟନ୍ ଖାଦ୍ୟଶସ୍ୟ ଉତ୍ପାଦନ କରିବା । ଏହା ହେଉଛି ଏ ସରକାରର ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ । ଓଡ଼ିଶା ସବୁବେଳେ ଗୋଟିଏ ନିଅଣ୍ଟିଆ ରାଜ୍ୟ ହୋଇରହିବ ନାହିଁ । ତିନି ଚ୍ଚରି ବର୍ଷ ଭିତରେ ମରୁଡ଼ି, ବଢ଼ି, ବନ୍ୟା ସତ୍ତ୍ୱେ ଆମେ ଚେଷ୍ଟା କରି ପ୍ରମାଣିତ କରି ଦେଇଛେ ଯେ ଓଡ଼ିଶାରେ ମଧ୍ୟ ଖାଦ୍ୟ ଶସ୍ୟ ଯଥେଷ୍ଟ ଅଧିକ ବଢ଼ିପାରେ । ଓଡ଼ିଶା ଖାଦ୍ୟ ଶସ୍ୟ ବିଷୟରେ ସ୍ୱାବଲମ୍ବୀ ହୋଇ ପାରିବ । ଜଳସେଚନର ସୁବିଧା ମିଳିଲେ ଓଡ଼ିଶାର ଚାଷୀମାନେ ପଞ୍ଜାବର ଚାଷୀମାନଙ୍କୁ ମଧ୍ୟ ବଳିପାରିବେ ।

ବର୍ତ୍ତମାନ ଚାଷୀମାନଙ୍କୁ କେତେଗୁଡ଼ିଏ ସୁବିଧା ଦିଆଯାଉଛି । ରିହାତି ମୂଲ୍ୟରେ ଚାଷୀମାନଙ୍କୁ ଏବେ ସାର ଯୋଗାଇ ଦିଆଯାଉଛି । ପୋକମରା ଔଷଧ ମଧ୍ୟ ପ୍ରଚୁର ପରିମାଣରେ ଚାଷୀମାନେ ବ୍ୟବହାର କରୁଛନ୍ତି । ଉତ୍କୃଷ୍ଟ ବିହନ ମଧ୍ୟ ଚାଷୀମାନଙ୍କୁ ରିହାତି ମୂଲ୍ୟରେ ଯୋଗାଇ ଦିଆଯାଉଛି । ଚିନାବାଦାମ କ୍ଷେତ୍ରରେ ଆଜି ଓଡ଼ିଶାରେ ଏକର ପିଛା ସର୍ବାଧିକ ଉତ୍ପାଦନ ହୋଇ ପାରୁଛି । ସେହିପରି ସୋରିଷ, ରାଶି, ମୁଗ ଓ ବିରି କ୍ଷେତ୍ରରେ ମଧ୍ୟ ଓଡ଼ିଶା ଭାରତର ଅନେକ ରାଜ୍ୟ ତୁଳନାରେ ଆଗୁଆ ଅଛି । କେବଳ ଧାନ ଉତ୍ପାଦନରେ ଆମେ ପଛରେ ଅଛୁ । ତାର କାରଣ ଅଣଜଳସେଚିତ ଜିଲ୍ଲାମାନଙ୍କରେ ଆମର ଉତ୍ପାଦନ ଅତ୍ୟନ୍ତ କମ୍ ହୋଇଥିବାରୁ ସର୍ବ ଭାରତୀୟ ତୁଳନାରେ ଆମେ କମି ଯାଉଛୁ । କିନ୍ତୁ ଜଳସେଚନ ସୁବିଧା ହୋଇଗଲେ ଆମେ ଏ କ୍ଷେତ୍ରରେ ମଧ୍ୟ ଭାରତରେ ନୂଆ ରେକର୍ଡ ସୃଷ୍ଟି କରି ପାରିବା ।

ଦ୍ୱିତୀୟ କଥା ହେଲା ଅତ୍ୟାବଶ୍ୟକୀୟ ଖାଦ୍ୟ ଜିନିଷର ଉପଯୁକ୍ତ ବିତରଣ ବ୍ୟବସ୍ଥା । ଏହି ନିମନ୍ତେ ମଧ୍ୟ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଅଭାବ ଥିବା ଜାଗାରେ ଦେଢ଼ ଟଙ୍କିଆ ଚାଉଳ ଓ ଦୁଇ ଟଙ୍କିଆ ଗହମ ଯୋଗାଇ ଦେବା ପାଇଁ ଏବଂ ଖାଇବା ତେଲର ଅଭାବ ଥିବା ସ୍ଥାନରେ ଖାଇବା ତେଲ ଯୋଗାଇ ଦେବା ପାଇଁ ଦୃଢ଼ ନିଷ୍ପତ୍ତି ନିଆ ଯାଇଛି । ଆଗରୁ ଖାଇବା ତେଲ ଭୁବନେଶ୍ୱର ଓ ଜିଲ୍ଲା କେନ୍ଦ୍ରରେ ପହଞ୍ଚିଲେ ଏବଂ ବ୍ଲକ୍ କେନ୍ଦ୍ରକୁ ଯାଇ ନ ଥିଲା । ବର୍ତ୍ତମାନ ସରକାର ବ୍ଲକ୍‌କୁ ମଧ୍ୟ ତେଲ ପଠାଇବାର ବ୍ୟବସ୍ଥା କରିଛନ୍ତି ଏବଂ ଗାଁ ଗଣ୍ଡାରେ ଯେଉଁଠି ଖାଇବା ତେଲ ପହଞ୍ଚିପାରୁ ନ ଥିଲା, ସେଠାରେ ମଧ୍ୟ ଖାଇବା ତେଲ ପହଞ୍ଚାଇବାର ବ୍ୟବସ୍ଥା କରିଛନ୍ତି । ଦର ଦାମ୍‌କୁ ରୋକିବା ପାଇଁ ସରକାର ଯେଉଁ ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଗ୍ରହଣ କରିଛନ୍ତି, ବିଶେଷ ଭାବରେ ଚାଉଳ, ଗହମ, ଖାଇବା ତେଲ ଓ କିରାସିନିର ଦର ନ ବଢ଼ି ସ୍ଥିର ରହିବା ପାଇଁ ବଣ୍ଟନ ବ୍ୟବସ୍ଥାର କାର୍ଯ୍ୟପନ୍ଥା ଗ୍ରହଣ କରାଯାଇଛି । ଯେଉଁମାନେ ଅର୍ଥାତ୍ ଗାଁ ଗଣ୍ଡାରେ ଜିନିଷ ପତ୍ରର ଉତ୍ତମ ବଣ୍ଟନର ବ୍ୟବସ୍ଥା କରିବା ଦାୟିତ୍ୱରେ ଥିବା ଦୋକାନୀ ଏବଂ ଏହାର ଭିତରେ ଏହି ବ୍ୟବସ୍ଥାର ବିରୋଧାଚରଣ କରିବେ, ସେମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ । ଏତଦ୍ୱାରା ଗାଁର କୃଷକ ଓ ଶ୍ରମିକମାନେ ଠିକ୍ ଦାମରେ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ପାଇପାରିବେ ।

ତୃତୀୟ ପ୍ରଧାନ ସମସ୍ୟା ହେଉଛି ପାନୀୟ ଜଳର ବ୍ୟବସ୍ଥା । ପାନୀୟ ଜଳ ଦ୍ୱାରା ଆମେ ବହୁତ ରୋଗର ନିରାକରଣ କରିପାରିବା । ଅନେକ ରୋଗ ଦୂଷିତ ପାନୀୟ ଜଳ ଯୋଗୁଁ ହୋଇଥାଏ । ଯଦି ଆମେ ଗାଁ ଗଣ୍ଡାରେ ଏବଂ ସହରରେ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେଇପାରିବା, ତା ହେଲେ ଶତକଡ଼ା ପଚାଶ ଭାଗ ରୋଗ ନିରାକରଣ ହୋଇଯିବ । ସେଥି ନିମନ୍ତେ ସରକାର ପାନୀୟ ଜଳଯୋଗାଣ ନିମନ୍ତେ ବିଶେଷ ଗୁରୁତ୍ୱ ଦେଉଛନ୍ତି । ପାନୀୟ ଜଳ ଯୋଗାଣ ବ୍ୟବସ୍ଥାକୁ ଦୃଢ଼ କରିବାକୁ ବହୁ ଅର୍ଥ ବ୍ୟୟରେ ଅଧିକ ସଂଖ୍ୟକ ଟିଉବ୍ ୱେଲ ଖୋଳିବା ବ୍ୟବସ୍ଥା ହୋଇଛି । ଡେନ୍‌ମାର୍କ ସରକାରଙ୍କ ସହାୟତାରେ ଡାନିଡ଼ା ପ୍ରୋଜେକ୍ଟ ଯୋଜନା ଦ୍ୱାରା ଗଭୀର କୂପ ଖନନ କରାଯାଇ ବିଭିନ୍ନ ବ୍ଲକ୍‌ରେ ପାନୀୟ ଜଳ ଯୋଗାଇ ଦିଆଯାଉଛି ।

ଚତୁର୍ଥ ସମସ୍ୟା ହେଉଛି ଓଡ଼ିଶାର ରାସ୍ତାଘାଟର ବିକାଶ କରିବା । ଅର୍ଥନୀତିର ବିକାଶ ନିମନ୍ତେ ରାସ୍ତା ଘାଟର ଉନ୍ନତି ଆବଶ୍ୟକ । ସମସ୍ତେ ଜାଣନ୍ତି ଯେ ରାସ୍ତାଘାଟ ନ ହେଲେ ଚାଷୀମାନେ ତାଙ୍କ ଜିନିଷପତ୍ର ବିକ୍ରି କରିବାକୁ ବଜାରକୁ ନେଇ ପାରିବେ ନାହିଁ, ବ୍ୟବସାୟୀ ମାନେ ବ୍ୟବସାୟ କରିପାରିବେ ନାହିଁ ଓ ଛାତ୍ରଛାତ୍ରୀମାନେ ଗାଁ ସହରରୁ ସ୍କୁଲ କଲେଜକୁ ଯାଇ ପାରିବେ ନାହିଁ । ସେଥି ଯୋଗୁଁ ରାସ୍ତାର ବିକାଶ ଉପରେ ଏ ସରକାର ଗୁରୁତ୍ୱ ଦେଉଛି । ଯେଉଁଠି ରାସ୍ତା ନାହିଁ ସେଠି ରାସ୍ତା କରାଯାଉଛି । ନଦୀ ନାଳ ଓ କେନାଲ ଉପରେ ପୋଲ କରାଯାଉଛି । ପ୍ରତି ଗ୍ରାମ ପଞ୍ଚାୟତରୁ ବ୍ଲକ୍‌କୁ ଏବଂ ବ୍ଲକ୍‌ରୁ ସବ୍‌ଡିଭିଜନ୍‌କୁ ରାସ୍ତା କରିବା ଉଦ୍ଦେଶ୍ୟ ଆମର ଅଛି । ଓଡ଼ିଶାର ରାସ୍ତା ଆଜି ପଡ଼ୋଶୀ ରାଜ୍ୟମାନଙ୍କର ରାସ୍ତା ଅପେକ୍ଷା ଯଥେଷ୍ଟ ଉନ୍ନତ ଅବସ୍ଥାରେ ଅଛି । ଏ କଥା ବାହାରୁ ଆସୁଥିବା ପର୍ଯ୍ୟଟକମାନେ

ମୁକ୍ତ କଣ୍ଠରେ ସ୍ୱୀକାର କରୁଛନ୍ତି, ତା ଅର୍ଥ ଆମେ ଗତ କେତେ ବର୍ଷ ଭିତରେ ଗୋଟିଏ ଧାରଣା ସୃଷ୍ଟି କରି ପାରିଛେ ଯେ ଯାତାୟାତ ଦିଗରେ ଓଡ଼ିଶା ତାର ପଡ଼ୋଶୀ ସବୁ ରାଜ୍ୟ ଅପେକ୍ଷା ଏକ ଉନ୍ନତ ଅବସ୍ଥାକୁ ଆସିପାରିଛି ଏବଂ ଚେଷ୍ଟା କଲେ ରାସ୍ତାଘାଟରେ ଓଡ଼ିଶା ନିଶ୍ଚୟ ଦିନେ ଭାରତର ଅନ୍ୟ ସବୁ ରାଜ୍ୟକୁ ପଛରେ ପକାଇ ଦେବ । ଏ ଦିଗରେ ଓଡ଼ିଶା ସରକାର କୃତ ସଂକଳ୍ପ, ଆସନ୍ତା ପାଞ୍ଚ ବର୍ଷ ଭିତରେ ଓଡ଼ିଶାର ଜାତୀୟ ରାଜପଥ ଓ ଅନ୍ୟାନ୍ୟ ରାସ୍ତାକୁ ଭାରତର ଶ୍ରେଷ୍ଠତମ ରାସ୍ତା ସହ ତୁଳନା କରାଯାଇ ପାରିବ ।

ପଞ୍ଚମ ସମସ୍ୟା ହେଲା ଶିକ୍ଷା । । ଯେଉଁ ଦେଶରେ ଯେତେ ଯେତେ ବେଶୀ ଶିକ୍ଷିତ ସେ ଦେଶ ସେତିକି ଉନ୍ନତ ବୋଲି କୁହାଯାଏ । ଶିକ୍ଷା ଗୋଟିଏ ସାମୂହିକ ବିଷୟ । ଏଥିରେ ପ୍ରାଇମେରୀ ସ୍କୁଲଠୁ କଲେଜ ପର୍ଯ୍ୟନ୍ତ, ବିଜ୍ଞାନ ଶିକ୍ଷାଠାରୁ ଇଞ୍ଜିନିୟରିଂ, ଡାକ୍ତରୀ ଶିକ୍ଷା ପର୍ଯ୍ୟନ୍ତ ନାରୀ ଶିକ୍ଷାଠାରୁ ପ୍ରୌଢ଼ ଶିକ୍ଷା ପର୍ଯ୍ୟନ୍ତ ଏହିପରି ଶିକ୍ଷାର ବିଭିନ୍ନ ଦିଗ ମନକୁ ଆସିଥାଏ । ତା ଛଡ଼ା ପ୍ରାଇମେରୀ ସ୍କୁଲ ଅଛି । କିନ୍ତୁ ତା ପାଇଁ ଘର ନାହିଁ । ବିଜ୍ଞାନ କଲେଜ ଅଛି କିନ୍ତୁ ତାର ଯନ୍ତ୍ରପାତି ନାହିଁ । ଇଂଜିନିୟରିଂ କଲେଜ ଅଛି, କିନ୍ତୁ ତା ପାଇଁ ଉପଯୁକ୍ତ ଶିକ୍ଷକ ନାହାନ୍ତି । ଏହିପରି ବିଭିନ୍ନ ସମସ୍ୟା, ଶିକ୍ଷା କହିଲେ ମନକୁ ଆସେ । ସବୁ ସମସ୍ୟାର ସବୁଦିନ ପାଇଁ ସମାଧାନ ଗୋଟିଏ ଦିନରେ ବା ଗୋଟିଏ ବର୍ଷରେ ହୋଇ ପାରିବ ନାହିଁ । ଏଥିପାଇଁ ଆବଶ୍ୟକ ଅର୍ଥ, ସମୟ ଏବଂ ଉତ୍ସର୍ଗୀକୃତ ମନୋଭାବ । ଓଡ଼ିଶା ସରକାର ଶିକ୍ଷାର ପ୍ରତ୍ୟେକ ଦିଗରେ ପ୍ରତ୍ୟେକ ସ୍ତରରେ ଉନ୍ନତି ଆଣିବାକୁ ନିଶ୍ଚୟ କରିଛନ୍ତି । ଓଡ଼ିଶାରେ ନୂଆ ହେଉଥିବା ପ୍ରାଇମେରୀ ସ୍କୁଲ, ହାଇସ୍କୁଲ, ଏବଂ କଲେଜ ଭାରତ ବର୍ଷରେ ଅନ୍ୟ କେଉଁଠି ହୋଇ ନାହିଁ । ଏ ଦିଗରେ ଓଡ଼ିଶା ଆଗୁଆ ହୋଇ ଯାଉଛି । କେବଳ ଯେ ରାଜ୍ୟରେ ଖାଲି ଶିକ୍ଷାର ବିସ୍ତାର ଘଟିଛି ତାହା ନୁହେଁ, ଆମେ ଏକ ପ୍ରଗତିଶୀଳ ପଦକ୍ଷେପ ଗ୍ରହଣ କରିଛୁ । ଓଡ଼ିଶାରେ ଯେତେ ପ୍ରାଇମେରୀ ସ୍କୁଲ ଅଛି ସବୁଥିରେ ଅଗ୍ନି ନିରୋଧକ ଛାତ ପକାଇବା ନିମନ୍ତେ ବ୍ୟବସ୍ଥା କରାଯାଉଛି ଏବଂ ଏହି କାର୍ଯ୍ୟ ଆସନ୍ତା ପାଞ୍ଚ ବର୍ଷ ଭିତରେ ଶେଷ କରାଯିବ । ଅନ୍ୟ ଏକ ପ୍ରଗତିଶୀଳ ପଦକ୍ଷେପ ହେଉଛି ଯେ ଛାତ୍ରୀମାନେ ପ୍ରାଇମେରୀ ସ୍କୁଲଠାରୁ ଆରମ୍ଭ କରି ଏମ. ଏ., ଏମ୍. ଏସ୍. ସି. ପର୍ଯ୍ୟନ୍ତ ଯେତେବାଟ ପଢ଼ିବାକୁ ଚାହିଁବେ, ତାଙ୍କଠାରୁ ଦରମା ନିଆଯିବ ନାହିଁ । ଏହି ନିଷ୍ପତ୍ତି ନେବାର କାରଣ ଯେ ସରକାର ଚିନ୍ତା କଲେ ଯେ ନାରୀ ଶିକ୍ଷା କ୍ଷେତ୍ରରେ ଓଡ଼ିଶା ବହୁତ ପଛରେ ପଡ଼ିଛି । ନାରୀ ଶିକ୍ଷା ବିନା ସମାଜରେ ପ୍ରଗତି ହୋଇ ପାରିବ ନାହିଁ । ଗୋଟିଏ ଶଗଡ଼ର ଗୋଟିଏ ଚକ ଫାଟି ଯାଇଥିଲେ ବା ଖରାପ ହୋଇ ଯାଇଥିଲେ ଶଗଡ଼ଟି ଗଡ଼ି ପାରିବ ନାହିଁ । ତେଣୁ ଆମ ସରକାର ନାରୀ ଶିକ୍ଷାର ଗୁଣାତ୍ମକ ଏବଂ ସଂଖ୍ୟାତ୍ମକ ଉନ୍ନତି ଅତିଶୀଘ୍ର ନେବାକୁ ସ୍ଥିର କରିଛନ୍ତି । ଏହି ଅଞ୍ଚଳରେ ମୁଁ ଦେଖିଲି ଯେ, ପ୍ରାୟ ଶତକଡ଼ା ୯୬ ଭାଗ ଭାଗ ପିଲା ଯେଉଁମାନେ ୬ ଠାରୁ ୧୪ ବର୍ଷ ଭିତରେ ଅଛନ୍ତି, ସେମାନେ ସ୍କୁଲକୁ ଯାଉଛନ୍ତି ଏବଂ ଏହି ପିଲାଙ୍କ ଭିତରେ ପୁଅ ଓ ଝିଅଙ୍କ ସଂଖ୍ୟା ପ୍ରାୟ ସମାନ ସମାନ ଅଛି । ଏହା ଗୋଟିଏ ଅତ୍ୟନ୍ତ ଭଲ ଲକ୍ଷଣ । ଓଡ଼ିଶା ସାରା ସବୁ ବ୍ଲକ୍‌ରେ, ସବୁ ଗାଁରେ ଏହିପରି ହୋଇ ପାରିଲେ ଓଡ଼ିଶାର ନନ୍ଦିଘୋଷ ରଥକୁ ଆଉ କେହି ଅଟକାଇ ପାରିବେ ନାହିଁ । ଶିକ୍ଷା ଲାଭ କରିଥିବା ନାରୀ-ମାନଙ୍କୁ ଚାକିରୀ ଯୋଗାଇବା ପାଇଁ ଆମ ସରକାର ବିଶେଷ ବ୍ୟବସ୍ଥା କରିଛନ୍ତି । ନାରୀମାନଙ୍କୁ ପ୍ରାଇମେରୀ ସ୍କୁଲରେ ଶିକ୍ଷୟିତ୍ରୀ ହେବା ନିମନ୍ତେ ଅଗ୍ରାଧିକାର ଦିଆଯାଉଛି । ଏହାର କାରଣ ଝିଅମାନେ ହିଁ ଛୋଟ ଛୋଟ ପିଲାଙ୍କର ବେଶୀ ହେପାଜତ କରି ପାରିବେ, ସେମାନଙ୍କୁ ଭଲ ଭାବରେ ପାଠ ପଢ଼ାଇ ପାରିବେ । ଏହା ଛଡ଼ା ଭାରତ ସରକାର ମଧ୍ୟ ପ୍ରଶାସନ କଳରେ ଶତକଡ଼ା ୨୦ ଭାଗ ମହିଳାଙ୍କୁ ନିଯୁକ୍ତି ଦେବା ପାଇଁ ଏକ ନୀତିଗତ ନିଷ୍ପତ୍ତି ନେବାକୁ ବିଚାର କରୁଛନ୍ତି ।

ଆମ ଦେଶରେ ଏ କାର୍ଯ୍ୟକ୍ରମ ଛଡ଼ା ଅନ୍ୟାନ୍ୟ କାର୍ଯ୍ୟକ୍ରମ କରାଯାଉଛି । ଯେଉଁ ଗରିବ ଲୋକମାନେ ନାମମାତ୍ର ଚାଷୀ ଅଟନ୍ତି, ଅର୍ଥାତ୍ ଯାହାର ଅଳ୍ପ ଜମି ଅଛି ଏବଂ ଜମି ଛଡ଼ା ଅନ୍ୟଠି ମଧ୍ୟ କାମ କରିବାକୁ ପଡ଼େ, ସେହିପରି ଲୋକମାନଙ୍କୁ ଗ୍ରାମରେ ରହିଥିବା ବଢ଼େଇ, କମାର, କୁମ୍ଭାର, ବୁଣାକାର ଏବଂ ମତ୍ସ୍ୟଜୀବୀମାନଙ୍କୁ ମଧ୍ୟ ବିଭିନ୍ନ ପ୍ରକାର ସାହାଯ୍ୟ ବ୍ୟବସ୍ଥା ରହିଛି । ସେମାନେ ଏହି ସାହାଯ୍ୟ ନେଇ ଭଲ ଯନ୍ତ୍ରପାତି କିଣି, ଭଲ ବଳଦ କିଣି ନିଜ ନିଜର ଅବସ୍ଥା କିପରି ବଦଳାଇବେ ତାହା ହିଁ ଆମ ସରକାରଙ୍କର ଲକ୍ଷ୍ୟ । ଆମେ ଆଉ ଭାଗ୍ୟବାଦୀ ହୋଇ ବସିଲେ ଚଳିବ ନାହିଁ । ଗଣ-ତାନ୍ତ୍ରିକ ରାଷ୍ଟ୍ରରେ ଧନୀ ଓ ଗରିବଙ୍କ ଭିତରେ ବ୍ୟବଧାନ ରହିପାରିବ ନାହିଁ । ଭାଗ୍ୟର ନିୟନ୍ତ୍ରଣ ମନୁଷ୍ୟକୁ ହିଁ କରିବାକୁ ହେବ ଏବଂ ଏଥି ନିମନ୍ତେ ଯେଉଁ ସାହାଯ୍ୟ ବା ଋଣ ବର୍ତ୍ତମାନ ସରକାର ଦେଉଛନ୍ତି ତାକୁ ପୂରା ସଦ୍‌ବ୍ୟବହାର କରି ଆମର ଅବସ୍ଥାକୁ ବଦଳାଇବା ପାଇଁ ଚେଷ୍ଟା କରିବାକୁ ହେବ । ଯେଉଁମାନେ ଏହା କରୁଛନ୍ତି ସେମାନଙ୍କୁ ଭଲ ଫଳ ମିଳୁଛି । କିନ୍ତୁ ଯେଉଁମାନେ ଖର୍ଚ୍ଚ କରିଦେବା, କିଏ ପଚାରୁଛି, କିଏ ଋଣ ଶୁଝୁଛି—ଏ ଭଳି ଧାରଣା ନେଇ ରହିଛନ୍ତି, ସେମାନେ ଏ ସୁଯୋଗର ସଦ୍‌ବ୍ୟବହାର କରି ପାରିବେ ନାହିଁ । ତେଣୁ ଆମେ ଏ ବିଷୟରେ ସତର୍କ ରହିବା ଦରକାର । ଯିଏ ଋଣ ନେଉଛି ସେ ଋଣ ଟଙ୍କାକୁ ମୂଳଧନ ରୂପେ ବ୍ୟବହାର କରି ବେଶୀ ଉତ୍ପାଦନ କଲେ ତା' ନିଜର ଏବଂ ଦେଶର ଲାଭ ହେବ ।

କିନ୍ତୁ ଆମ ସମାଜରେ ଆଉ ଗୋଟିଏ ଶ୍ରେଣୀର ଲୋକଅଛନ୍ତି ଯାହାଙ୍କୁ ଆମେ ଭୁଲି ପାରିବା ନାହିଁ । ସେମାନେ ହେଉଛନ୍ତି ଅତି ଦୁଃସ୍ଥ ଲୋକ ସେମାନେ ଋଣ କଣ ଜାଣନ୍ତି ନାହିଁ ଏବଂ ଋଣକୁ ଶୁଝିବାପାଇଁ ତାଙ୍କର କ୍ଷମତା ନାହିଁ । ଟଙ୍କାଟିଏ ମିଳିଲେ ସେମାନେ ଘରର ଗୁଜୁରାଣ ମେଣ୍ଟାନ୍ତି । ତେଣୁ ତାଙ୍କୁ ଋଣ ଦେଇ କଣ ହେବ ? ବରଂ ତାଙ୍କୁ ଋଣ ବଦଳରେ ସାହାଯ୍ୟ ଦେବା ଦରକାର । ବିଶେଷ ଭାବରେ ଏହିପରି ଲୋକ ଅଛନ୍ତି ଯାହାର କେହି ସାହାରା ନାହାନ୍ତି, ଏହିପରି ମହିଳା ଅଛନ୍ତି, ଯାହାଙ୍କ ଉପରେ ପରିବାରର ସବୁ ବୋଝ ପଡ଼ୁଛି । ଏହିପରି ଲୋକଙ୍କୁ ଆମ ସରକାର ୬୫୦ ଟଙ୍କା ପର୍ଯ୍ୟନ୍ତ ସାହାଯ୍ୟ ଦେଉଛନ୍ତି । ଏହି ସାହାଯ୍ୟର ଉଦ୍ଦେଶ୍ୟ ହେଲା ଯେ ଏକକାଳୀନ ଟଙ୍କା ପାଇଲେ ସେମାନେ ଛୋଟିଆ ଚା' ଦୋକାନଟିଏ ବା ପାନଦୋକାନଟିଏ କରି ନିଜ ଗୋଡ଼ରେ ନିଜେ ଠିଆ ହୋଇପାରିବେ । ଏହି ଶ୍ରେଣୀର ହରିଜନ ଭାଇ ଭଉଣୀମାନେ ସମାଜରେ ବହୁଦିନ ହେଲା ଅବହେଳିତ ହୋଇ ରହିଛନ୍ତି, ଗରିବ ହୋଇ ରହିଛନ୍ତି । ସେମାନେ ନିଜଗୋଡ଼ରେ କିପରି ଠିଆହେବେ ? ତାଙ୍କରି ଅବସ୍ଥା କିପରି ବଦଳିବ ? କାରଣ ଗରିବଲୋକଙ୍କ ଅବସ୍ଥା ନ ବଦଳିଲେ ସମାଜର ଅବସ୍ଥା ବଦଳିବ ନାହିଁ । ଚାଷୀଙ୍କ ଅବସ୍ଥା ବଦଳିବା ଦରକାର । ଗରିବ ଲୋକଙ୍କ ଅବସ୍ଥା ବଦଳିବା ଦରକାର । ତା' ହେଲେହିଁ ସମାଜରେ ପରିବର୍ତ୍ତନ ହେବ । ଓଡ଼ିଶାରେ ଗୋଟିଏ ସୁଖୀ ସ୍ଥାୟୀ ଓ ସୁନ୍ଦର ସମାଜ ନିର୍ମାଣ କରିହେବ ଏବଂ ଏହି ସୁନ୍ଦର ସମାଜ ନିର୍ମାଣ କରିବା ନିମନ୍ତେ ସରକାର ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନେଉଛନ୍ତି ଏବଂ ଏହି କାର୍ଯ୍ୟକ୍ରମକୁ ଜନସାଧାରଣ ସହଯୋଗ କରିବା ଆବଶ୍ୟକ ।

ଓଡ଼ିଶାରେ ରାଜନୈତିକ କାରଣରୁ କେତେକ ବିରୋଧୀ ଲୋକ କହୁଛନ୍ତି ଯେ ଓଡ଼ିଶାରେ କିଛି ଉନ୍ନତି ହୋଇନାହିଁ । କିନ୍ତୁ ବିଭିନ୍ନ କ୍ଷେତ୍ରରେ ଓଡ଼ିଶାରେ ଯାହା ଉନ୍ନତି ହୋଇଛି, ତାହା ଓଡ଼ିଶାର ବାହାରୁ ଆସୁଥିବା ପର୍ଯ୍ୟଟକମାନେ ସ୍ୱୀକାର କରୁଛନ୍ତି । ଯେଉଁମାନେ ଅଠରଦଶ ବର୍ଷ ତଳେ ଆସିଥିଲେ, ସେମାନେ ଏବେ ଓଡ଼ିଶାର ଉନ୍ନତି ଦେଖି ଆଶ୍ଚର୍ଯ୍ୟ ହୋଇ ଯାଉଛନ୍ତି, ଓଡ଼ିଶା ଅବସ୍ଥାର ପ୍ରଶଂସା କରି ଯାଉଛନ୍ତି । ଓଡ଼ିଶା ଦିନେ ଭାରତର ସବୁଠାରୁ ପଛରେ ପଡ଼ିଥିବା ରାଜ୍ୟ ଥିଲା । ଓଡ଼ିଶା ଥିଲା ଦରିଦ୍ରତମ ରାଜ୍ୟ । ସବୁଠୁ ଗରିବ ରାଜ୍ୟ କହିଲେ ଓଡ଼ିଶା ବୁଝା-ଉଥିଲା, କିନ୍ତୁ ଏବେ କେନ୍ଦ୍ରରେ ଯୋଜନା କମିଶନ ତାଙ୍କରି ରିପୋର୍ଟ ବାହାର କରି କହିଛନ୍ତି ଯେ ଓଡ଼ିଶା ଆଉ ପଛୁଆ ରାଜ୍ୟ ହୋଇ ରହି ନାହିଁ । ତିନୋଟି ରାଜ୍ୟକୁ ଓଡ଼ିଶା ପଛରେ ପକାଇ ଆଗକୁ ମାଡ଼ି ଯାଇଛି । ଉତ୍ତର ଭାରତର ବିହାର, ମଧ୍ୟ ପ୍ରଦେଶ ଓ ଉତ୍ତର ପ୍ରଦେଶ ଭଳି ତିନୋଟି ବଡ଼ ବଡ଼ ରାଜ୍ୟକୁ ଟପି ଯାଇଛି ବୋଲି ଯୋଜନା କମିଶନ ରିପୋର୍ଟରେ କୁହାଯାଉଛି । ଏହା କିଛି କମ୍ କଥା ନୁହେଁ । ତେଣୁ ମୁଁ ଯେତେବେଳେ କହେ ଯେ ଆମ ଓଡ଼ିଶା ଭାରତର ଶ୍ରେଷ୍ଠରାଜ୍ୟ ହେବ, ତାହା କଥାର କଥା ନୁହେଁ । ଆମେ ଯଦି ଓଡ଼ିଶାରେ ଏକ ଶାନ୍ତିପୂର୍ଣ୍ଣ ଅବସ୍ଥା ସୃଷ୍ଟିକରି ସରକାରଙ୍କ ସହିତ ସହଯୋଗ କରିବା, ତା' ହେଲେ ନିଶ୍ଚିତ ଭାବରେ ଓଡ଼ିଶା ଭାରତର ସର୍ବଶ୍ରେଷ୍ଠ ରାଜ୍ୟରେ ପରିଣତ ହେବ । ଓଡ଼ିଶାକୁ କେହି ଅଟକାଇ ପାରିବେ ନାହିଁ ।

ମୋର ଏହି ସ୍ୱପ୍ନ ବାସ୍ତବ ରୂପ ନେବାକୁ ବସିଛି । ଓଡ଼ିଶାବାସୀଙ୍କର ସ୍ନେହ ସୌହାର୍ଦ୍ଦ୍ୟ ଓ ସହଯୋଗ ନେଇ ମୁଁ ଏହି ପଥରେ ଦ୍ରୁତ ଗତିରେ ଆଗେଇ ଯିବାକୁ ଓଡ଼ିଶାଠାରେ ପ୍ରତିଶ୍ରୁତିବଦ୍ଧ ।

(୧୯-୨-୧୯୮୮ ତାରିଖରେ ପଦାମୁଣ୍ଡାଇଠାରେ ଅନୁଷ୍ଠିତ ସାଧାରଣ ସଭା)

ଓଁ ଆ ବ୍ରହ୍ମନ୍ ବ୍ରାହ୍ମଣୋ
ବ୍ରହ୍ମବର୍ଚ୍ଚସୀ ଜାୟତା
ମା ରାଷ୍ଟ୍ରେ ରାଜନ୍ୟଃ ଶୂର
ଇଷବ୍ୟୋଽତିବ୍ୟାଧୀ ମହାରଥୋ ଜାୟତାମ୍ ।
ଦୋଗ୍‌ଧ୍ରୀ ଧେନୁର୍ବୋଢାନଡ୍ ବାନାଶୁଃ
ସପ୍ତିଃ ପୁରନ୍ଧିର୍ଯୋଷା ଜିଷ୍ଣୁ
ରଥେଷ୍ଠାଃ ସଭେୟୋ ଯୁବାସ୍ୟ
ଯଜମାନସ୍ୟ ବୀରୋ ଜାୟତାମ୍ ।
ନିକାମେ ନିକାମେ ନଃ ପର୍ଜନ୍ୟୋ ବର୍ଷତୁ ।
ଫଳବତ୍ୟୋ ନ ଓଷଧୟଃ ପଚ୍ୟନ୍ତାମ୍
ଯୋଗକ୍ଷେମୋ ନଃ କଳ୍ପତାମ୍ ॥

[ଯଜୁ ୨୨, ୨୨]



— ହେ ବ୍ରହ୍ମନ୍ ! ଆମମାନଙ୍କର ରାଷ୍ଟ୍ରରେ ଜ୍ଞାନ ପ୍ରସାର ପାଇଁ ବ୍ରହ୍ମତେଜଯୁକ୍ତ, ସଦାଚାରୀ ଉପଦେଶକ ଜନ୍ମଲାଭ କରନ୍ତୁ । ନ୍ୟାୟ ପ୍ରତିଷ୍ଠା ପାଇଁ ଶସ୍ତ୍ରନିପୁଣ କ୍ଷତ୍ରିୟ ବୀର ଉତ୍ପନ୍ନ ହୁଅନ୍ତୁ । ସମୃଦ୍ଧି ପାଇଁ ଗୋଧନ, ଅଶ୍ୱ, ଅଶ୍ୱଶକ୍ତି ସଂପନ୍ନ ଯନ୍ତ୍ରାଦି ବୃଦ୍ଧି ପାଉ । ବୁଦ୍ଧିମତୀ ମହିଳା, ତେଜସ୍ୱୀ ବୀର, ଉତ୍ତମ ସନ୍ତାନ ଜାତ ହୁଅନ୍ତୁ । ଯଥା ସମୟରେ ବୃଷ୍ଟିପାତ ହେଉ । ବିବିଧ ଶସ୍ୟ ଓ ଔଷଧି ଉତ୍ପାଦିତ ହେଉ । ଅପ୍ରାପ୍ତ ଐଶ୍ୱର୍ଯ୍ୟ ପ୍ରାପ୍ତ ହେଉ । ପ୍ରାପ୍ତ ଐଶ୍ୱର୍ଯ୍ୟ ସଂରକ୍ଷିତ ରହୁ । ହେ ମଙ୍ଗଳମୟ ! ସର୍ବ କ୍ଷେତ୍ରରେ ଆମମାନଙ୍କ ରାଷ୍ଟ୍ରର ଅଭ୍ୟୁଦୟ ସଂଘଟିତ ହେଉ ।

## ଏକବିଂଶ ଶତାବ୍ଦୀ ପଥେ :

# ବସତି ଓ ଆଶ୍ରୟ ଯୋଜନା

ଶ୍ରୀ ନଳିନୀ କାନ୍ତ ପଣ୍ଡା

ଆମର ନଗର ସମସ୍ୟାବଳୀ, ବିଶେଷତଃ ମହାନଗରୀଗୁଡ଼ିକରେ ଏର ସମସ୍ୟାମାନ ଏକ ସଂକଟଜନକ ପରିସ୍ଥିତିରେ ଆସି ପହଞ୍ଚିଲାଣି । ଯୋଜନା ପରିଧିର ଉଭୟ ପାର୍ଶ୍ୱରେ ସଂହତିର ଅଭାବ ଥିବାରୁ, ସଂପ୍ରତି ଆମେ ଏପରି ଏକ ପରିସ୍ଥିତିର ସମ୍ମୁଖୀନ ହେଉଛୁ, ଯଦ୍ଦ୍ୱାରା ଆମର କ୍ଷୁଦ୍ର ଓ ମଧ୍ୟମ ଧରଣର ସହରଗୁଡ଼ିକ ନିଷ୍କ୍ରିୟ ହୋଇ ପଡ଼ିଛି ଅଥବା ସେଗୁଡ଼ିକର ମାନ ହ୍ରାସ ପାଇବାରେ ଲାଗିଛି । ପ୍ରକୃତ ପକ୍ଷେ, ଆମମାନଙ୍କୁ ଯଥୋଚିତ ଯୋଜନା କୌଶଳ ଅବଲମ୍ବନ କରିବାକୁ ପଡ଼ିବ । ଯଦ୍ଦ୍ୱାରା କି ଏହି ବସତିଗୁଡ଼ିକ ସେମାନଙ୍କର ତଳି ଅଞ୍ଚଳ ସହ ସକ୍ରିୟ ସଂହତି ରଖି ପାରିବା ସଙ୍ଗେ ସଙ୍ଗେ ପୁନର୍ବାର ପ୍ରଗତି ପଥରେ ଆଗେଇ ଯାଇ ପାରିବେ । ଉପରୋକ୍ତ ଲକ୍ଷ୍ୟ ହାସଲ କରିବା ନିମନ୍ତେ ସେଗୁଡ଼ିକର ଆର୍ଥିକ ଭିତ୍ତିଭୂମି ଓ ଆର୍ଥିକ ତଥା ଆନୁଷ୍ଠାନିକ ସାମର୍ଥ୍ୟର ଉନ୍ନତି ଘଟାଇବାକୁ ହେବ । ଜାତୀୟ ସହରୀକରଣ କମିଶନ ତାଙ୍କର ମଧ୍ୟବର୍ତ୍ତୀକାଳୀନ ରିପୋର୍ଟରେ ୫୦ ହଜାରରୁ ୫ ଲକ୍ଷ ଲୋକ ସଂଖ୍ୟା ମଧ୍ୟରେ ଥିବା ୧୭ଟି ମହାନଗରୀ ଓ ୫୩୮ଟି ଦ୍ରୁତ ବିକାଶୋନ୍ମୁଖୀ ସହରକୁ ଚିହ୍ନଟ କରି ଏଗୁଡ଼ିକୁ ଯୋଜନାବଦ୍ଧ ଆଞ୍ଚଳିକ ଅଭିବୃଦ୍ଧି କେନ୍ଦ୍ରରେ ପରିଣତ କରିବା ପ୍ରସ୍ତାବ ଦେଇଛନ୍ତି ।

ଆମର ସମ୍ବଳର ଘୋର ଅଭାବ ରହିଥିଲେ ସୁଦ୍ଧା ବସତିଗୁଡ଼ିକର ସମ ଅଭିବୃଦ୍ଧି ନିମନ୍ତେ ଆମେ କ୍ରମାଗତ ଭାବେ ନୀତିନିୟମ ଓ ଆଭିମୁଖ୍ୟଗୁଡ଼ିକର ସରଳୀକରଣ କରୁଛୁ । ତୃତୀୟ ବିଶ୍ୱର ବିକାଶୋନ୍ମୁଖୀ ରାଷ୍ଟ୍ରଗୁଡ଼ିକର ସମସ୍ୟା ଅତି ଜଟିଳ ଭାବରେ ସଂଶ୍ଳିଷ୍ଟ ଏବଂ ଉକ୍ତ ସମସ୍ୟାବଳୀର ବିଶାଳତା ପ୍ରକୃତରେ ଅବର୍ଣ୍ଣନୀୟ । ସଂପ୍ରତି ଆମେ ଯେଉଁସବୁ ବଡ଼ବଡ଼ ସମସ୍ୟା ସମ୍ମୁଖୀନ ହେଉଛୁ, ସେଗୁଡ଼ିକ ମଧ୍ୟରେ ଲୋକସଂଖ୍ୟା ବୃଦ୍ଧି, ପରିବେଶ ଅବନତି (ବିଶେଷ କରି ବୃକ୍ଷଚ୍ଛେଦନ), ଅନାହାର ତଥା ଖାଦ୍ୟ ଅପମିଶ୍ରଣ, ସ୍ୱଳ୍ପ ଜଳଯୋଗାଣ, ଅପ୍ରତିହତ ସହରୀକରଣ (ଅଳ୍ପ କେତେକ ବର୍ଷ ମଧ୍ୟରେ ଶତକଡା ୫୦ ହେବ) ଏବଂ ବିଦ୍ୟୁତ ଶକ୍ତିର ଅଭାବ ନିଶ୍ଚିତ ଭାବରେ ଅନ୍ତର୍ଭୁକ୍ତ ।

ଏହି ସମସ୍ୟାଗୁଡ଼ିକର ଦୂରୀକରଣ ପାଇଁ ଯେଉଁ ପ୍ରତିବନ୍ଧକ ରହିଛି, ସେଥିସହ ଆମର ମୂଲ୍ୟବୋଧ ପ୍ରଥା, ନ୍ୟସ୍ତ ସ୍ୱାର୍ଥ, ପୁରୁଣାକାଳିଆ ଅନୁଷ୍ଠାନ, ଦୁର୍ନୀତି ଏବଂ ସର୍ବୋପରି ଦୂର ଦୃଷ୍ଟିର ଅଭାବ ସଂଶ୍ଳିଷ୍ଟ । ଡକ୍ଟର ରଶ୍ମୀ ମୟୁରଙ୍କ ଭାଷାରେ ଏହା ହେଉଛି ''ଗୋଷ୍ଠୀ ଓ ଲୁବ୍ଧତା'', ଯାହାକି ବିକାଶୋନ୍ମୁଖୀ ତୃତୀୟ ବିଶ୍ୱକୁ ନିଜର ଦୁଃଖ ଯନ୍ତ୍ରଣା ମଧ୍ୟରେ ଧରି ରଖିଛି । ସେ ପୁଣି କହିଛନ୍ତି ଯେ ଅତୀତକୁ ରୂପରେଖ ଦେବା, ଉପନିବେଶ କାଳର ଚିନ୍ତା ଏବଂ ପାଶ୍ଚାତ୍ୟ ଦେଶର ବିକାଶ ପଥକୁ ଅନୁସରଣ କରିବାର ଆକାଂକ୍ଷା ଇତ୍ୟାଦି ସାଂପ୍ରତିକ ସଂକଟର ମୂଳକାରଣ । ଅନେକ ସମୟରେ ଗୁରୁତ୍ୱ ଆରୋପ କରିବାରେ ବିଭ୍ରାନ୍ତି ତଥା ଦୂରଦୃଷ୍ଟିର ଅଭାବ ସମସ୍ୟା ସମାଧାନ ପନ୍ଥାକୁ ଜଟିଳ କରୁଛି ।

(କ) ଆଲ୍‌ଭିନ୍ ଟୋଫ୍‌ଲର୍ ତାଙ୍କର ତିନିଗୋଟି ବିଶିଷ୍ଟ ଗ୍ରନ୍ଥ ''ଦି ଫିଉଚର ସକ୍'', ''ଦି ଥାର୍ଡ୍ ୱେଭ୍'' ଓ ଦି ପ୍ରିଭ୍ୟୁସ୍ ଓ ପେମିସେସ୍''ରେ ପରିବର୍ତ୍ତନର ତିନିଗୋଟି ପ୍ରବାହ ସଂପର୍କରେ ଅତି ଓଜସ୍ୱିନୀ ଭାଷାରେ ବର୍ଣ୍ଣନା କରିଛନ୍ତି । ଏହି ତିନିଗୋଟି ପ୍ରବାହ କୃଷି, ଶିଳ୍ପ ଓ ଶିଳ୍ପବିପ୍ଳବ; ଆମ ସମାଜକୁ ପୃଥକ ପୃଥକ ବେଗରେ ପ୍ରଧାବିତ କରିବାକୁ ଲାଗିଛି । ଏହାର ପ୍ରଭାବ ଜୀବନର ଗୁଣ, ପରିବେଶ, ଶକ୍ତି, ଉତ୍ପାଦନ ପଦ୍ଧତି ଓ ମାନବ ବସତି ଉପରେ ହିଁ ପଡ଼ୁଛି । ମାନବର ବିକାଶ ବିଶେଷ ଭାବେ ପରିବେଶ, ଅନୁଷ୍ଠାନ, ଶକ୍ତି ଓ ବୈଷୟିକ କୌଶଳ ଉପରେ ଆଧାରିତ । ଦୁର୍ଭାଗ୍ୟ ବଶତଃ, ବିଗତ୍ ବର୍ଷ ବର୍ଷ ଧରି ମାନବ ବସତିର ବିକାଶ ପ୍ରତି ଆମର ମନୋଭାବ କେମିତି ଗୋଳମାଳିଆ ହୋଇଯାଇଛି । ପରିବର୍ତ୍ତନ ଧାରାଗୁଡ଼ିକରେ ଯଥେଷ୍ଟ ବୁଝାମଣା ରହୁନଥିବାରୁ, ତାହାର ପ୍ରଭାବ ଆମର ବସତି ଉପରେ ପଡ଼ୁଛି ।

(ଖ) ଭାରତର ଗୁଟିଏ ବୃହତ୍ତମ ମହାନଗରୀ, ଯଥା : ବମ୍ବେ, କଲିକତା, ଦିଲ୍ଲୀ ଓ ମାଡ୍ରାସ୍ ଏବଂ ଅନ୍ୟ ମହାନଗରୀଗୁଡ଼ିକ ''ଶିଳ୍ପଯୁଗ'' ଉତ୍‌ଥାନର ସଙ୍କେତ ବହନ କରିଛି । ଦ୍ରୁତଗତିରେ ହ୍ରାସ ପାଉଥିବା ବହୁ ସଂଖ୍ୟକ କ୍ଷୁଦ୍ର ଓ ମଧ୍ୟମ ଧରଣର ସହର ଏବଂ ବିଭିନ୍ନ ଆକାର ଓ ଭୂମିର ଅସଂଖ୍ୟ ଗ୍ରାମ ''କୃଷିଯୁଗ''ର ପ୍ରତିନିଧିତ୍ୱ କରୁଛି । କୃଷି ବିପ୍ଳବ ଗ୍ରାମଗୁଡ଼ିକୁ ବିକ୍ଷିପ୍ତ ବସତିରେ ପରିଣତ କରିଛି ଏବଂ ଏହା ଅକ୍ଷୟ ଶକ୍ତି ଉପରେ ପର୍ଯ୍ୟବସିତ । ଶିଳ୍ପ ବିପ୍ଳବ ମହାନଗରୀଗୁଡ଼ିକୁ କର୍ମ କେନ୍ଦ୍ରିକ କରାଇଛି । ସଂପ୍ରତି ''କ୍ରାନ୍ତିକାରୀ ଶିଳ୍ପ ବିପ୍ଳବ'' ତାହାର ପରିମାର୍ଜିତ ବୈଷୟିକ କୌଶଳରେ କର୍ମକୁ ବିକ୍ଷିପ୍ତ କରାଇବାରେ ଲକ୍ଷ୍ୟ ରଖିଛି ।

ଦେଶର ମାନବ ବସତିର ଭବିଷ୍ୟତ ବିକାଶ ଲାଗି କୌଣସି ନୀତି ପ୍ରଣୟନ କରାଯିବା ସମୟରେ ତାହା ଉପରୋକ୍ତ ଗତିଶୀଳ ଧାରଣା ଉପରେ ପର୍ଯ୍ୟବସିତ ହେବା ଆବଶ୍ୟକ । ଉନ୍ନୟନ ଏବଂ ଯୋଜନା ପ୍ରଣୟନ କ୍ଷେତ୍ରରେ ବିଶୃଙ୍ଖଳତା, ଅସ୍ଥାୟୀତ୍ୱ ଏବଂ ଦୂର ଦୃଷ୍ଟିର ଅଭାବ

ବର୍ତ୍ତମାନ ତୃତୀୟ ବିଶ୍ୱର ରାଷ୍ଟ୍ରଗୁଡ଼ିକରେ ପ୍ରାଧାନ୍ୟ ବିସ୍ତାର କରିଛି । ଦ୍ରୁତ ଗତିରେ ଆମେ ସଂକଟ ଜନକ ପରିସ୍ଥିତିରୁ ଉଦ୍ଧାର ନିମନ୍ତେ ତ୍ୱରାନ୍ୱିତ କାର୍ଯ୍ୟକ୍ରମ କରିବାର ଉଦ୍ୟମ କରି କୌଣସି ଯୋଜନା, ଆଶା ଓ ଦୂରଦୃଷ୍ଟି ବିନା ଭବିଷ୍ୟତକୁ ଗତି କରୁଛେ ।

ନରୱେର ପ୍ରଧାନମନ୍ତ୍ରୀ ମିଷ୍ଟର ଗ୍ରୋ ହରଲାମ ବ୍ରୁଣ୍ଡଥାଣ୍ଡଙ୍କ ଅଧ୍ୟକ୍ଷତାରେ ଗଠିତ ପରିବେଶ ଓ ଉନ୍ନୟନ ସଂପର୍କିତ ବିଶ୍ୱ କମିଶନ ତାଙ୍କର "ଆୱାର କମନ୍ ଫିଉଚର୍" ଶୀର୍ଷକ ରିପୋର୍ଟରେ ପରିବେଶ ସନ୍ତୁଳନର ଉତ୍ତମ ପରିସ୍ଥିତି ପାଇଁ ତ୍ୱରିତ ତଥା ରାଜନୈତିକ ନିଷ୍ପତ୍ତି ନିମନ୍ତେ ଯଥାର୍ଥ ଆହ୍ୱାନ ଦେଇଛନ୍ତି । ନଗରାଞ୍ଚଳର ଆହ୍ୱାନର ସମ୍ମୁଖୀନ ହେବା ପାଇଁ ବସତି ସଂପର୍କରେ ସ୍ପଷ୍ଟ ଅଭିମୁଖ୍ୟର ବିକାଶ କରିବା, ବଡ଼ ବଡ଼ ସହରଗୁଡ଼ିକର ସ୍ଥିତିକୁ ଅଙ୍ଗୀଭୂତ କରି ନଗରାଭିମୁଖୀ ଧାରାକୁ ପଥ ପ୍ରଦର୍ଶନ କରିବା ଏବଂ ଛୋଟ ଛୋଟ ସହର ତଥା ନଗରଗୁଡ଼ିକୁ ସେମାନଙ୍କର ଗ୍ରାମାଞ୍ଚଳର ଆଭ୍ୟନ୍ତର ସହ ନିବିଡ଼ ଭାବେ ସଂଶ୍ଳିଷ୍ଟ କରି ସଂପୃକ୍ତ ସହର ଓ ନଗରଗୁଡ଼ିକର ବିକାଶକୁ ଉତ୍ସାହିତ କରିବା ପାଇଁ ଏଥିରେ ସରକାରମାନଙ୍କୁ ଆହ୍ୱାନ ଦିଆଯାଇଛି । ଏହାର ପୁନଃ ପରୀକ୍ଷା କରାଯିବା ଆବଶ୍ୟକ ହେଉଛି ଏବଂ ଜନସଂଖ୍ୟା ବୃଦ୍ଧି, ଜମି, ବାସଗୃହ, ପରିବହନ, ସ୍ୱାସ୍ଥ୍ୟ ଓ ପରିମଳ, ଶିଳ୍ପ ପ୍ରସାର ସଂପର୍କିତ ଆମର ନୀତିନିୟମଗୁଡ଼ିକରେ ଏହି ପରିବର୍ତ୍ତନ କରାଗଲେ, ତାହା ବସତି ଉନ୍ନୟନ ଉଦ୍ଦେଶ୍ୟକୁ ଯେ ପ୍ରତିହତ କରିବା ଅନୁଚିତ, ଏବିଷୟ ଜାତୀୟ ନଗର ନିର୍ମାଣ କମିଶନଙ୍କର ସକ୍ରିୟ ବିଚାରାଧୀନ ଅଛି ।

ସଂପ୍ରତି ଦେଶରେ ପ୍ରଥମ ଥର ପାଇଁ ଭୋପାଳଠାରେ ଅନୁଷ୍ଠିତ ହୋଇଥିବା ଜିଲ୍ଲା ମାଜିଷ୍ଟ୍ରେଟ୍‌ମାନଙ୍କର "ସଂବେଦନଶୀଳ ପ୍ରଶାସନ" କର୍ମଶାଳାରେ ଉଦ୍‌ବୋଧନ ଦେଇ ଆମର ପ୍ରଧାନମନ୍ତ୍ରୀ କହିଛନ୍ତି ଯେ ଦେଶର ସାମାଜିକ ତଥା ଆର୍ଥିକ କ୍ଷେତ୍ରରେ ପରିବର୍ତ୍ତନ ଘଟାଇବାକୁ ଓ ସରକାରୀ କାର୍ଯ୍ୟକ୍ରମଗୁଡ଼ିକର ଉପଯୁକ୍ତ କାର୍ଯ୍ୟକାରୀତା ପାଇଁ ନୂତନ ଚିନ୍ତାଧାରାର ପ୍ରୟୋଗ ହେବା ଦରକାର । ଅନେକ ଆହ୍ୱାନକୁ ଅତିକ୍ରମ କରି ବିଗତ ୪୦ ବର୍ଷ ମଧ୍ୟରେ ପରିସ୍ଥିତି ବହୁତ ବଦଳି ଯାଇଛି । ଏହି ଆହ୍ୱାନଗୁଡ଼ିକ ମଧ୍ୟରୁ ଗୋଟିଏ ହେଲା, ମାନବ ବସତିର ସମନ୍ୱିତ ଯୋଜନା ତଥା ବିକାଶ ଏବଂ ଆଶ୍ରୟର ମୌଳିକ ଆବଶ୍ୟକତା । ଆଧୁନିକୀକରଣ ଆମର ସର୍ବାଦୌ ଆବଶ୍ୟକ କିନ୍ତୁ କେବଳ ଗୁଡ଼ିଏ ନୂତନ ଯନ୍ତ୍ରପାତି ଓ ବୈଷୟିକ କୌଶଳ ହାସଲ କରିବା ଆଧୁନିକୀକରଣ ନୁହେଁ, ପରନ୍ତୁ ଆଧୁନିକତା ଲାଗି ସର୍ବ ପ୍ରଥମେ ଆମର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ହେବା ଦରକାର । ଆମେ ଉପର ସ୍ତରରେ ପରିବର୍ତ୍ତନ କରିବା ଅପେକ୍ଷା, ଯାହା ରହିଛି, ସେଥି ମଧ୍ୟରେ ପ୍ରଶାସନିକ କ୍ଷେତ୍ରରେ ପରିବର୍ତ୍ତନର ପ୍ରବର୍ତ୍ତନ ଲାଗି ପଦକ୍ଷେପ ନେଉଛୁ ।

ଯୋଜନା ପଦ୍ଧତିରେ ପ୍ରକୃତ ରୂପେ ସମସ୍ତେ ଯେପରି ଭାଗୀଦାର ହୋଇ ପାରିବେ, ସେଥିପାଇଁ ଆମକୁ ଉକ୍ତ ପଦ୍ଧତିର ବିକେନ୍ଦ୍ରୀକରଣ କରିବାକୁ ହେବ । "ଉପର ସ୍ତରରୁ ନିମ୍ନକୁ ନିର୍ଦ୍ଦେଶ" ଦିଆଯିବା ପରିବର୍ତ୍ତେ "ନିମ୍ନସ୍ତରରୁ ଉପରକୁ ପ୍ରେରଣା" ଦିଆଯିବା ପାଇଁ ସ୍ଥାନୀୟ ଯୋଜନା ଉପରେ ଅଧିକ ଗୁରୁତ୍ୱ ଦିଆଯିବା ଦରକାର । ଏଥିରେ ସନ୍ତୁଳନ ସୀମିତତା ମଧ୍ୟରେ ବାଧ୍ୟତାମୂଳକ ଭାବେ ପରିବେଶର ସୁରକ୍ଷା ପ୍ରତି ଗୁରୁତ୍ୱ ଦିଆଯିବା ସଙ୍ଗେ ସଙ୍ଗେ ଏହା ସ୍ଥାନୀୟ ଜନସାଧାରଣଙ୍କ ଆଶା ଆକାଂକ୍ଷାର ଅନୁରୂପ ହେବା ବିଧେୟ । ସୁରୁଖୁରୁରେ ଏହାକୁ କାର୍ଯ୍ୟକାରୀ କରିବାକୁ ହେଲେ ପ୍ରଶାସନିକ ତଥା ରାଜନୈତିକ ମଞ୍ଜୁରୀ ମଧ୍ୟ ଆବଶ୍ୟକ । ଏଥିପାଇଁ ଆର୍ଥିକ ଶୃଙ୍ଖଳା ତଥା ଉତ୍ତରଦାୟିତ୍ୱ ଉପରେ ଅଧିକ ଗୁରୁତ୍ୱ ଦିଆଯିବା ଦରକାର, ଯାହାକି ନିରପେକ୍ଷତା ବିହୀନ ରୂପେ ଅପବ୍ୟାଖ୍ୟା କରାଯିବା ଉଚିତ ନୁହେଁ ।

ଇଲେକ୍‌ଟ୍ରୋନିକ୍ ବିଭାଗର ଜାତୀୟ ତଥ୍ୟ ସୂଚନା କେନ୍ଦ୍ର ଦ୍ୱାରା ଜିଲ୍ଲା ସୂଚନା ପଦ୍ଧତିର ଉନ୍ନତି କରାଯାଉଛି । ଦେଶର ସମସ୍ତ ଜିଲ୍ଲା ଆଗାମୀ ଦୁଇ ମାସ ମଧ୍ୟରେ ଜିଲ୍ଲା ସୂଚନା ପଦ୍ଧତିର ପରିସରଭୁକ୍ତ ହେବା ଆଶା କରାଯାଏ । ଏହା ବଡ଼ ବଡ଼ ପରିକଳ୍ପନାଗୁଡ଼ିକର କାର୍ଯ୍ୟକାରୀତାକୁ ନିୟନ୍ତ୍ରଣ କରିବା ଦିଗରେ ତଥ୍ୟ ସଂଗ୍ରହ, ସଂରକ୍ଷଣ ପ୍ରଭୃତି କ୍ଷେତ୍ରରେ ନୂତନ ପଥ ଉନ୍ମୁକ୍ତ କରିବ । ଆଜି ଯୋଜନା ପ୍ରଣୟନକାରୀ, ନୀତିନିୟମକାରୀ ଓ ରାଜନୀତିଜ୍ଞମାନଙ୍କ ନିକଟରେ ପର୍ଯ୍ୟାପ୍ତ ସୂଚନାର ଅଭାବ ରହିଛି ଏବଂ ସେଥିପାଇଁ ଆମେ ଉପଯୁକ୍ତ ଭାବେ ନଗରାଞ୍ଚଳ ତଥା ଆଞ୍ଚଳିକ ସୂଚନା ପଦ୍ଧତିର ବିକାଶ ଘଟାଇବା ଆବଶ୍ୟକ । ମିଳିତ ଆଞ୍ଚଳିକ ସୂଚନା ପଦ୍ଧତିର ଆନ୍ତର୍ଜାତିକ କର୍ମଶାଳାର ଉପରୋକ୍ତ ସୁପାରିଶଗୁଡ଼ିକ ଯତ୍ନର ସହିତ ବିଚାର କରାଯିବା ଦରକାର ।

ଆଜିର ଦ୍ରୁତ ପରିବର୍ତ୍ତନଶୀଳ ତଥା ଜଟିଳ ପରିସ୍ଥିତିରେ ଯୋଜନା ପେଶା ଓ ଅନୁଷ୍ଠାନଗୁଡ଼ିକର କ୍ରମାଗତ ଆଧୁନିକୀକରଣ କରାଯିବା ସଙ୍ଗେ ସଙ୍ଗେ ପୁନଃ ତାଲିମ ଦିଆଯିବାର ଆବଶ୍ୟକତା ରହିଛି । ଆମର ପରିସ୍ଥିତିକୁ ଉତ୍ତମ ରୂପେ ସୁହାଇଲା ଭଳି ବୈଷୟିକ କଳାର ଭିତ୍ତି ଦୃଢ଼ କରିବା ସକାଶେ ଗବେଷଣା ଓ ଉନ୍ନୟନ କାର୍ଯ୍ୟଗୁଡ଼ିକୁ ମଧ୍ୟ ଉତ୍ସାହିତ କରାଯିବା ଦରକାର । ଏହି ଜଟିଳ ସମସ୍ୟାଗୁଡ଼ିକର ସମାଧାନ ନିମନ୍ତେ ଅନେକ ଆଧୁନିକ ବୈଷୟିକ କୌଶଳର ଉପଯୋଗ ହୋଇଛି ଏବଂ ଆହୁରି ମଧ୍ୟ ହେବା ଉଚିତ । ସେଗୁଡ଼ିକ ମଧ୍ୟରେ ଶିକ୍ଷା ପରିସ୍ଥିତି ତଥା ଜୀବ ବିଷୟ ସଂପର୍କିତ ବୈଜ୍ଞାନିକ ସୂଚନାର ପ୍ରସାର ନିମନ୍ତେ କଂପ୍ୟୁଟର, କୃତ୍ରିମ ଉପଗ୍ରହ ଓ ଦୂରଦୃଷ୍ଟିକ ଏବଂ କୃଷି ତଥା ପୁନଃ ବନୀକରଣ ନିମନ୍ତେ ପ୍ରଜନନ ବିଜ୍ଞାନକୁ ଅନ୍ତର୍ଭୁକ୍ତ କରାଯାଇପାରେ । ସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥା ବିଶେଷ କରି ନଗରାଞ୍ଚଳରେ ରହୁଥିବା ଜନସାଧାରଣଙ୍କ ଅସୁବିଧା ଯେପରି ସାଧାରଣ ଖର୍ଚ୍ଚରେ ଦୂର କରାଯାଇ ପାରିବ, ସେଥିପ୍ରତି ତ୍ୱରିତ ଧ୍ୟାନ ଦିଆଯିବା ଆବଶ୍ୟକ । ନଗର ଗୋଷ୍ଠୀ ଉନ୍ନୟନର ନୂତନ ଚିନ୍ତାଧାରାକୁ ଦୃଷ୍ଟିରେ ରଖି ଗ୍ରାମସ୍ତରରୁ ଆମର ସଂଗଠନଗୁଡ଼ିକୁ ତାଲିମ ଦେବାକୁ ହେବ । ଏହି ବୈଷୟିକ କୌଶଳଗୁଡ଼ିକୁ ଉପଯୁକ୍ତଭାବେ କାର୍ଯ୍ୟକାରୀ କରାଯିବା ସଙ୍ଗେ ସଙ୍ଗେ ସେଗୁଡ଼ିକ ସହ ସମନ୍ୱୟ ରଖାଗଲେ ଆମକୁ ଏକବିଂଶ ଶତାବ୍ଦୀ ପଥରେ ଗତି କରିବା ବିଶେଷ ସହାୟକ ହେବ । ଏଥି ପାଇଁ ଗ୍ରାମସ୍ତରରେ କୃଷି ଉତ୍ପାଦନ ତଥା ଶିକ୍ଷା ସଂସ୍କାରର ପାରମ୍ପରିକ ଧାରା ସହ ବୈଷୟିକ କୌଶଳର ସମନ୍ୱୟ ଘଟାଇ ଯତ୍ନର ସହିତ ଯୋଜନା ପ୍ରସ୍ତୁତ କରି ସଜାଗ ରହିବାକୁ ହେବ ।

ସମୟ ସହ ତାଳ ଦେଇ ସହରର ସମସ୍ୟା ପରିବର୍ତ୍ତନ ହେବାରେ ଲାଗିଛି ଏବଂ ଉକ୍ତ ପରିବର୍ତ୍ତନର ଉପଯୁକ୍ତ ପରିସ୍ଥିତି କରିବା ହେଉଛି ସହର ପ୍ରଶାସନର ମୌଳିକ ଲକ୍ଷ୍ୟ । ଏହି ପରିବର୍ତ୍ତନର ସାମାନ୍ୟତମ ସୂଚନାକୁ ଉପେକ୍ଷା କରାଗଲେ, ତାହା ନାଗରିକମାନଙ୍କର ଦୁଃଖଦୁର୍ଦ୍ଦଶାର କାରଣ ହୋଇ ନଗର ଅବସ୍ଥାରେ ଜଟିଳ ପରିସ୍ଥିତି ସୃଷ୍ଟି କରିବ । ପ୍ରାକ୍-ସ୍ୱାଧୀନତା କାଳରୁ ଆମର ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକ କ୍ଷମତା ବିହୀନ କର୍ତ୍ତୃପକ୍ଷ ରୂପେ ରହି ଆସିଛନ୍ତି । "ସମର୍ଥିତ ଆର୍ଥିକ ବ୍ୟବଧାନ କିମ୍ବା କ୍ଷେତ୍ର"କୁ ସଂଗଠିତ କରିବା ପାଇଁ ସେମାନଙ୍କର ଖୁବ୍ କମ୍ କ୍ଷମତା ରହିଛି ଏବଂ ଅଳ୍ପ କେତେକ ମନୋନୀତ ସେବାର ପରିସ୍ଥିତି ଲାଗି ସେମାନଙ୍କର ଭୂମିକାକୁ ସଂକୁଚିତ କରାଯାଇଛି । କୋଠାବାଡ଼ି ବିନିୟମଗୁଡ଼ିକ ମଧ୍ୟରୁ ଅଧିକାଂଶ ସଂପୂର୍ଣ୍ଣ ରୂପେ ପୁରୁଣାକାଳିଆ ହୋଇଗଲାଣି ଏବଂ ପର୍ଯ୍ୟାପ୍ତ ଆଞ୍ଚଳିକ ଯୋଜନା ବିନିୟମ ବ୍ୟବସ୍ଥା ଏଥିରେ ନାହିଁ । ସମ୍ପତ୍ତିର ବର୍ତ୍ତମାନ ମୂଲ୍ୟାୟନ ପଦ୍ଧତି ସହରାଞ୍ଚଳର ଭୂମି ଅର୍ଥନୀତିକୁ ଖୁବ୍ କମ୍ ପ୍ରଭାବିତ କରିଛି । ଭୂମି ମୂଲ୍ୟର ଶୂନ୍ୟ ସ୍ଥିତି ବିକୃତ ହୋଇଥିବାରୁ ମୁଣ୍ଡଗୁଞ୍ଜିବା ବ୍ୟୟସାପେକ୍ଷ ହୋଇଛି । ସହରଗୁଡ଼ିକ କ୍ରମଶଃ ବଢ଼ି ଉଠୁଥିବାରୁ ଜେଲ, ପୋଲିସ୍ ଲାଇନ୍, ପୁରାତନ ତଥା ଜନ୍ମମୁଖୀ ନିର୍ମାଣ ପ୍ରଭୃତି ଅନାବଶ୍ୟକୀୟ ସଂସ୍ଥାଗୁଡ଼ିକ ସହରର ମୁଖ୍ୟ ଅଞ୍ଚଳଗୁଡ଼ିକ ମାଡ଼ିବସିଛି । ସହରାଞ୍ଚଳର ପୁନଃ ବିକାଶ କରିବା ତଥା ଏହାକୁ ଉତ୍ତମ ଅବସ୍ଥାରେ ରଖିବା ପାଇଁ ଏହି ଅଣ-ଅତ୍ୟାବଶ୍ୟକ ସଂସ୍ଥାଗୁଡ଼ିକୁ ସହରତଳି ଅଞ୍ଚଳକୁ ଉଠାଇ ନିଆଯିବା ଆବଶ୍ୟକ ପଡ଼ୁଛି । ଏହି ପ୍ରଧାନ ଜମିଗୁଡ଼ିକ ସୁଯୋଗ ଅନୁସାରେ ମୂଳଧନ ରୂପେ କାର୍ଯ୍ୟ କରିବ ଏବଂ ଉକ୍ତ ଅଞ୍ଚଳର ଯୋଜନାବଦ୍ଧ ବିକାଶ ନିମନ୍ତେ ବେସରକାରୀ ଅର୍ଥବିନିଯୋଗକାରୀମାନଙ୍କୁ ଆକୃଷ୍ଟ କରିବାରେ ଏହା ଆମକୁ ସାହାଯ୍ୟ

କରିବ । ପୁନଃ ଉନ୍ନୟନ ଓ ସହରତଳି ଅଞ୍ଚଳରେ ସବ୍‌ସିଡ଼ି ବ୍ୟବସ୍ଥାରେ ବାସଗୃହ ସେବା ଯୋଗାଇବା ପାଇଁ ସମ୍ବଳ ସଂଗ୍ରହ କରିବା ଦିଗରେ ଏହା ରାଜକୋଷର ବୋଝ ଲାଘବ କରିବ । ସହରଗୁଡ଼ିକ ପାଇଁ ଉନ୍ନୟନ ଯୋଜନା କେବଳ ଦରକାରୀ ଭିତ୍ତିକ ନହୋଇ ସମ୍ବଳ ଭିତ୍ତିକ ହେବା ଆବଶ୍ୟକ । ବାସଗୃହର ଉନ୍ନତି ଘଟାଇବା, ସହରର ଅଳିଆ ଆବର୍ଜ୍ଜନାର ପୁନଃ ଆବର୍ତ୍ତ ତଥା ସ୍ଥାନାନ୍ତର ପାଇଁ ନୂତନ ଆର୍ଥିକ ଅନୁଷ୍ଠାନମାନ ସୃଷ୍ଟି କରାଯିବାର ଆବଶ୍ୟକତା ରହିଛି । ସୁଖର କଥା, ଜାତୀୟ ବାସଗୃହ ବ୍ୟାଙ୍କ୍ ପ୍ରତିଷ୍ଠା ପାଇଁ ଗୋଟିଏ ବିଲ୍ ଉପରେ ଆଲୋଚନା ଚାଲିଛି ।

ଗୋଟିଏ ସହରର ଶରୀର ବିଜ୍ଞାନରେ ବାଣିଜ୍ୟ ବ୍ୟବସାୟ ହେଉଛି ହୃଦ୍‌ଯନ୍ତ୍ର ସଦୃଶ ଏବଂ ପରିବହନ ବ୍ୟବସ୍ଥା ରକ୍ତପ୍ରବାହୀ ଶିରା ଓ ଧମନୀ ସହ ତୁଳନୀୟ । ଆମ ସହରଗୁଡ଼ିକର ରାସ୍ତା କଡ଼ରେ ଅପ୍ରାଧିକୃତ ଭାବେ ଅଧିକ ସଂଖ୍ୟକ ମଟରଗାଡ଼ି ରହିବା ସହ ଦୋକାନ ବଜାର ମଧ୍ୟ ଗଢ଼ି ଉଠୁଛି । ବର୍ତ୍ତମାନ ମୁଖ୍ୟରାସ୍ତା ପାର୍ଶ୍ୱରେ ବେଆଇନ୍ ଭାବରେ ଗଢ଼ି ଉଠୁଥିବା ବିପଣୀଗୁଡ଼ିକ ଏହି ଗତି ପଥକୁ ସଂପୂର୍ଣ୍ଣରୂପେ ପ୍ରତିରୋଧ କରିସାରିଲାଣି । ସହରାଞ୍ଚଳ ଜମିର ଯୋଜନାରେ, ରାସ୍ତା ଉପରେ ଯେପରି ଅବାଞ୍ଛନୀୟ ଗହଳି ନ ହୁଏ ସେଥିପାଇଁ ସୁସଂଗଠିତ ଭାବେ "ଅନ୍ତର୍ମୁଖୀ" ଦୋକାନ ବଜାରର ବିକାଶ ଦିଗରେ ଅବିଳମ୍ବେ ଗୁରୁତ୍ୱ ଦିଆଯିବା ଦରକାର । ସଂପ୍ରତି ଗଳିକନ୍ଦିରେ ଯେପରି ଦୋକାନବଜାର ବଢ଼ିବଢ଼ି ଚାଲିଛି, ତାହାକୁ ବନ୍ଦ କରାଯିବା ଉଚିତ ।

ସହରାଞ୍ଚଳ ଦାରିଦ୍ର୍ୟ, ଗ୍ରାମାଞ୍ଚଳ ଦାରିଦ୍ର୍ୟର ସଂପ୍ରସାରିତ ରୂପ । ଗ୍ରାମାଞ୍ଚଳର ଯେଉଁମାନେ ସହରକୁ ଚାକିରି ଖୋଜିବା ପାଇଁ ବହୁ ସଂଖ୍ୟାରେ ଛୁଟି ଆସୁଛନ୍ତି, ଆମେ ସେମାନଙ୍କ ପ୍ରତି ସଚେତନ ରହିବା ଆବଶ୍ୟକ । କର୍ମ ନିୟୋଗ କେନ୍ଦ୍ରଗୁଡ଼ିକର ଅତି ନିକଟରେ ରହିବା ପାଇଁ ସେମାନଙ୍କୁ ଘରଡ଼ିହ ଯୋଗାଇ ଦିଆଗଲେ ଭଲ ହେବ । ସହରାଞ୍ଚଳ ପରିସର ମଧ୍ୟରେ ଆମକୁ "ଅଭ୍ୟର୍ଥନା କେନ୍ଦ୍ର" ନିର୍ଦ୍ଦିଷ୍ଟ କରିବାକୁ ହେବ । ସେଠାରେ ଅଳ୍ପ ଖର୍ଚ୍ଚରେ କେତେକ ସେବା ଯୋଗାଇ ଦିଆଯିବା ଉଚିତ । ଗ୍ରାମାଞ୍ଚଳରୁ ଆସିଥିବା ଲୋକେ ଉପଯୁକ୍ତ ସ୍ଥାନରେ ସ୍ଥାୟୀ ଭାବରେ ଥଇଥାନ ନହେବା ପର୍ଯ୍ୟନ୍ତ ସେମାନଙ୍କୁ ଭଡ଼ା ସୂତ୍ରରେ ଅସ୍ଥାୟୀ ରହିବା ଘର ଯୋଗାଇ ଦିଆଯିବା ଦରକାର । ଏହା ଦ୍ୱାରା ସହରର ଚାରିଆଡେ ଯଦୃଚ୍ଛା ଭାବେ ବସ୍ତିଗୁଡ଼ିକ ଗଢ଼ି ଉଠିବ ନାହିଁ । ଜନସମୂହଙ୍କ ପାଇଁ ଗୃହ ନିର୍ମାଣ କରିବା ପରିବର୍ତ୍ତେ ଜନ ସମୂହଙ୍କ ଦ୍ୱାରା ଗୃହ ନିର୍ମାଣ କରାଯିବା ଉପରେ ଅଧିକ ଗୁରୁତ୍ୱ ଦିଆଯିବା ଆବଶ୍ୟକ । ଏବେ ନିକଟରେ ଚୂଡ଼ାନ୍ତ ହେଉଥିବା ଜାତୀୟ ଗୃହ ନିର୍ମାଣ ନୀତି ଅଣ-ଆନୁଷ୍ଠାନିକ ସ୍ତରରେ ଗୃହ ନିର୍ମାଣ କରିବା ଦିଗରେ ବିଶେଷ ସହାୟକ ହେବ ।

କ୍ରମ ବିକଶିତ ପ୍ରଗତିର ପ୍ରତୀକ ସ୍ୱରୂପ, ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକର ଶିଳ୍ପ ବିସ୍ତାର ପ୍ରତି ଦୃଷ୍ଟି ଦେବା ଆମର ଗୋଟିଏ ପ୍ରବୃତ୍ତି । ଆମେ ଉନ୍ନତ ତଥା ଶିଳ୍ପ ସମୃଦ୍ଧ ହେଲାବେଳେ ସେମାନଙ୍କର ଆଦର୍ଶକୁ ଅନୁକରଣ କରିବା ଉଚିତ ହେବ ନାହିଁ । ସେମାନଙ୍କର ଆଦର୍ଶ, ସଫଳତା ହାସଲ କରିବା ପରିବର୍ତ୍ତେ ଅନେକ କ୍ଷେତ୍ରରେ ବିଫଳତା ଲାଭ କରିଛି । ଶିଳ୍ପ ସଭ୍ୟତା ଛଅଟି ଆନ୍ତ-ସଂପର୍କିତ ନୀତିକୁ ନେଇ ଗଠିତ । ସେଗୁଡ଼ିକ ହେଲା, ସମାନୀକରଣ, ବିଶେଷୀକରଣ, ସମକାଳୀନତା, ସମାହରଣ, ସର୍ବୋଚ୍ଚକରଣ ଓ କେନ୍ଦ୍ରୀକରଣ । ବାସ୍ତବ ପ୍ରଦର୍ଶନରେ ଉପରୋକ୍ତ ନୀତିଗୁଡ଼ିକ ମହାନଗରୀ ଦୃଶ୍ୟରେ ପ୍ରତିଫଳିତ ହୋଇଥାଏ । ମହାନଗରୀଗୁଡ଼ିକ ସମୃଦ୍ଧିର ବାହକ ବୋଲି ପାଶ୍ଚାତ୍ୟ ଧାରଣା ରହି ଆସିଛି । ଆମେ ଅନେକ ସମୟରେ ସର୍ବଜ୍ଞାନୀ ଭଳି ଉକ୍ତ ଧାରଣାକୁ ଅନୁକରଣ କରିଥାଉ । ଦୁର୍ଭାଗ୍ୟବଶତଃ, ସେକ୍ଟରଗୁଡ଼ିକରେ ସଂହତିର ଶୂନ୍ୟତା ଓ ଆଞ୍ଚଳିକ ଯୋଜନାର ଅଭାବ ଫଳରେ ଏହି ବଡ଼ ସହରଗୁଡ଼ିକ, ସେମାନଙ୍କର ସୁବିସ୍ତୃତ ଅନୁନ୍ନତ ଗ୍ରାମ୍ୟ ଉପକୂଳ ବିନିମୟରେ ଅନେକ ସମୟରେ ସଂପୂର୍ଣ୍ଣ ପୃଥକ୍‌ଭାବେ ବୃଦ୍ଧି ଲାଭ କରିଥାଏ । ଆଞ୍ଚଳିକ ଯୋଜନା ବିଷୟରେ ଭାରତର ଅଭିଜ୍ଞତା ନାହିଁ କହିଲେ ଚଳେ । ସଂପ୍ରତି ଜାତୀୟ ରାଜଧାନୀ ଅଞ୍ଚଳ ପ୍ରତି କିଛିଟା ଗୁରୁତ୍ୱ ଦିଆଯାଇଛି । କଟକ ଓ ଭୁବନେଶ୍ୱର ସହର ଏବଂ ଆଖପାଖରେ ରହିଥିବା ଅନ୍ୟ ସମୃଦ୍ଧି କେନ୍ଦ୍ରଗୁଡ଼ିକୁ ନେଇ ଆମେ ଓଡ଼ିଶାର ରାଜଧାନୀ ଅଞ୍ଚଳ ପାଇଁ ଆଞ୍ଚଳିକ ଯୋଜନାମାନ ପ୍ରସ୍ତୁତ କରିବାକୁ ମଧ୍ୟ ଆଗେଇ ଯାଉଛୁ । ରାଉରକେଲା, ତାଳଚେର ଓ ଦାମନଯୋଡ଼ିଠାରେ ଥିବା ଶିଳ୍ପାଞ୍ଚଳ ପାଇଁ ଯୋଜନା ପ୍ରସ୍ତୁତ କରିବା ବିଷୟ ମଧ୍ୟ ଚିନ୍ତା କରାଯାଉଛି ।

ଭବିଷ୍ୟତରେ ଯେ ବର୍ତ୍ତମାନ ଅବ୍ୟାହତ ରହିବ, ଆମେ ଏହା ଆଶାକରିବା ଠିକ୍ ହେବ ନାହିଁ । ଆମେ କାରିଗରୀ ବିଦ୍ୟାର ଉପଯୋଗ କରିବା ସଙ୍ଗେ ସଙ୍ଗେ "ଅଭାବ" ବିରୁଦ୍ଧରେ ସଂଗ୍ରାମ ପାଇଁ ଆଧୁନିକତାରେ ସଜ୍ଜିତ ହେବାକୁ ପଡ଼ିବ । ଆମର ଲକ୍ଷ୍ୟ, ଜନସାଧାରଣଙ୍କର ସାମଗ୍ରିକ ବିକାଶ ଏବଂ ସେମାନଙ୍କର ବସତି, କେବଳ ମାତ୍ର ସହର କିମ୍ବା ଗ୍ରାମ୍ୟ ବସତି ନୁହେଁ, ପରନ୍ତୁ ସାମଗ୍ରିକ ମାନବ ବସତି । ବର୍ତ୍ତମାନ ସହର ଜଟିଳତାର ସୁପରିଚାଳନା ସଙ୍ଗେ ସଙ୍ଗେ ଭବିଷ୍ୟତ ଜଟିଳତାର ପ୍ରତିରୋଧ ଲାଗି ଯତ୍ନର ସହିତ ବିଶ୍ଳେଷଣ କରାଯିବା ଆବଶ୍ୟକ ପଡୁଛି ଏବଂ କାର୍ଯ୍ୟ କରିବା ପାଇଁ ଏଥିରୁ ଏକ ପକ୍କା ନକ୍ସା ପ୍ରସ୍ତୁତ କରାଯାଇ ପାରିବ । ମାନବ ବସତି ଉନ୍ନୟନ ନିମନ୍ତେ ଏହି ବିଶ୍ଳେଷଣ ଓ ପକ୍କା ନକ୍ସା ସୁସ୍ପଷ୍ଟ ହେବା ଆବଶ୍ୟକ । ଏହା ନୀତି ପ୍ରଣୟନକାରୀ ଓ ସାଧାରଣ ଲୋକଙ୍କ ପାଇଁ ବୋଧଗମ୍ୟ ହେବ । କାର୍ଯ୍ୟକାରୀ କରିବା ନିମନ୍ତେ ବିଭିନ୍ନ ଧରଣର ସାମଗ୍ରୀ ଏବଂ ଆଲୋଚନା ନିମନ୍ତେ ଉକ୍ତ ପକ୍କା ନକ୍ସା ନମନୀୟ ହେବା ଉଚିତ । ଏଥିରେ କାର୍ଯ୍ୟ ଉପଯୋଗୀ ଲକ୍ଷ୍ୟ ମଧ୍ୟ ରହିବା ଆବଶ୍ୟକ । ମାନବ ବସତିର ଉନ୍ନତି ନିମନ୍ତେ ଆମର ଏକ ସ୍ପଷ୍ଟ ଅନ୍ତର୍ଦୃଷ୍ଟି ରହିଲେ, ଆମର ଶିଳ୍ପନୀତି ଉତ୍ତମ ରୂପେ କାର୍ଯ୍ୟକାରୀ ହୋଇପାରିବ । ବୈଷୟିକ ବିଦ୍ୟାର ସୁବିଧା ଦୃଷ୍ଟିରୁ ବେକାରୀ, ସହରର ଧୂମମୟ ବାୟୁମଣ୍ଡଳ, ବୟସ୍କ ଲୋକଙ୍କର ଯତ୍ନ, ପ୍ରଦୂଷଣ ଇତ୍ୟାଦି ସାମାଜିକ ସମସ୍ୟାଗୁଡ଼ିକୁ ସୁଧାରିବା ପାଇଁ ଆମେ ବ୍ୟବସାୟ କୌଶଳ ବିଷୟରେ ଚିନ୍ତା କରିପାରିବା । ବ୍ୟବସାୟ ଏକ ଧର୍ମ ନୁହେଁ, ଏହା ଏକ ଯନ୍ତ୍ରପାତି ସଦୃଶ ଏବଂ କୌଣସି ଯନ୍ତ୍ରପାତି ସବୁକାର୍ଯ୍ୟ କରି ପାରେ ନାହିଁ ।

ଯୋଜନାକୁ ଫଳବତୀ କରିବାକୁ ହେଲେ, ଏହାକୁ ଭାଗ ଭାଗ କରି ଅଧିକ ଗ୍ରୁପ୍‌ରେ ପରିଣତ କରିବାକୁ ହେବ । ସ୍ଥାନୀୟ ସ୍ତରରେ ମୌଳିକ ଯୋଜନା ପ୍ରସ୍ତୁତ କରାଯିବା ସଙ୍ଗେ ସଙ୍ଗେ ଗ୍ରାମଗୁଡ଼ିକ ଉପରେ ଗୁରୁତ୍ୱ ଦିଆଯିବା ଆବଶ୍ୟକ । ଦୂର ଯୋଗାଯୋଗ ଆର୍ଥିକ ସମୃଦ୍ଧିର ଏକ ଫଳ ଅପେକ୍ଷା ଆର୍ଥିକ ଉନ୍ନୟନର ପ୍ରାକ୍ ଅବସ୍ଥା । ଏହାର ଉପଯୁକ୍ତ ବିକାଶ ଘଟିଲେ, ସହରଗୁଡ଼ିକରେ ସ୍ଫୀତିକରଣ ହେବ ନାହିଁ । ଶକ୍ତି ହିଁ ସମସ୍ତ ଉନ୍ନୟନର ଚାବିକାଠି । ଏଣୁ, ଶକ୍ତିର ବିକାଶ ନୀତି ସହିତ ମାନବ ବସତିର ଉନ୍ନୟନ ନୀତି ମଧ୍ୟ ସଂଶ୍ଳିଷ୍ଟ ହେବା ଉଚିତ ।

ଆଗାମୀ ୧୫ ବର୍ଷ ମଧ୍ୟରେ ଓଡ଼ିଶାରେ ସହରର ବସତିଗୁଡ଼ିକର ଉନ୍ନୟନକୁ ଏକୀଭୂତ କରିବା ପାଇଁ, ସଂପ୍ରତି ରହିଥିବା ୧୦୮ଟି ସହର ଓ ଚଳିତ ଶତାବ୍ଦୀର ଶେଷସୁଦ୍ଧା ସହରରେ ପରିଣତ ହେବାର ସମ୍ଭାବନା ଥିବା ୧୧୩ଟି ବସତିର ଉନ୍ନତି ନିମିତ୍ତ ଏକ ଯୋଜନା କରାଯିବାରଉଦ୍ୟମ ଆରମ୍ଭ ହୋଇଛି । ଅଳ୍ପ ସଂଖ୍ୟକ ସହର ଆଇ.ଡି.ଏମ୍.ଟିର ପରିସରଭୁକ୍ତ ହୋଇଥିବାରୁ ଆଦିବାସୀ ଅଞ୍ଚଳରେ ଅବସ୍ଥିତ ସହରଗୁଡ଼ିକ ଅବହେଳିତ ଅବସ୍ଥାରେ ରହିଛି । ଉଭୟ ଆର୍ଥିକ ତଥା ସାମାଜିକ କ୍ଷେତ୍ରରେ ଥିବା ସେମାନଙ୍କର ସ୍ୱଜାତ ଅନୁନ୍ନତ ସମସ୍ୟାଗୁଡ଼ିକୁ ବିଚାର କରି, ସେମାନଙ୍କ ପାଇଁ ଓ ଅନୁରୂପ ସମସ୍ୟାଥିବା ଅନ୍ୟାନ୍ୟ ଗ୍ରାମ ପାଇଁ ଏକ ନୂତନ କେନ୍ଦ୍ରୀୟ ପରିକଳ୍ପନା ପ୍ରସ୍ତୁତ କରାଯିବାର ଆବଶ୍ୟକତା ରହିଛି । ଗ୍ରାମ ଉନ୍ନୟନ, ନଗର ଉନ୍ନୟନ ଓ ମାନବ କଲ୍ୟାଣ ମନ୍ତ୍ରଣାଳୟ ଜରିଆରେ ନ୍ୟାୟୋଚିତ ଭାବେ ପୁନଃ ପାଣ୍ଠି ଯୋଗାଇ ଦିଆଯାଇ ଏହାକୁ ଜାତୀୟ ଯୋଜନା ସହ ସାମିଲ କରିବାକୁ ହେବ । କେବଳ ଚାରୋଟି ଜାତୀୟ ସହର ପାଇଁ ନୁହେଁ, ପରନ୍ତୁ ଯେଉଁ ସହରଗୁଡ଼ିକ ଜାତୀୟ ସହର ଓ ରାଜ୍ୟ ରାଜଧାନୀର ସେବାକାରୀ ସହର ରୂପେ କାର୍ଯ୍ୟ କରୁଛନ୍ତି, ସେମାନଙ୍କ ପାଇଁ ସ୍ୱତନ୍ତ୍ର ପାଣ୍ଠି ଯୋଗାଇ ଦିଆଯିବା ଆବଶ୍ୟକ । ଆମକୁ ଭିତ୍ତିଭୂମିକ ଉନ୍ନୟନ ଉପରେ ସବ୍‌ସିଡ଼ି କମ୍ କରି

ଦେବାକୁ ହେବ ଏବଂ ମହାନଗରୀଗୁଡ଼ିକରେ କାମଧନ୍ଦା ସୃଷ୍ଟି କରୁଥିବା ପରିକଳ୍ପନାଗୁଡ଼ିକ ଉପରେ ବ୍ୟୟ ସଂକୋଚ କରିବାକୁ ପଡ଼ିବ । ଅନୁନ୍ନତ ଅଞ୍ଚଳରେ ଥିବା ଶିଳ୍ପ କାରଖାନାଗୁଡ଼ିକ ସେମାନଙ୍କ ଉପରେ ନିର୍ଭର କରି ରହୁଥିବା ଲୋକମାନଙ୍କ ସକାଶେ ଭିଟିଭୂମି ଯୋଗାଇବା ମୂଲ୍ୟ ବାବଦକୁ ଆଂଶିକ ଅର୍ଥ ଦାନ ସ୍ୱରୂପ ଦେବା ସଙ୍ଗେ ସଙ୍ଗେ ସେମାନଙ୍କୁ ବାସଗୃହ ଯୋଗାଇ ଦେବା ପାଇଁ ନିଜ ସହରାଞ୍ଚଳରେ କିଛି ପରିମାଣର ଜମି ମଧ୍ୟ ନିର୍ଦ୍ଦିଷ୍ଟ କରିଦେବା ଉଚିତ ।

ମାନବ ବସତି ଓ ଆଶ୍ରୟର ଉନ୍ନୟନ ବିଷୟକ କଳା ଓ ବିଜ୍ଞାନ ବାସ୍ତବିକ ବଡ଼ ଜଟିଳ । ମୋର ସୌଖୀନ ମନରେ ଯେଉଁ କେତେକ ପ୍ରଶ୍ନ ଉଙ୍କି ମାରିଛି, ସେଗୁଡ଼ିକ ଉପରେହିଁ ମୁଁ ଏହି ପ୍ରବନ୍ଧରେ ଆଲୋକପାତ କରିଛି ।

ମୁଖ୍ୟ ଶାସନ ସଚିବ
ଓଡ଼ିଶା ସରକାର

(ସୂଚନା ଭବନରେ ପ୍ରଦତ୍ତ ଅଭିଭାଷଣରୁ)



ପ୍ରଧାନମନ୍ତ୍ରୀ ଶ୍ରୀ ଗାନ୍ଧୀ ସିକନ୍ଦରାବାଦ ମିଲିଟାରୀ ହାସପାତାଲରେ ଚିକିତ୍ସିତ ହେଉଥିବା ଭାରତୀୟ ଶାନ୍ତି ସେନା ବାହିନୀର ଜଣେ ଜୱାନଙ୍କ ସହ ଆଲୋଚନାରତ ।

# ଓଡ଼ିଶାର ଜାଗରଣ



ଶ୍ରୀ ସାତକଡ଼ି ହୋତା

ଅଣ୍ଡାରାଂଗି ନରି ପଡ଼ିଥିବା ଓଡ଼ିଆଙ୍କୁ ସଳଖ ହୋଇ ଛିଡ଼ାହେବା ପାଇଁ ଯୋଉଦିନ ଶିକ୍ଷାଦେଲେ ଉତ୍କଳ ଗୌରବ ମଧୁସୂଧନ ଓ ଉତ୍କଳମଣି ଗୋପବନ୍ଧୁ ସେଦିନଟି ଆଜି ଆଉ କାହାରି ମନେ ନାହିଁ । ୧୬୯୭ ମସିହାରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଯଦି କଲିକତାରେ ଭାଗୀରଥି ନଦୀ କୂଳରେ ଲଙ୍ଗର ନପକେଇ ବାଲେଶ୍ୱରରେ ବା ଓଡ଼ିଶାର ଅନ୍ୟ କୌଣସି ବନ୍ଦରରେ ଲଙ୍ଗର ପକାଇଥାଆନ୍ତେ ଓଡ଼ିଆମାନଙ୍କୁ ମୋଗଲ ଓ ମରାଠାମାନଙ୍କ ପରେ ଇଂରେଜ ଓ ତାଙ୍କର ଗୋଡ଼ାଣିଆ ମାନେ ଏତେକାଳ ଧରି ଶୋଷଣ କରି ପାରିନଥାନ୍ତେ । ୧୮୦୩ ମସିହାର ଯୁଦ୍ଧ କଥା ଇଂରେଜମାନେ ପାଶୋରି ନପାରି ବୀର ଓଡ଼ଶାଭୂମିକୁ ଖଣ୍ଡ ଖଣ୍ଡ କରି ମିଶାଇ ଦେଲେ ପଡ଼ୋଶୀ ପ୍ରଦେଶମାନଙ୍କ ସହିତ । ଓଡ଼ିଆ ନାମ ଲୋପ କରିଦେବା ପାଇଁ ଓଡ଼ିଆ ଭାଷା ଓ ସଂସ୍କୃତିର ବିଶେଷତ୍ୱ ଲୋପ କରିଦବା ଲାଗି ସୃଷ୍ଟିଲ ଗଭୀର ଷଡ଼ଯନ୍ତ୍ର । ନଅଙ୍କ ଦୁର୍ଭିକ୍ଷରେ ଅନାହାର ଯୋଗୁ ପ୍ରାୟ ଦଶଲକ୍ଷ ଓଡ଼ିଆ ପ୍ରାଣ ହରାଇଥିଲେ ବି ସରକାର ସଙ୍କଟ ମୋଚନପାଇଁ ବିଶେଷ ତତ୍ପରତା ଦେଖାଇ ନଥିଲେ । ଏପରି ଏକ ସଙ୍କଟମୟ ମୁହୂର୍ତ୍ତରେ ଓଡ଼ିଆ ମାଟିରେ ଉଭା ହେଲେ ମଧୁସୂଦନ, ଗୋପବନ୍ଧୁ, ଗଜପତି, ଫକିରମୋହନ, ଗଙ୍ଗାଧର ପ୍ରଭୃତି ପ୍ରାତଃ ସ୍ମରଣୀୟ କୃତଭୈଷ୍ଣଗଣ । ଓଡ଼ିଆ ଭାଷାର ସ୍ୱତନ୍ତ୍ରତା, ଓଡ଼ିଆ ସାହିତ୍ୟର ପ୍ରାଚୀନତା, ଓଡ଼ିଆ ସଂସ୍କୃତିର ସ୍ୱାଭିମାନ ସଂପର୍କରେ ଜାଗରଣ ଦେଖାଗଲା ଓଡ଼ିଆମାନଙ୍କ ମଧ୍ୟରେ । ସେମାନଙ୍କୁ ସ୍ୱାଭିମାନୀ କରିବା ପାଇଁ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଲାଗି ଆନ୍ଦୋଳନ ହେଲା, ଅର୍ଥନୈତିକ ପୁନରୁତ୍ଥାନ ପାଇଁ ଉତ୍କଳ ଟ୍ୟାନେରୀ ଆରମ୍ଭ ହେଲା, ବନ୍ୟା ଓ ପ୍ରାକୃତିକ ଦୁର୍ଯୋଗଗ୍ରସ୍ତ ଲୋକଙ୍କୁ ରକ୍ଷା କରିବା ସକାଶେ ଲୋକମାନଙ୍କୁ ସଂଗଠିତ କରାଗଲା, ଅନ୍ୟାୟ ଓ ଅବିଚାର ଆଗରେ ମୁଣ୍ଡ ଅବନତ ନକରି ସଗର୍ବରେ ଛିଡ଼ା ହେବାଲାଗି ଧ୍ୱନି ଦିଆଗଲା । ଏହା ଫଳରେ ସ୍ୱତନ୍ତ୍ର ପ୍ରଦେଶଟିଏ ସୃଷ୍ଟି ହେଲା ୧୯୩୬ରେ—ବାଅାବନ ବର୍ଷ ପୂର୍ବେ । ସେତେବେଳେ ବିଶ୍ୱବିଦ୍ୟାଳୟ ନଥିଲା, ଦୁଇ ତିନୋଟି କଲେଜକୁ ଛାଡ଼ି ଉଚ୍ଚ ଶିକ୍ଷା ପାଇଁ ଅନୁଷ୍ଠାନ ନଥିଲା ।

କିନ୍ତୁ କୋଣାର୍କର ସୂର୍ଯ୍ୟ ମନ୍ଦିର, ପୁରୁଷୋତ୍ତମ କ୍ଷେତ୍ରର ଶ୍ରୀମନ୍ଦିର, ଏକାମ୍ର କ୍ଷେତ୍ରର ଲିଙ୍ଗରାଜ ବା ରାଜରାଣୀ ମନ୍ଦିର ତିଆରି କରିଥିବା ଓଡ଼ିଆମାନେ ନଥିଲେ ୧୯୩୬ରେ । ସେମାନଙ୍କର ତ୍ୟାଗ ଓ ତପସ୍ୟା, ପୌରୁଷତ୍ୱ ଓ ପ୍ରତିପତ୍ତି ନଥିଲା । ଆଉ ସଂଗଠନ ଶକ୍ତିର ବିଲୟ ଘଟି, ଗୁଣାନ୍ୱିତ ବ୍ୟକ୍ତିତ୍ୱ ଅବହେଳିତ ହୋଇ ନିମ୍ନତମ ଚେତନାଦ୍ୱାରା ପ୍ରରୋଚିତ ହୋଇ ପରଶ୍ରୀକାତରତା, ହିଂସା ସହିତ ସ୍ୱାଭିମାନରହିତ ଏକ ଦୁର୍ବଳ ବ୍ୟକ୍ତିତ୍ୱ ସ୍ଥାନ ମାଡି ବସିଥିଲା ସାଧାରଣ ଓଡ଼ିଆ ଚରିତ୍ରରେ ମଧୁସୂଦନ, ଗୋପବନ୍ଧୁ ପ୍ରଭୃତିଙ୍କ ପରେ ଅନ୍ୟମାନେ ଜାତୀୟ ଜୀବନରେ ହୀନବୀର୍ଯ୍ୟ ପ୍ରମାଣିତ ହେଲେ । ହଜାର ବର୍ଷରୁ ଅଧିକ ବଙ୍ଗୋପସାଗର ଭାରତମହାସାଗର ଓ ପୂର୍ବ ଏସିଆକୁ ଦଖଲ କରିଥିଲେ କଳିଙ୍ଗମାନେ । ସେ ଯୁଗ ଆଉ ନାହିଁ । କର୍ପୂର ଉଡ଼ି ଯାଇ କନା ଖଣ୍ଡକ ପଡ଼ି ରହିଛି । ଓଡ଼ିଆମାନଙ୍କ ବୀରତ୍ୱ, ସଂଗଠନଶକ୍ତି ସ୍ଥାପତ୍ୟଶୈଳୀ, ସାଂସ୍କୃତିକ ଉତ୍କର୍ଷତା ଓ ମାନବତା କେବଳ କାହାଣୀର ବିଷୟ ହୋଇ ଯାଇଛି । ଏହାର କାରଣ ବହୁ ବିଧ । ଦୀର୍ଘକାଳ ପରାଧୀନ ରହିବା ଫଳରେ ପରଶ୍ରୀକାତରତା ସହିତ ହୀନମନତା ଓଡ଼ିଆ ଜୀବନକୁ ମ୍ଳାନ କରି ଦେଇଛି ।

ଏହି ପରିପ୍ରେକ୍ଷୀରେ ମଧୁସୂଦନ, ଗୋପବନ୍ଧୁ, ଗଜପତି, ଫକିର ମୋହନ ଗଙ୍ଗାଧର ପ୍ରଭୃତି ଯୁଗପୁରୁଷମାନେ ଗ୍ରହିଥିଲେ ଓଡ଼ିଆ ଜାତିକୁ ଉଠେଇବା ପାଇଁ ସେମାନଙ୍କର ଦେଶ ମାଟିକୁ ଶାଣିତ ଓ ସନ୍ଦିତ କରିବା ପାଇଁ । ସେଥିପାଇଁ ବିଂଶ ଶତାବ୍ଦୀର ପ୍ରାରମ୍ଭକୁ ନବ ଜାଗରଣର ପ୍ରଥମ ସୋପାନ ବୋଲି କୁହାଯାଏ ।

ସ୍ୱାଧୀନତା ଅର୍ଜ୍ଜନ କରିବାପରେ ଓଡ଼ିଆମାନଙ୍କର ଜୀବନଯାତ୍ରା ଓ ଚିନ୍ତାଧାରାରେ ଯେଉଁ ସଚେତନତା ଓ ଜାଗରଣ, ପ୍ରାଣ ଚାଞ୍ଚଲ୍ୟ ଓ ଉଦ୍ୟମଶୀଳତା, ଶୃଂଖଳା ଓ ଉଚ୍ଚାଭିଳାସ ସୃଷ୍ଟିହେବ ବୋଲି ଆଶା କରାଯାଉଥିଲା ତାହା ହେଲା ନାହିଁ । ଫଳରେ ଓଡ଼ିଆମାନେ ଯେତିକି ବେଗରେ ଅଗ୍ରଗତି କଲେ ଅନ୍ୟମାନଙ୍କର ସମକକ୍ଷ ହେବେ ତାହା ମଧ୍ୟ ହେଲା ନାହିଁ ଏବଂ ଓଡ଼ିଆମାନେ ପଛୁଆ ବୋଲି ବିବେଚିତ ହେଲେ । ସ୍ୱାଧୀନତୋର ଭାରତବର୍ଷରେ ପ୍ରଥମ ପଚିଶ ତିରିଶ ବର୍ଷ ମଧ୍ୟରେ ଜାତୀୟ ସ୍ତରରେ ବିଶେଷ କିଛି ସଫଳତା ଅର୍ଜ୍ଜନ କରାଯାଇପାରିନାହିଁ । ପରେ ତାହା ତ୍ୱରାନିତ ହୋଇଥିବା ଲକ୍ଷ୍ୟ କରାଯାଉଛି । ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନର ତୀବ୍ରତା କେବେହେଲେ ଅନୁଭୂତ ହୋଇ ନଥିଲା । ସ୍ୱାଧୀନତା ଆନ୍ଦୋଳନର ଜନଜାଗରଣ ଓ ସଂଗ୍ରାମ କେତେକ ଅଞ୍ଚଳରେ ଥିଲା ସୀମାବଦ୍ଧ । ତେଣୁ ବଙ୍ଗ, ମହାରାଷ୍ଟ୍ର, ପଞ୍ଜାବ, ମାଡ୍ରାଜ, ଗୁଜୁରାଟ ପ୍ରଭୃତିରେ ଜନ ଜୀବନରେ ଯେଉଁ ସଚେତନତା, ସଂଗ୍ରାମୀ ମନୋଭବ, ଜାଗରଣ ଓ ତ୍ୟାଗ ଭାବ ଦେଖାଦେଇଥିଲା ତାହା ଏଠାରେ ସୃଷ୍ଟି ହେଲା ନାହିଁ । ଗୋଟିଏ ଗଣଆନ୍ଦୋଳନର ବହୁ ସୁଯୋଗ ଓ ସଂଭାବନା ରହିଥାଏ ।

କିନ୍ତୁ ତାହା ନହେବାରୁ ସାଧାରଣ ଜୀବନ ଯାତ୍ରା ପ୍ରଭାବିତ ବା ଅନୁପ୍ରାଣିତ ହେଇନାହିଁ, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଯେପରି ବିପୁଳ ପ୍ରଗତି ଓ ସଂସ୍କାର, ସଂଘଟିତ ହେବ ବୋଲି ଆଶା କରାଯାଉଥିଲା ତାହା ମଧ୍ୟ ହେଇ ନାହିଁ । ଫଳରେ ମୁକ୍ତ ଜାତୀୟ ସ୍ରୋତରେ ମିଶିବାର ଅପୂର୍ବ ସୁଯୋଗ ଆମଲୋକେ ସଂପୂର୍ଣ୍ଣ ଭାବରେ ଗ୍ରହଣ କରି ପାରିଲେ ନାହିଁ । ତାହା ପଛରେ ପଣର ଗୋଟିଏ ବଡ଼ ଲକ୍ଷଣ ହେଲା ପରାଶ୍ରୀକାତରତା । ତାହା ଓଡ଼ିଆ ଜାତିକୁ ଆଜିକୁ ଜଡ଼ି ରଖିବା ଯୋଗୁ କୌଣସି କ୍ଷେତ୍ରରେ ଓଡ଼ିଆମାନେ ଆଖି ବୁଜିଆ କିଛି କରିପାରି ନାହାନ୍ତି । ସର୍ବଭାରତୀୟ ସ୍ତରରେ ଓଡ଼ିଆମାନେ ଆଖି ବୁଜିଆ କିଛି କରିପାରି ନାହାନ୍ତି । ବ୍ୟକ୍ତିଗତ କୃତିତ୍ୱ ଓ ସଫଳତା ବେଳେ ବେଳେ ଆଣି ଝଲସେଇ ଦେଇଛି, କିନ୍ତୁ ତାହା ସାମାଜିକ ଜୀବନକୁ ସଂଗଠିତ ବା ଅନୁପ୍ରାଣିତ କରିବାରେ ସମର୍ଥ ହୋଇ ନାହିଁ ।

## ଅଷ୍ଟମଦଶକର ଅବଦାନ :—

ଏହି ଐତିହାସିକ ପରିପ୍ରେକ୍ଷୀରେ ଚଳିତ ଶତାବ୍ଦୀର ଅଷ୍ଟମଦଶକର ଅଭି-ବୃଦ୍ଧି, ଅଗ୍ରଗତିର ବିଷୟ କହିବାର କଥା । ୧୯୭୯ ମସିହା ପର୍ଯ୍ୟନ୍ତ ଓଡ଼ିଶାର ଅନଗ୍ରସରତାର ପ୍ରଧାନ କାରଣ ସ୍ପଷ୍ଟକୁ ଚିହ୍ନଟ କରି ଯୋଜନାବଦ୍ଧ ଭାବରେ ସେଗୁଡ଼ିକୁ ଅନ୍ତର କରିବା ପାଇଁ ସଫଳ ପଦକ୍ଷେପ ନିଆଯାଇ ପାରି ନଥିଲା । ୧୯୮୦ ଠାରୁ ଓଡ଼ିଶାର ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନକୁ ସଂଗଠିତ ଓ ପୁନର୍ବିନ୍ୟାସ କରିବାଲାଗି ଏକ ନୂତନ ଉଦ୍ୟମ ଆରମ୍ଭ ହେଲା । କୃଷି ଓ ଶିଳ୍ପର ବିକାଶ ନଘଟିଲେ, ଓଡ଼ିଶାରେ ଥିବା ପ୍ରଚୁର ପ୍ରାକୃତିକ ସଂପଦ ଓ ଜନଜୀବନର ସୁବିନିଯୋଗ ନହେଲେ ଓଡ଼ିଶାର ସମୃଦ୍ଧି ହୋଇ ପାରିବ ନାହିଁ । ତେଣୁ ଭିତ୍ତିଭୂମିର ପ୍ରସାର କୃଷି ଓ ଶିଳ୍ପର ବିକାଶ, ସାମାଜିକ ଜୀବନର ଅଭ୍ୟୁଦୟ, ଶିକ୍ଷା ଓ ମାନବୀୟ ସମ୍ବଳର ସଦୁପଯୋଗ, ପ୍ରାକୃତିକ ସଂପଦର ଉପଯୁକ୍ତ ଓ ଯୋଜନାବଦ୍ଧ ଉପଯୋଗ, ପର୍ଯ୍ୟଟନ ଶିଳ୍ପ ଭାଷା ଓ ସାହି-ତ୍ୟର ପ୍ରକାଶ ଜାତୀୟ ସମୃଦ୍ଧି ପାଇଁ ଅପରିହାର୍ଯ୍ୟ ଅଟେ । ଏହିସବୁ କ୍ଷେତ୍ରରେ କିପରି ଉଲ୍ଲେଖଯୋଗ୍ୟ ଅଗ୍ରଗତି ଏଇ ଦଶକର ପ୍ରଥମ ଆଠବର୍ଷରେ ହାସଲ କରାଯାଇ ପାରିଛି ଏବଂ କେଉଁଠି ସଂଶୋଧିତ ନହୋଇ ଦୋଷ ଦୁର୍ବଳତା ଏବେବି ଆମର ଉତ୍ପାଦିକାଶକ୍ତିକୁ ହ୍ରାସ କରୁଛି ତାହା ଏଠାରେ ଆଲୋଚ୍ୟ ବିଷୟ ।

## ଜାତୀୟ ଚରିତ୍ର :—

ପ୍ରତ୍ୟେକ ଦେଶର ଜନଜୀବନରେ କର୍ତ୍ତବ୍ୟନିଷ୍ଠା, ତ୍ୟାଗ, ସମପ୍ରତ ଉଦ୍ୟମ, ଶୃଙ୍ଖଳା, ସାଧୁତା ଏବଂ ସମନ୍ୱିତ ଉଦ୍ୟମ ସେହି ଜାତିର ଚରିତ୍ରର ବିକାଶ ଓ ପୋଷାବର୍ଦ୍ଧନ କରେ । ଏବେବି ଓଡ଼ିଆମାନଙ୍କର ଜୀବନରୁ ସଂପୂର୍ଣ୍ଣଭାବରେ ଅଳସ୍ୟ, ହୀନମନ୍ୟତା ଓ ବିଶୃଙ୍ଖଳା ଦୂର କରାଯାଇ ପାରି ନାହିଁ । ଅଳ୍ପରେ ସନ୍ତୁଷ୍ଟ ହୋଇ ରହିବାଯୋଗୁ ଉଚ୍ଚାଭିଳାଷ ସେମାନଙ୍କୁ ଉତ୍ସର୍ପିତ କରେ ନାହିଁ, ତେଣୁ ବ୍ୟବସାୟିକ କାର୍ଯ୍ୟ କରିବାର ରୋମାଞ୍ଚ, ସଂଗ୍ରାମ କରିବାର ପ୍ରବୃତ୍ତି ମଧ୍ୟ ଚରିତ୍ରଗତ ହେଇ ନାହିଁ । ଏହି କାରଣରୁ ଓଡ଼ିଆ-ମାନେ ନୂତନର ସ୍ୱାଦ ପାଇବାରୁ ବଂଚିତ, ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ କରିବା କରିବାଲାଗି ଯେଉଁ ପ୍ରବଣତା ଓ ପ୍ରତିବଦ୍ଧତା ରହିବାର କଥା ତାହା ରହି ପାରୁ ନାହିଁ । ଏହି ଅଭାବକୁ ଦୂର କରି ଓଡ଼ିଆମାନଙ୍କ ମଧ୍ୟରେ ଏକ ନୂତନ ଓଡ଼ିଶା ନିର୍ମାଣ କରିବାର ପବିତ୍ର ଲକ୍ଷ୍ୟ ପ୍ରତି ଗତ କେତେବର୍ଷ ମଧ୍ୟରେ ଯେଉଁ ଅନୁରକ୍ତି ଓ ପ୍ରତିବଦ୍ଧତା ସୃଷ୍ଟି କରାଯାଇ ପାରିଛି ତାର ସଫଳ ସର୍ବତ୍ର ଦେଖା ଗଲଣି । ନୂତନ ଉଦ୍ୟମ, ନୂତନ କିଛି କରିବାଲାଗି ପରିକଳ୍ପନା, ଲକ୍ଷ୍ୟହାସଲ ପାଇଁ ଅବିରାମ ସଂଗ୍ରାମ ଜାରି ରହିବା ଚରିତ୍ରଗତ ହେବାରେ ଲାଗିଛି । ଏହା ଶୂନ୍ୟରେ ହୋଇନାହିଁ, ଏଥିନିମନ୍ତେ ନେତୃତ୍ୱ ଲୋକମାନଙ୍କ ମନରେ ବିଶ୍ୱାସ ଓ ସାହାସ ସଂଚାର କରି ଲକ୍ଷ୍ୟାଭିମୁଖୀ କର୍ମ କରିବାଲାଗି ସେମାନଙ୍କୁ ଅନୁପ୍ରାଣିତ କରିପାରିଛି । ଏହାହିଁ ଗତ ଆଠବର୍ଷ ବର୍ଷର ସର୍ବ-ପ୍ରଥମ ମହନୀୟ ସଫଳତା । ସେଥିପାଇଁ ଅନଗ୍ରସର ଓଡ଼ିଶା ଅନ୍ୟମାନଙ୍କର ସମକକ୍ଷ ହେବାପାଇଁ ଉଦ୍ୟମ ତୀବ୍ରକରିଛି ଏବଂ ସାଧାରଣ ଓଡ଼ିଆର ଶୃଙ୍ଖଳା, କାର୍ଯ୍ୟନିଷ୍ଠା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଉତ୍ପାଦିକାଶକ୍ତି ମଧ୍ୟ ବୃଦ୍ଧି ପାଇଛି । ଓଡ଼ିଶା ଶ୍ରମିକର ଶ୍ରମନିଷ୍ଠା ଦେଶର ସର୍ବତ୍ର ବିଖ୍ୟାତ । କିନ୍ତୁ କେବଳ ଯେପରି ପାରିଶ୍ରମିକ ଅର୍ଜ୍ଜନ କଲେ ଦେଶ ବଡ଼ହୁଏ ନାହିଁ, ଯେଉଁ ଲୋକଟି ସ୍ୱଇଚ୍ଛା କାମ, ଅଳକ ତିଆରି କରେ, ଚୁକାଠ ତୋଳେ ବା ଜମିରେ ଲଙ୍ଗଳ କରୁଥାଏ ସେ ଯେଉଁ କାମଟି କରୁଛି ତେଣୁ ପରିପ୍ରେକ୍ଷୀରେ ଏବଂ ଲକ୍ଷ୍ୟପୂର୍ତ୍ତି ଦିଗରେ ତାହା କେତେଦୂର ସହାୟକ ସେଥିପ୍ରତି ତାର ସଚେତନତା ଉପରେ ତାର ଉତ୍ପାଦିକାଶକ୍ତି ନିର୍ଭର କରେ । ସେ ଯଦି ଅନୁଭବ କରେ ଯେ ସେ କାଟୁଥିବା ପଥର ଗୋଟିଏ ସ୍କୁଲଗୃହ ନିର୍ମାଣ ପାଇଁ ଆବଶ୍ୟକ ହେବ ଯେଉଁଠାରେ ତାର ପୁଅ ବା ଝିଅ ପାଠ ପଢ଼ିବ ବା ଗୋଟିଏ ଶଂଖ ନିର୍ମାଣ କରିବାରେ ବ୍ୟବହୃତ ହେବ ଯାହା ଉପରଦେଇ ସେ ଓ ଅନ୍ୟମାନେ ସହଜରେ ସବୁଦିନେ ନାଳ ଅତିକ୍ରମ କରିପାରିବେ ତାହା ତାର ଅନ୍ତରଭିତରେ ଅନୁରକ୍ତି ସୃଷ୍ଟି କରିବ । ଏହି ଅନୁରକ୍ତି ଓ ପ୍ରତିବଦ୍ଧତା ଓଡ଼ିଶାର ଚରିତ୍ରଗତ କରିବା ସକାଶେ ଯେଉଁ ଉଦ୍ୟମ ଜାରିରହିଛି ତାହା ଓଡ଼ିଶାର ନବନିର୍ମାଣରେ ଅପରିହାର୍ଯ୍ୟ ଉପାଦାନ ।

## ଭାଷା, ସାହିତ୍ୟ ଓ ସଂସ୍କୃତି—

ଲୋକମାନଙ୍କ ମଧ୍ୟରେ ଅନୁରକ୍ତି, ନିଷ୍ଠା, ଆସକ୍ତି ସୃଷ୍ଟି କରିବାଲାଗି ଗୋଟିଏ ଜୀବନ୍ତ ସଂସ୍କୃତି ଆବଶ୍ୟକ ହୁଏ । ଓଡ଼ିଆ ସଂସ୍କୃତି ନିଜର ପରା-କାଷ୍ଠାର ପରିଚୟ ଅତୀତରେ ବହୁବାର ଦେଇଛି । କିନ୍ତୁ କାଳକ୍ରମେ ସଂସ୍କୃତି ଜୀବନଠାରୁ ଓ ଜୀବନଚର୍ଯ୍ୟାଠାରୁ ବିଛିନ୍ନ ହୋଇ ପୋଷାକୀ ଆଭିଜାତ୍ୟର ବହିର୍ମୁଖୀ ହୋଇ ଯିବାରୁ ତାହା ଜନମାନଙ୍କୁ ଯେପରି ଉତ୍ସାହିତ କରିବାକଥା ତାହା କରି ପାରିନାହିଁ । ତେଣୁ ଓଡ଼ିଆ ଓ ଭାରତୀୟ ସଂସ୍କୃତିର ମୌଳିକତା ପ୍ରତି ସଚେତନତା ସୃଷ୍ଟିକରି ଏକ ଦିଗରେ ଐତିହ୍ୟ ଓ ପରଂପରା ପ୍ରତି ଶ୍ରଦ୍ଧା ଏବଂ ଅନ୍ୟ ଦିଗରେ ପରଂପରା ନାମରେ ଗଢ଼ି ଉଠିଥିବା ଅନ୍ଧବିଶ୍ୱାସ, କୁ-ସଂସ୍କାର, ଅସ୍ପୃଶ୍ୟତା ଦୂର କରିବା ଓ ଆବଶ୍ୟକସ୍ଥଳେ ସମାଜ ଓ ସାମାଜିକ ଜୀବନର ସଂସ୍କାର କରି ଏହାକୁ ଅଧିକ ସୃଜନଶୀଳ କରିବା ପାଇଁ ଉଦ୍ୟମ ଚାଲିଛି । ନୃତ୍ୟଗୀତ, ନାଟକ, ସୂକ୍ଷ୍ମକଳା, ସ୍ଥାପତ୍ୟ, ଖାଦ୍ୟ ଓ ପରିଧାନ, ସାହିତ୍ୟ ଓ ଭାଷାରେ ଗୁଣାତ୍ମକ ବିକାଶ ଘଟାଇବା ଲାଗି ଉପଯୁକ୍ତ ଓ ଅନୁକୂଳ ବାତାବରଣ ସୃଷ୍ଟି କରାଯାଇ ପାରିଛି । ଓଡ଼ିଆ ସଂସ୍କୃତି ଓ ସାହିତ୍ୟକୁ ଲୋକଙ୍କର ନିକଟତର ଓ ଜୀବନଚର୍ଯ୍ୟାର ଉପାଦାନ କରିବା ନିମନ୍ତେ ସାଂସ୍କୃତିକ ସଚେତନତା ଓ ଜାଗରଣ ସୃଷ୍ଟି କରାଯାଇ ଏହି କ୍ଷେତ୍ରରେ ଓଡ଼ିଶାର ଖ୍ୟାତିର ପ୍ରସାର ଘଟାଇବା ସହିତ ଭାଷା ଓ ସାହିତ୍ୟରେ ସୃଜନଶୀଳତାକୁ ଉତ୍ସାହିତ କରାଯାଇଛି । ସଂଗଠନହିଁ ସାମାଜିକ ଜୀବନର ଶକ୍ତିର ଉତ୍ସ । ତେଣୁ ସାହିତ୍ୟ ଓ ସଂସ୍କୃତିର ବିକାଶ ପାଇଁ ଅନୁଷ୍ଠାନମାନଙ୍କୁ ଶକ୍ତିଶାଳୀ କରାଯାଇ ପାରିଛି । ଓଡ଼ିଶାର ସରକାରୀ କାର୍ଯ୍ୟରେ ଓଡ଼ିଆଭାଷା ଯେପରି ବ୍ୟବହୃତ ହୁଏ ଏବଂ ଏହାଦ୍ୱାରା ଶାସନ ଯେପରି ଲୋକମାନଙ୍କର ନିକଟବର୍ତ୍ତୀ ହୁଏ ସେଥିପ୍ରତି ପ୍ରଯତ୍ନ ଆରମ୍ଭ ହୋଇଛି ଏବଂ ଭାଷାର ବିକାଶ ଓ ବ୍ୟବହାର ଯେପରି ବୈଜ୍ଞାନିକ ପ୍ରଣାଳୀରେ ହୁଏ ସେଥିପ୍ରତି ଉଦ୍ୟମ ଅବ୍ୟାହତ ରହିଛି । ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାରେ ଯେଉଁ ଅଭୂତପୂର୍ବ ସଫଳତା ହାସଲ କରାଯାଇଛି ତାହାର ସଦୁପଯୋଗ କରିବା ସଙ୍ଗେସଙ୍ଗେ ଏକ ବୈଜ୍ଞାନିକ ଦୃଷ୍ଟିକୋଣ ଉତ୍କର୍ଷତା ଅର୍ଜନ କରିବାର ଏକ ଅପରିହାର୍ଯ୍ୟ ଉପାଦାନ ବୋଲି ସ୍ୱୀକୃତ ହୋଇଛି । ସଂସ୍କୃତିର ବିକାଶ ଜନଚରିତ୍ରକୁ ଅଧିକ ଉଦାର ଓ ସୃଜନଶୀଳ କରିବ । ସାହିତ୍ୟ ସଂସ୍କୃତିର ବାହକ । ଯେଉଁ ସଂସ୍କୃତି ଅନାଦୃତ ବା ଅପାଂକ୍ତେୟ ହୋଇ ରହିଥିଲା ତାର ମହିମା କୀର୍ତ୍ତନ କରି ଜନମାନସକୁ ସାହିତ୍ୟ ଉଦବୁଦ୍ଧ କରିବା ପାଇଁ ଅଭିପ୍ରେତ । ସେଥିପାଇଁ ଜୀବନଧର୍ମୀ ସାହିତ୍ୟ ରଚନାରେ ଏକ ନୂତନ ସୁଯୋଗ ଓ ସଂଭାବନା ସୃଷ୍ଟିହୋଇଛି ।

## ଭିତ୍ତିଭୂମିର ବିକାଶ—

କୃଷି ଓ ଶିଳ୍ପର ବିକାଶ କଥା ଦ୍ୱାରା କରାଯାଇ ପାରେ ନାହିଁ । କୃଷି ଓ ଶିଳ୍ପର ବିକାଶ ପାଇଁ ଯେପରି ମାନବୀୟ ସମ୍ବଳ ଓ ପ୍ରାକୃତିକ ସମ୍ବଳର ସଦୁପଯୋଗ ପାଇଁ ସେହିପରି ଭିତ୍ତିଭୂମିର ପ୍ରସ୍ତୁତି ଓ ପ୍ରସାର ଆବଶ୍ୟକ । ଏଦିଗରେ ଉଲ୍ଲେଖଯୋଗ୍ୟ ଉନ୍ନତି ଅତୀତରେ ନହୋଇ ଥିବାରୁ ଓଡ଼ିଶା ଅନଗ୍ରସର ହୋଇ ରହିଥିଲା ।

ଚଳାଚଳ ଭିତ୍ତିଭୂମି ପ୍ରସ୍ତୁତିର ପ୍ରଥମପର୍ବ । ଏ ଚଳାଚଳ କ୍ଷେତ୍ରରେ ଜଳ, ସ୍ଥଳ ଓ ଆକାଶ ପଥରେ ଓଡ଼ିଶାର ସ୍ଥାନ ନଗଣ୍ୟ । ପାରାଦୀପ ବନ୍ଦର ହେବାଦିନୁ ସମୁଦ୍ର ପଥରେ ରପ୍ତାନୀ ଓ ଆମଦାନୀ ବୃଦ୍ଧି ପାଇବା ସହିତ ଅର୍ଥନୈତିକ ତତ୍ପରତା ମଧ୍ୟ ବୃଦ୍ଧି ପାଇଛି । ଗୋପାଳପୁରଠାରେ ଏକ ନୂତନ ବନ୍ଦର, ଧାମରାଠାରେ ମାଛଧରା ବନ୍ଦର ପ୍ରଭୃତିର ନିର୍ମାଣ ପାଇଁ ପଦକ୍ଷେପ ନିଆଯାଇ କାର୍ଯ୍ୟ ସମାପ୍ତି ଲାଗି ନିର୍ଦ୍ଦିଷ୍ଟ ସମୟ ସୀମା ଧାର୍ଯ୍ୟ କରାଯାଇଛି । ପାରାଦୀପ ବନ୍ଦରର ସଂପ୍ରସାରଣ କରି ଏହା

ସେପରି ଆମଦାନୀ ରପ୍ତାନୀ ବାଣିଜ୍ୟର ପ୍ରସାର ଦିଗରେ ସହାୟକ ହୁଏ ସେଥିପ୍ରତି ଅଧିକ ଧ୍ୟାନ ଦିଆଯାଉଛି । ପଶ୍ଚିମବଙ୍ଗ ସହିତ ପାରାଦୀପ ବନ୍ଦରକୁ ଉଭୟ ସଡ଼କ ଓ ରେଳପଥ ଦ୍ୱାରା ସଂଯୁକ୍ତ କରାଯାଉ ଏଥିରେ ଚଳାଚଳ ବ୍ୟବସ୍ଥାକୁ ସୁଦୃଢ଼ କରିବା କାର୍ଯ୍ୟରେ ଅଗ୍ରଗତି ପରିଲକ୍ଷିତ ହେଉଛି ।

ଆକାଶ ପଥରେ ଚଳାଚଳ ବ୍ୟବସ୍ଥାରେ ଓଡ଼ିଶାର ନାମ ମଧ୍ୟ ନଥିଲା, ଏବେ ବିଧିବଦ୍ଧ ପ୍ରଚେଷ୍ଟା ଫଳରେ ଏଇ କେତେବର୍ଷ ହେଲା ଓଡ଼ିଶାର ରାଜଧାନୀ କେବଳ କଲିକତା ସହିତ ନୁହେଁ ଦିଲ୍ଲୀ, ବମ୍ବେ, ହାଇଦ୍ରାବାଦ ପ୍ରଭୃତି ବଡ଼ ବଡ଼ ସହର ସହିତ ସିଧା ସଳଖ ସଂଯୁକ୍ତ । ଏହାଦ୍ୱାରା ପର୍ଯ୍ୟଟନ ଶିଳ୍ପର ଆଶାତୀତ ବିକାଶ ହୋଇ ପାରିଛି ଓ ଓଡ଼ିଶା ଆଉ ଜାତୀୟ ସ୍ରୋତରୁ ବିଚ୍ଛିନ୍ନ ନହୋଇ ତହିଁରେ ସାମିଲ ହୋଇଛି । ବାୟୁଦୂତ ସେବା ମଧ୍ୟ ଓଡ଼ିଶାର ସେବାରେ ନିଯୁକ୍ତ ।

ରେଳପଥ ଚଳାଚଳ ବ୍ୟବସ୍ଥାର ସର୍ବାପେକ୍ଷା ଶକ୍ତିଶାଳୀ ଅଂଗ । ବ୍ରିଟିଶ ସାମ୍ରାଜ୍ୟର ସୁରକ୍ଷା ପାଇଁ ଓଡ଼ିଶାର ପୂର୍ବ ଉପକୂଳ ଓ ପଶ୍ଚିମାଞ୍ଚଳ ଦେଇ ରେଳପଥ କଲିକତାରୁ ମାନ୍ଦ୍ରାଜ ଓ କଲିକତାରୁ ବମ୍ବେ ପର୍ଯ୍ୟନ୍ତ ଯାଇଥିଲା । କିନ୍ତୁ ପ୍ରାକୃତିକ ସଂପଦରେ ପୂର୍ଣ୍ଣ ଓଡ଼ିଶାର ଅଭ୍ୟନ୍ତର ଅପହୃତ ରହି ଯାଇଥିଲା । ତେଣୁ ଓଡ଼ିଶାରେ ବ୍ୟବସାୟ ବାଣିଜ୍ୟ, ସାମାଜିକ ଚଳପ୍ରଚଳ ଓ ଶିଳ୍ପ ବିକାଶ ବାଧାପ୍ରାପ୍ତ ହୋଇଥିଲା । ଏହି ଅଭାବର ଦୂରୀକରଣ ପାଇଁ ଯୋଜନାବଦ୍ଧ ଓ ସଂକଳ୍ପବଦ୍ଧ ଉଦ୍ୟମ ହେବା ଫଳରେ ସମଗ୍ର ବ୍ରିଟିଶ ଶାସନ କାଳରେ ସମଗ୍ର ଓଡ଼ିଶାରେ ତେରଶହ କିଲୋମିଟର ରେଳପଥ ନିର୍ମିତ ହୋଇଥିବା ସ୍ଥଳେ ଏବଂ ସ୍ୱାଧୀନତାପରେ ୧୯୭୯ ପର୍ଯ୍ୟନ୍ତ ଆହୁରି ଛଅଶହ କିଲୋମିଟର ରେଳପଥ ନିର୍ମିତ ହୋଇଥିଲେ ମଧ୍ୟ, କେବଳ ଗତ ପାଞ୍ଚ ସାତ ବର୍ଷ ମଧ୍ୟରେ ଆହୁରି ସାଢ଼େ ପାଞ୍ଚଶହ କିଲୋମିଟର ରେଳପଥ ନିର୍ମାଣ କରିବା ପାଇଁ ସ୍ୱୀକୃତି ମିଳିଛି ଏବଂ ନିର୍ମାଣ କାର୍ଯ୍ୟ ଚାଲୁଅଛି । ଯଖପୁରା ଦୈତାରୀ ବାଂଶପାଣି ରେଳପଥ, ତାଳଚେର ସମ୍ବଲପୁର ରେଳପଥ ଓ ରାୟଗଡ଼ା କୋରାପୁଟ ରେଳପଥ ଏହାର ଅନ୍ତର୍ଗତ । ଏହି ତିନୋଟି ରେଳପଥର କାର୍ଯ୍ୟ ସମାପ୍ତ କରିବା ଲାଗି ପାଞ୍ଚଶହ କୋଟି ଟଙ୍କା ବ୍ୟୟ କରାଯିବ । ଏହି ରେଳପଥ ଗୁଡ଼ିକର ନିର୍ମାଣ କାର୍ଯ୍ୟ ଶେଷ ହେଲେ, ଟିଟିଲାଗଡ଼ ଠାରୁ ରାୟଗଡ଼ା ପର୍ଯ୍ୟନ୍ତ ମଞ୍ଜୁର ହୋଇଥିବା ଦୋହରା ରେଳପଥର ନିର୍ମାଣ କାର୍ଯ୍ୟ ସମାପ୍ତ ହେଲେ ଓ ବରସୁଆ ବଣ୍ଡାମୁଣ୍ଡା ମଧ୍ୟରେ ମଞ୍ଜୁର ପାଇଥିବା ରେଳପଥ ଦୋହରା ପଥରେ ପରିଣତ ହେଲେ ଓଡ଼ିଶାର ଅଭ୍ୟନ୍ତର ସହିତ ଯୋଗାଯୋଗ ବ୍ୟବସ୍ଥା ଆହୁରି ସୁଦୃଢ଼ ହେବ । ଏହା ବ୍ୟତୀତ ତାଳଚେର କଟକ—ପାରାଦୀପ ରେଳପଥକୁ ଦୋହରା ରେଳପଥରେ ପରିଣତ କରିବା ପାଇଁ ପରିକଳ୍ପନା ରହିଛି ଓ ସର୍ଭେ ମଞ୍ଜୁର ହୋଇଛି । ସେହିପରି ଖୋର୍ଦ୍ଧା ଫୁଲବାଣୀ—ବଲାଙ୍ଗୀର ପ୍ରସ୍ତାବିତ ରେଳପଥର ସର୍ଭେ କାର୍ଯ୍ୟ ଶେଷ ହୋଇଛି । ଏହା ବ୍ୟତୀତ ଭୁବନେଶ୍ୱରଠାରେ ତିରିଶ କୋଟି ଟଙ୍କା ବ୍ୟୟରେ ଗୋଟିଏ ବଡ଼ ଡବା ମରାମତି କାରଖାନା, ରେଳବାଇ ନିଯୁକ୍ତି କମିଶନ ପ୍ରତିଷ୍ଠିତ ହୋଇଛି ଏବଂ ପଶ୍ଚିମାଞ୍ଚଳରେ ରେଳବାଇର ପ୍ରଶାସନିକ କାର୍ଯ୍ୟରେ ଦକ୍ଷତା ବୃଦ୍ଧି ଓ ପ୍ରସାର ପାଇଁ ସମ୍ବଲପୁରଠାରେ ଗୋଟିଏ ନୂଆ ଡିଭିଜନ ପ୍ରତିଷ୍ଠା କରିବା ପାଇଁ କାର୍ଯ୍ୟ ଚାଲୁଅଛି । ଏହାଛଡ଼ା କଟକ, ବାଲେଶ୍ୱର ଠାରେ ରୋଡ଼ ଓଭରବ୍ରିଜ୍ ନିର୍ମିତ ହୋଇଛି ଏବଂ ପ୍ରାୟ ପଚିଶ କୋଟି ଟଙ୍କା ବ୍ୟୟରେ ରାୟଗଡ଼ା, ସମ୍ବଲପୁରରୋଡ଼, ଯାଜପୁର ରୋଡ଼, ଭୁବନେଶ୍ୱରଠାରେ ଆହୁରି ପାଞ୍ଚଟି ଏବଂ ସିନ୍ଦୁରପଙ୍କ ଓ ସମ୍ବଲପୁର ଉପକଣ୍ଠରେ ତିନି କୋଟି ଟଙ୍କା ବ୍ୟୟରେ ଆଉ ଦୁଇଟି ରୋଡ ଓଭରବ୍ରିଜ୍ ନିର୍ମାଣ କରି ଚଳାଚଳ ବ୍ୟବସ୍ଥାକୁ ସୁଗମ କରିବା ପାଇଁ ମଞ୍ଜୁରୀ ମିଳିଛି । ଅନ୍ୟାନ୍ୟ ଛଅଶହ କୋଟି ଟଙ୍କାର ପ୍ରକଳ୍ପ ଓଡ଼ିଶାରେ ରେଳପଥର ସଂପ୍ରସାରଣ ଓ ପ୍ରଶାସନିକ ଦକ୍ଷତା ବୃଦ୍ଧି ନିମନ୍ତେ କାର୍ଯ୍ୟକାରୀ ହେଉଥିବା ଏକ ଅଭିନବ ଘଟଣା ।

ସଡ଼କ ପଥର ପ୍ରସାର ଓ ବିସ୍ତାର ମଧ୍ୟ ଅଗ୍ରାଧିକାର ପାଉଛି । ଅଧିକ ସଡ଼କ ନିର୍ମାଣ କରି ସବୁ ଗ୍ରାମ ଓ ସହର ସହିତ ସବୁଦିନିଆ ସଂଯୋଗ ବ୍ୟବସ୍ଥାକୁ ସୁଦୃଢ଼ କରିବା, ନଦୀ ଓ ନାଳ ଉପରେ ପୋଲ ନିର୍ମାଣ କରିବା, ଜାତୀୟ ରାଜପଥ ଓ ରାଜ୍ୟ ରାଜପଥ ଗୁଡ଼ିକୁ ଗମନାଗମନ ସକାଶେ ଅଧିକ ଅନୁକୂଳ କରିବା ପାଇଁ ବହୁ ନୂତନ ପ୍ରକଳ୍ପ ହାତକୁ ନିଆଯାଇଛି ।

ଏହି ସବୁ ପ୍ରକଳ୍ପଗୁଡ଼ିକ ସଂପୂର୍ଣ୍ଣ ହେଲେ ଚଳାଚଳ କ୍ଷେତ୍ରରେ ନୂତନ ସୁଯୋଗ ଓ ସଂଭାବନା ନିଶ୍ଚିତ ଭାବରେ ସୃଷ୍ଟିହେବ । ଏହା ସହିତ ଟେଲିଫୋନ, ବେତାର ଓ ଟେଲିଗ୍ରାଫ ଯୋଗାଯୋଗ ପ୍ରଣାଳୀର ପ୍ରସାର କରାଯାଉଛି ଏବଂ ଡାକ ସରବରାହ ବ୍ୟବସ୍ଥାକୁ ଶକ୍ତିଶାଳୀ କରା ହୋଇଛି ।

ଆବଶ୍ୟକତା ଅନୁସାରେ ବିଜୁଳି ଶକ୍ତି ଯୋଗାଇ ଦେବାଲାଗି ନୂତନ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରାଯାଉଛି । ବ୍ରଜରାଜନଗର ନିକଟସ୍ଥ ସୁପରଥର୍ମାଲ ଷ୍ଟେସନ ଓ ତାଳଚେର ନିକଟସ୍ଥ ସୁପର ଥର୍ମାଲ ଷ୍ଟେସନ ଏହାର ଅନ୍ତର୍ଭୁକ୍ତ ।

ସେହିପରି ଜଳଯୋଗାଣ, ଜମିବନ୍ଦୋବସ୍ତ ଓ ଅନ୍ୟାନ୍ୟ ଆନୁସଙ୍ଗିକ ବିଷୟରେ ଆଗୁଆ ପଦକ୍ଷେପ ନିଆଯିବା ଫଳରେ ଭିତ୍ତିଭୂମି ପ୍ରସାର କ୍ଷେତ୍ରକୁ ବ୍ୟାପକ କରାଯାଇପାରିଛି । ଆଗାମୀ ବର୍ଷରେ ଶିଳ୍ପ ଓ କୃଷିର ବିକାଶ ପାଇଁ ଏହି ପ୍ରଚେଷ୍ଟା ଯେ ଅନୁକୂଳ ହେବ ଏହା ନିଃସନ୍ଦେହ ।

**ଶିଳ୍ପ**—ଶିଳ୍ପ ବିପ୍ଳବପରେ ସମଗ୍ର ପୃଥିବୀରେ ଶିଳ୍ପ ବିକାଶ ଘଟିଛି । ମଣିଷର ସୁଖ ଓ ସମୃଦ୍ଧି ପାଇଁ, ତାର କଠୋର କାର୍ଯ୍ୟ ପ୍ରଣାଳୀକୁ ସହଜସାଧ୍ୟ କରିବାଲାଗି ଶିଳ୍ପ ସଭ୍ୟତାର ଅଭ୍ୟୁଦୟ । ତେଣୁ ଦେଶର ସର୍ବାଙ୍ଗୀନ ବିକାଶ କରିବା ପାଇଁ ଶିଳ୍ପ ବିକାଶକୁ ପ୍ରାଧାନ୍ୟ ଦିଆଯାଏ । ଏହା ବ୍ୟତୀତ ଶିଳ୍ପ ସହିତ ଦେଶରକ୍ଷା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଓଡ଼ିଶା ପ୍ରଧାନତଃ ଏକ କୃଷି ପ୍ରଧାନ ପ୍ରଦେଶ ହୋଇ ମଧ୍ୟ ଶିଳ୍ପର ବିକାଶ ଘଟି ନଥିବାରୁ ଏହାର ପ୍ରଚୁର ପ୍ରାକୃତିକ ସଂପଦର ସୁବିନିଯୋଗ ଯେପରି କରାଯାଇ ପାରିନାହିଁ ସେହିପରି ଶିଳ୍ପ ବିକାଶ ଘଟି ନଥିବାରୁ କୃଷିର ବିକାଶ ମଧ୍ୟ ବାଧାପ୍ରାପ୍ତ ହୋଇଛି । ଆଧୁନିକ କୃଷି ପ୍ରଣାଳୀରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ଘଟିଛି ତାହା ଶିଳ୍ପ ସଭ୍ୟତାର ଅବଦାନ । ରାସାୟାନିକ ସାର, କୀଟନାଶକ ଔଷଧ, କଳ ଲଙ୍ଗଳ, ଜଳସେଚନ ବ୍ୟବସ୍ଥା, ଉନ୍ନତ ଧରଣର ବିହନ ବ୍ୟବହାର ଶିଳ୍ପ ବିକାଶର ଅବଦାନ କହିଲେ ଚଳେ । ଗୋଟିଏ କଥାରେ କହିଲେ ଏକଥା କୁହାଯିବ ଯେ ଶିଳ୍ପ ବିକାଶ ମଣିଷ ଜୀବନକୁ ଅଧିକ ସମନ୍ୱିତ, ସମୃଦ୍ଧ ଓ ବେଗଗାମୀ କରିଛି । ଏହାର କୁପ୍ରଭାବ ମଧ୍ୟ ରହିଛି । କିନ୍ତୁ ଏକ ସମତୁଲ ସୁଷମ ଅର୍ଥନୈତିକ ବ୍ୟବସ୍ଥା ପାଇଁ କୃଷି ସହିତ ଶିଳ୍ପ ବିକାଶ ଅପରିହାର୍ଯ୍ୟ ।

ଓଡ଼ିଶାରେ ଶିଳ୍ପ ସ୍ଥାପନ ପାଇଁ ପ୍ରଥମ ପ୍ରଚେଷ୍ଟା କରନ୍ତି ଉତ୍କଳ ଗୌରବ ମଧୁସୂଦନ । ତାଙ୍କଦ୍ୱାରା ସ୍ଥାପିତ ଚମଡ଼ା କଳ ତିଷ୍ଠି ପାରିଲା ନାହିଁ ସିନା, କିନ୍ତୁ ଏହା ଓଡ଼ିଶାରେ ଶିଳ୍ପ ବିକାଶକୁ ପରାହତ କରିଥିଲା । ତାପରେ ଆଉ ସେଭଳି ବ୍ୟାପକ ଉଦ୍ୟମ ହୋଇ ନଥିଲା । ବ୍ରିଟିଶ ସରକାର ଯେପରି ଭାରତରେ ଶିଳ୍ପ ବିକାଶ ନକରି ଏ ଦେଶରୁ କଞ୍ଚାମାଲ ନେଇ ବିଲାତରେ କଳକାରଖାନାରୁ ଉତ୍ପାଦିତ ସାମଗ୍ରୀ ଏ ଦେଶକୁ ପଠେଇ ଏ ଜାତିକୁ ଶୋଷଣ କରୁଥିଲେ ଓଡ଼ିଶା ସେହିପରି ବହୁକାଳ ଏପରିକି ସ୍ୱାଧୀନତା ପରେ ମଧ୍ୟ ପଡ଼ୋଶୀ ଶିଳ୍ପୋନ୍ନତ ରାଜ୍ୟମାନଙ୍କ ଦ୍ୱାରା ଶୋଷିତ ହେଉଥିଲା । ପ୍ରାକୃତିକ ସଂପଦରେ ପୂର୍ଣ୍ଣ ଓଡ଼ିଶାରୁ କେବଳ କଞ୍ଚାମାଲ ବାହାରକୁ ନେଇ କଳକାରଖାନା ସ୍ଥାପନ କରାଯାଉ ନଥିଲା, ଓଡ଼ିଶାର ହଜାର ହଜାର ସଂଖ୍ୟାରେ ଶ୍ରମିକ ମଧ୍ୟ ଯାଇ ସେଇ କଳକାରଖାନାରେ ଅତି ଦୟନୀୟ ଅବସ୍ଥାରେ କାର୍ଯ୍ୟ କରିଥିଲେ । ଏହା ଦ୍ୱାରା ଓଡ଼ିଶାର ସଂମୃଦ୍ଧି ନହୋଇ ଶିଳ୍ପ ସ୍ଥାପନ କରାଯାଇଥିବା ରାଜ୍ୟର ଅର୍ଥନୀତିର ବିକାଶ ଘଟିଥିଲା । ଏହି ପ୍ରକ୍ରିୟାକୁ ବନ୍ଦ କରି ଓଡ଼ିଶାର ପ୍ରାକୃତିକ ସଂପଦକୁ ଓଡ଼ିଶାରେ ବ୍ୟବହାର କରିବା ପାଇଁ ଷଷ୍ଠଦଶକରୁ ବିଧିବଦ୍ଧ ଉଦ୍ୟମ ଆରମ୍ଭ ହେଲା । ପୂର୍ବରୁ ଶିଳ୍ପବିକାଶ ପାଇଁ ଯାହା କରାଯାଇଥିଲା ତାହା ଯଥେଷ୍ଟ ନୁହେଁ ବୋଲି ଭିତ୍ତିଭୂମିର ପ୍ରସାର କରାଗଲା ଏବଂ ତା ସହିତ ଶିଳ୍ପ ବିକାଶ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରାଗଲା । ଭାରତର ତିରିଶ ଭାଗ ଲୁହାପଥର ଷାଠିଏ ଭାଗ ମାଙ୍ଗାନିଜ, ପଞ୍ଚାନବେ ଭାଗ କ୍ରୋମ ପଥର, ସତୁରୀ ଭାଗ ବକସାଇଟ୍, ପ୍ରଚୁର ଚୂନ ପଥର, ପର୍ଯ୍ୟାପ୍ତ କୋଇଲା ଓ ଅନ୍ୟାନ୍ୟ ଖଣିଜ ପଦାର୍ଥ ଓଡ଼ିଶାରେ ଥିବାରୁ ଖଣିଜ ପଦାର୍ଥ ଭିତ୍ତିକ କାରଖାନା ପାଇଁ ଏଠାରେ ପ୍ରଭୂତ ସୁଯୋଗ ରହିଛି । ସେହିପରି ଜଙ୍ଗଲ ସଂପଦର ଉପଯୁକ୍ତ ଉପଯୋଗ ସକାଶେ ବିସ୍ତୃତ କ୍ଷେତ୍ର ରହିଛି । ସମୁଦ୍ରରୁ ଲୁଣ ମାରିବା, ସମୁଦ୍ର ବାଲିରୁ ମୋନାଜାଇଟ୍ ସଂଗ୍ରହ କରିବା, ମାଛ ଧରିବା ପ୍ରଭୃତି ବହୁ ସୁଯୋଗ ଥିବାରୁ ଓଡ଼ିଶାକୁ ଶିଳ୍ପ ସମୃଦ୍ଧ କରି ଏକାଧାରରେ ମାନବ ଶକ୍ତିର ସହିତ ପ୍ରାକୃତିକ ସଂପଦର ସୁବିନିଯୋଗ ନିମନ୍ତେ 'ହଜାରେ ଦିନରେ ହଜାର ଶିଳ୍ପ'ର ଧ୍ୱନି ଦିଆଗଲା । ଆଶ୍ଚର୍ଯ୍ୟର

ବିଷୟ ଏହି ଯେ ଏହା କେବଳ ଏକ ସ୍ଲୋଗାନ ହୋଇ ରହିନାହିଁ, ଅଳ୍ପ କେତେବର୍ଷ ମଧ୍ୟରେ ଏଥିପାଇଁ ଯେଉଁ ଅନୁକୂଳ ପରିବେଶ ସୃଷ୍ଟି କରାଗଲା ତାର ପୂର୍ଣ୍ଣ ବିନିଯୋଗ କରିବା ପାଇଁ ବହୁ ଉତ୍ସାହୀ ଉଦ୍ୟୋଗୀ ଆଗେଇ ଆସିଲେ । ବୃହତ ଶିଳ୍ପ ସହିତ, ମଧ୍ୟମ ଓ କ୍ଷୁଦ୍ର ଶିଳ୍ପ ଗଢି ଉଠିଛି ଓଡ଼ିଶାର ସ୍ଥାନେସ୍ଥାନେ । ଶିଳ୍ପ ବିକାଶ ସହିତ ତାଳଦେଇ ଗଢି ଉଠିଛି ନୂତନ ବିକାଶ କେନ୍ଦ୍ର । ଆଜି ଯଦି କେହି ସଡ଼କ ପଥରେ ଉତ୍ତରଦିଗରୁ ଓଡ଼ିଶା ଭ୍ରମଣରେ ଆସେ, ସେ ଜାମଶୋଳା ଚେକ୍‌ଗେଟ୍‌ଠାରେ ବିହାର ଓଡ଼ିଶାସୀମା ଚିହ୍ନିତ କରୁଥିବା ସୁବର୍ଣ୍ଣରେଖା ନଦୀ ପାର ହୋଇ ଓଡ଼ିଶାକୁ ପ୍ରବେଶ କଲାପରେ ଝାଡ଼ପୋଖରିୟା ଠାରୁ ବାରିପଦା, ସେଠାରୁ ବାଲେଶ୍ୱର, ଭଦ୍ରକ, ଯାଜପୁର, ଧାମନଗର, ଜଗତପୁର, ଚୌଦ୍ୱାର, କଟକ, ମହେଶ୍ୱର ଦେଇ ଭୁବନେଶ୍ୱରରେ ପହଞ୍ଚି ପୁଣି ଯଦି ଢେଙ୍କାନାଳ ଦେଇ ଅନୁଗୁଳ, ତାଳଚେର, ସମ୍ବଲପୁର, ଝାରସୁଗୁଡ଼ା, ରାଜଗାଙ୍ଗପୁର ଓ ରାଉରକେଲାକୁ ଯାଏ ଓଡ଼ିଶାର ପରିବର୍ତ୍ତିତ ରୂପ ନିଶ୍ଚୟ ତାକୁ ଅଭିଭୂତ କରିବ । ସେହିପରି ଦକ୍ଷିଣ ମୁହାଁ ହୋଇ ଭୁବନେଶ୍ୱରଠାରୁ ଚଳଣୀ ହୋଇ ଖୋରଧା ଦେଇ ବାଲୁଗାଁ, ଗଞ୍ଜାମ, ଛତ୍ରପୁର, ବ୍ରହ୍ମପୁର, ରାୟଗଡ଼ା, କୋରାପୁଟ, ସୁନାବେଡ଼ା, ଦାମନଯୋଡ଼ି ଗଲେ ସେଇ ଏକ ପ୍ରକାର ପରିବର୍ତ୍ତନ ଲକ୍ଷ୍ୟ କରିବ । ଜାଗ୍ରତ ଓଡ଼ିଶାର ନବନବ ରୂପ ବିଭିନ୍ନ ସ୍ଥାନରେ ଗଢିଉଠିଥିବା ଶିଳ୍ପ କେନ୍ଦ୍ରମାନଙ୍କରେ ଉଦ୍ଭାସିତ । ଆହୁରି ସୁଖର କଥା ଏହି ଯେ ଏଇ କେତେବର୍ଷ ମଧ୍ୟରେ କାରୀଗରି କୌଶଳ ଜାଣିଥିବା ପ୍ରଶିକ୍ଷଣ ପ୍ରାପ୍ତ ହଜାର ହଜାର ତରୁଣଯୁବକ ଏହି କଳକାରଖାନାମାନଙ୍କରେ କାର୍ଯ୍ୟରତ । ଓଡ଼ିଶା କାରୀଗରଙ୍କୁ କାମ ଖୋଜିଖୋଜି ଆଉ କଲିକତା ବା ଜାକିମାଟି ଯିବାକୁ ହେଉ ନାହିଁ । ହାତ ବଢ଼େଇଲେ ଅପେକ୍ଷା କରୁଥିବା ସୁଯୋଗ ହାତ ମୁଠା ଭିତରେ ଆସିଯିବ । ଶିଳ୍ପକେନ୍ଦ୍ର ମାନଙ୍କର ସୁପରିଚାଳନା ପାଇଁ କୁଶଳୀ ଇଞ୍ଜିନିୟର ଓ କାରୀଗର ସହିତ ପରିଚାଳନା ବିଦ୍ୟାରେ ଯୋଗ୍ୟତା ହାସଲ କରିଥିବା ଅନେକ ତାଲିମପ୍ରାପ୍ତ ଯୁବକ ଯୁବତୀଙ୍କୁ ଯୋଗାଇ ଦେବାପାଇଁ ରାଜ୍ୟରେ ଗଢି ଉଠିଛି ନୂତନ ଇଞ୍ଜିନିୟରିଂ ସ୍କୁଲ ଓ କଲେଜ, ପଲିଟେକ୍‌ନିକ୍ ଓ ଶିକ୍ଷା କେନ୍ଦ୍ର । 'ହଜାରେ ଦିନରେ ହଜାରେ ଶିଳ୍ପ, ସ୍ଥାପନ କରିବାର ସ୍ଲୋଗାନ ଆଉ ସ୍ଲୋଗାନ ହୋଇରହି ନାହିଁ କାର୍ଯ୍ୟରେ ପରିଣତ ହୋଇଛି ।

କିନ୍ତୁ ଯେତିକି ପ୍ରୟାସ ଓ ପ୍ରତିଭା ଆମ ମନରେ ରହିବା କଥା ତାର ଅଭାବରୁ କେତେକ ଶିଳ୍ପ ରୁଗ୍ଣ ଅବସ୍ଥାରେ । ଅନ୍ୟତ୍ର ବିଦ୍ୟୁତ୍‌ଶକ୍ତି ଅଭାବରୁ ପ୍ରତିଷ୍ଠିତ ଶିଳ୍ପ ମଧ୍ୟ କ୍ଷତିଗ୍ରସ୍ତ ଏବଂ ନୂତନ ଶିଳ୍ପାୟନ ବାଧାପ୍ରାପ୍ତ ଶିଳ୍ପର ବିକାଶ ପାଇଁ ଆବଶ୍ୟକ ଭିତ୍ତିଭୂମି ନରହିଲେ ଏହା ବାଧାପ୍ରାପ୍ତ ହେବ ସଂଦେହ ନାହିଁ । ଶିଳ୍ପ ବିକାଶକୁ ପଛେଇ ନଦେଇ ଯେଉଁ ଅଭାବ ଅସୁବିଧା ଦେଖା ଦେଉଛି ସେଗୁଡ଼ିକୁ ଶୀଘ୍ର ଅପସାରଣ କରିବାପାଇଁ ଅଙ୍ଗୀକାର ବଦ୍ଧ ଉଦ୍ୟମର ଆବଶ୍ୟକତା ରହିଛି ।

କୃଷି—ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ । ଏହାର ପଞ୍ଚାଶୀଭାଗ ଜନସାଧାରଣ ଗ୍ରାମରେ ବସବାସ କରନ୍ତି । ତେଣୁ କୃଷିର ଓ କୃଷିଭିତ୍ତିକ ଧନ୍ଦାର ଉନ୍ନତି ନ ହେଲେ ଓଡ଼ିଶାର ଦାରିଦ୍ର୍ୟ କେହି ଘୁଞ୍ଚାଇ ପାରିବେ ନାହିଁ । ଶିଳ୍ପ ଓ କୃଷି ଉଭୟ ଉଭୟର ପରିପୂରକ । ତେଣୁ ଗୋଟିକୁ ପ୍ରାଧାନ୍ୟ ଦେଇ ଅନ୍ୟଟିକୁ ଅବହେଳା କରାଯାଇ ନପାରେ । କୃଷିବିକାଶରେ ବାଧା ସୃଷ୍ଟି ନ କରି ଏବଂ ଏହାକୁ ତ୍ୱରାନ୍ୱିତ କରିବା ଲାଗି ଯେପରି ଶିଳ୍ପ ପ୍ରସାର ହୁଏ ସେଥିପ୍ରତି ଅଗ୍ରାଧିକାର ଦିଆଯିବାର କଥା । ଓଡ଼ିଶା କୃଷି ପ୍ରଧାନ ରାଜ୍ୟ ହୋଇ ମଧ୍ୟ ଏଠାରେ କୃଷି ଉତ୍ପାଦନରେ ସ୍ୱାଧୀନତା ପରେ ଆଶାନୁରୂପ ଉନ୍ନତି ପରିଲକ୍ଷିତ ହୋଇ ନାହିଁ । ବିଦ୍ୟାଧରପୁରଠାରେ ଭାରତୀୟ ଧାନ ଗବେଷଣା କେନ୍ଦ୍ର ଥାଇ ମଧ୍ୟ ନୂତନ ଜ୍ଞାନ ଓ କୌଶଳର ଉପଯୋଗ କରାଯାଉନାହିଁ । ଅଧିକଭାଗ ଜମିରେ ଏବେ ବି ଖାଲି ବର୍ଷା ପାଣି ଉପରେ ନିର୍ଭରଶୀଳ । ଜଳସେଚନର ପର୍ଯ୍ୟାପ୍ତ ବିକାଶ ଘଟି ନାହିଁ । ଗୋଟିଏ ବଡ଼ ଭୁଲକୁ ଏବେ ସଂଶୋଧନ କରାଯାଉଛି । ଓଡ଼ିଶାର ଉପକୂଳ ଜିଲ୍ଲାମାନଙ୍କରେ ଭୂଗର୍ଭ ଜଳ ସମ୍ପଦକୁ କୃଷିର ବିକାଶ ପାଇଁ ବିନିଯୋଗ କରାଯାଇ ନାହିଁ । କିନ୍ତୁ ଏବେ କେତେ ବର୍ଷ ହେବ ଏହାର ସଂଶୋଧନ କରି ଉଠା ଜଳସେଚନ କ୍ଷୁଦ୍ର ଓ ମଧ୍ୟମ ଧରଣର ଜଳସେଚନ ବ୍ୟବସ୍ଥାକୁ ପ୍ରାଧାନ୍ୟ ଦିଆଯାଇଥିବାରୁ ଆଉ ପାଞ୍ଚ ବର୍ଷ ମଧ୍ୟରେ ଅଭୂତପୂର୍ବ ସଫଳତା ମିଳିବାର ଆଶା ସମ୍ଭବ ହୋଇଛି । ଓଡ଼ିଆ କୃଷକକୁ ଆଧୁନିକ କୃଷି ପ୍ରଣାଳୀ ଓ କୌଶଳ ପ୍ରୟୋଗ କରିବା ପାଇଁ ଉଦ୍ୟମ କରିବା ସଙ୍ଗେ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଜଳସେଚନ ପ୍ରକଳ୍ପଗୁଡ଼ିକୁ କାର୍ଯ୍ୟରେ ପରିଣତ କରିବା, ରାସାୟନିକ ସାର ଓ କୀଟନାଶକ ଔଷଧର ସଫଳ ପ୍ରୟୋଗ କରିବା ଓ କୃଷିପ୍ରଣାଳୀକୁ ଯାନ୍ତ୍ରିକ କରଣ କରିବା ଉପରେ ପ୍ରାଧାନ୍ୟ ଦିଆଯାଉଛି । କୃଷି ପ୍ରଶିକ୍ଷଣର ପ୍ରସାର ସହିତ ଉନ୍ନତବୀଜ, ଅର୍ଥକରୀ ଫସଲର ପ୍ରସାର, ଫଳଶସ୍ୟ ଓ ନୂତନ ପଦ୍ଧତି ଅବଲମ୍ବନ ଉପରେ ମଧ୍ୟ ବ୍ୟାପକ ଦୃଷ୍ଟି ଦିଆଯାଉଛି ।

ଓଡ଼ିଆ କୃଷକ ଆଉ ଭାଗ୍ୟ ଉପରେ ନିର୍ଭର ନକରି କିପରି କୃଷି ଉତ୍ପାଦନ କ୍ଷେତ୍ରରେ ଅନ୍ୟର ସମକକ୍ଷ ହୋଇପାରିବ, ତାହା ସମସ୍ତ ଓଡ଼ିଆଙ୍କର ଧ୍ୟାନର ବିଷୟ ହେବା ଉଚିତ । ବାରମ୍ବାର ପ୍ରାକୃତିକ ବିପର୍ଯ୍ୟୟ ଘଟି କୃଷକର ଅଣ୍ଟାକୁ ଭାଙ୍ଗି ଦେଉଥିବାରୁ ସେଥିରୁ ଉଦ୍ଧାର ପାଇବାପାଇଁ ପ୍ରତିକାର ବ୍ୟବସ୍ଥାକୁ ବଳବତ୍ତର କରାଯାଉଛି ।

ଅରଣ୍ୟ ପରିବେଶ—ଓଡ଼ିଶାର ଦୂରଦୂରାନ୍ତର ଅଂଶ ଏକଦା ଅରଣ୍ୟ ସଂପଦରେ ପରିପୂର୍ଣ୍ଣଥିଲା । ବହୁପ୍ରକାର ପଶୁପକ୍ଷୀଙ୍କର ଲୀଳାସ୍ଥଳିଥିଲା ଏଇ ନିଘଞ୍ଚ ଅରଣ୍ୟାନୀ । କିନ୍ତୁ ସଭ୍ୟତାର ଓ ଶିଳ୍ପବିକାଶର ଅଗ୍ରଗତି ସହିତ ତାଳଦେଇ ନୂତନ ଜନପଦ, ନୂତନ ନଗର ସୃଷ୍ଟି ହେବା ସଂଗେସଂଗେ ଯୋଜନାବଦ୍ଧଭାବରେ ଅରଣ୍ୟ ସଂପଦର ସଂରକ୍ଷଣ ନକରି ସାମୟିକ ଲକ୍ଷ୍ୟ ବୃଦ୍ଧି ଓ ସ୍ୱାର୍ଥ ସୁବିଧା ସକାଶେ ବଣ୍ୟସମ୍ପଦ ନାଶ ହେବାକୁ ଲାଗିଲା । ଆଜି ଓଡ଼ିଶାର ବଣ୍ୟ ସମ୍ପଦ ତିରିଶ ଭାଗକୁ କମି ଆସିଛି । ବହୁ ପ୍ରକାର ପଶୁ ପକ୍ଷୀ ଆଉ ଦୃଷ୍ଟି ଗୋଚର ହେଉନାହାନ୍ତି । ପ୍ରକୃତି ମାନବ ଜୀବନର ବିକାଶ ସକାଶେ ଯେଉଁ ଅନୁକୂଳ ପରିବେଶ ସୃଷ୍ଟି କରିଥିଲା ତାହା କ୍ଷୟହେବା ଫଳରେ ଅସାମଞ୍ଜସ୍ୟ ଦେଖାଦେଇଛି ଏବଂ ଧିରେଧିରେ ଆମେ ଧ୍ୱଂସ ଆଡ଼କୁ ଟାଣିହୋଇ ଯାଉଛୁ । ଏଥିରୁ ରକ୍ଷା ପାଇବାପାଇଁ ନୂତନଚିନ୍ତା ଓ ଚେତନା ଆବଶ୍ୟକ । ନୂତନ ଅରଣ୍ୟ ସୃଷ୍ଟି ଓ ସାମାଜିକ ବନୀକରଣ ଉପରେ ଗୁରୁତ୍ୱ ଦିଆଯିବା ସଂଗେସଂଗେ ପରିବେଶର ସୁରକ୍ଷା, ପ୍ରଦୂଷଣ ହ୍ରାସକରିବା ଜାତୀୟ କାର୍ଯ୍ୟକ୍ରମ ଭାବରେ ଗୃହୀତ । କିନ୍ତୁ ଲକ୍ଷ୍ୟ ବହୁ ଦୂରରେ । ଆବଶ୍ୟକ ସାଧୁତା ଓ ନିଷ୍ଠା ଆଚରଣଗତ ନ ହେଲେ ଅନ୍ୟ କ୍ଷେତ୍ରରେ ଯେପରି ଏହି କ୍ଷେତ୍ରରେ ମଧ୍ୟ ସଫଳତା ସହଜଲବ୍ଧ ହେବନାହିଁ ।

ସାଧାରଣ—ଶିକ୍ଷା ସଚେତନତା ସୃଷ୍ଟି କରେ । ତେଣୁ ଭାରତ ପରି ଗୋଟିଏ ଗଣତାନ୍ତ୍ରିକ ସମାଜରେ ଜନସାଧାରଣଙ୍କୁ କେବଳ ଶାସନରେ ନୁହେଁ ଦେଶ ନିର୍ମାଣ କାର୍ଯ୍ୟରେ ସମ୍ପୃକ୍ତ କରିବାକୁ ହେଲେ ସେମାନଙ୍କ ମଧ୍ୟରେ ଗଭୀର ଆତ୍ମ ପ୍ରତ୍ୟୟ, କଠୋର ସାଧନା ଓ ଶ୍ରମ ସହିତ ମୂଲ୍ୟବୋଧ ଭିତ୍ତିକ ସଚେତନତା ଓ କର୍ତ୍ତବ୍ୟନିଷ୍ଠା ରହିବା ପ୍ରୟୋଜନ । ଶିକ୍ଷା ମଣିଷକୁ ଉଦାର, ବିନୟ, ଭଦ୍ର ଓ ଚିନ୍ତାଶୀଳ କରାଏ । ଓଡ଼ିଶାରେ ସାକ୍ଷରସଂଖ୍ୟା ଐତିହାସିକ କାରଣରୁ ଏବେବି ଅଳ୍ପ । ପ୍ରତି ଶତ ପ୍ରାୟ ୪୦ଭାଗ ଲୋକ ସାକ୍ଷର । ତେଣୁ ଶିକ୍ଷା ବ୍ୟବସ୍ଥାର ସମାଜୀକରଣ ଉପରେ ଗୁରୁତ୍ୱ ଦିଆଯାଉଛି । ବୈଷୟିକ ଶିକ୍ଷା ସହିତ ବିଶ୍ୱବିଦ୍ୟାଳୟ ଶିକ୍ଷାର ମାନ ଉନ୍ନତକରିବା ଜାତୀୟନୀତି । କିନ୍ତୁ ଏହି କ୍ଷେତ୍ରରେ ଆବଶ୍ୟକ ନିଷ୍ଠା ଓ ସାଧୁତା କେବଳ ଛାତ୍ରମାନଙ୍କର ଧ୍ୟେୟନୁହେଁ, ସମସ୍ତଙ୍କରଧ୍ୟେୟ ହେବା ବାଞ୍ଛନୀୟ ।

ଶିକ୍ଷାପରି ସ୍ୱାସ୍ଥ୍ୟ ମଧ୍ୟ ମାନବ ବିକାଶ ସମ୍ପଦର ଉପଯୋଗପାଇଁ ଆବଶ୍ୟକ । ସ୍ୱାସ୍ଥ୍ୟରକ୍ଷା ଓ ଚିକିତ୍ସା ସହିତ ଚିକିତ୍ସା ବିଜ୍ଞାନ ଓ ପ୍ରଶିକ୍ଷଣ ଜଡ଼ିତ । ପ୍ରାଥମିକଶିକ୍ଷା ସାର୍ବଜନୀନ କରିବାଲାଗି ସଂବିଧାନରେ ନିର୍ଦ୍ଦେଶ ରହିଛି । ପୁଣି ମୌଳିକ ଅଧିକାର ସହିତ ନାଗରିକର ମୌଳିକ କର୍ତ୍ତବ୍ୟ ମଧ୍ୟ ସଂବିଧାନରେ ଲିପିବଦ୍ଧ ହୋଇଛି । ତେଣୁ ଆମର ସାମାଜିକ ଜୀବନରେ ରାଜନୈତିକ, ସାମାଜିକ ଅଧିକାରବୋଧ ସହିତ କର୍ତ୍ତବ୍ୟବୋଧ ମଧ୍ୟ ସମାନ ସ୍ତରରେ ରହିବା ଉଚିତ୍ । ନହେଲେ ଗଣତାନ୍ତ୍ରିକ ସମାଜ ଓ ପଦ୍ଧତିର ସଂରକ୍ଷଣ ଓ ସମୃଦ୍ଧି ସମ୍ଭବନୁହେଁ । ପ୍ରତ୍ୟେକ ଅଧିବାସୀର ପ୍ରାଣରେ ଦେଶାନୁବୋଧ ଅଗ୍ରାଧିକାର ପାଇବା ଯେପରି ଆବଶ୍ୟକ ସେହିପରି ଜାତୀୟ ସମସ୍ୟା ଆଂଚଳିକ ଓ ବ୍ୟକ୍ତିଗତ ସମସ୍ୟାଠାରୁ ଅଧିକ ଅଗ୍ରାଧିକାର ପାଇବା ଦରକାର । ଏଥିରେହିଁ ଜାତିର ସ୍ୱାର୍ଥ ସୁରକ୍ଷା ଓ ସମସ୍ୟାର ସମାଧାନ ନିହିତ ।

ଆମର ଦେଶପ୍ରୀତି ସଂଦେହର ବସ୍ତୁ ହୋଇ ନପାରେ । ଦେଶପ୍ରତି ଆନୁଗତ୍ୟ ଉପରେ ସାଲିସ କରିବା ସମ୍ଭବନୁହେଁ । ଗୋଟିଏ ଜାତିର ସ୍ୱାଧୀନତା ଓ ସାର୍ବଭୌମତ୍ୱ କେବଳ ସେହିଦେଶର ସାମରିକ

ଶକ୍ତି ଉପରେ ନିର୍ଭରଶୀଳନୁହେଁ, ଜାତୀୟ ସଚେତନତା, ପ୍ରତିବଦ୍ଧତା ଓ ଦେଶାତ୍ମବୋଧ ଉପରେ ନିର୍ଭରକରେ । ଦେଶକୁ ଭଲପାଇ ଶିଖିଲେ ଦେଶର ସ୍ୱାର୍ଥ ଅଗ୍ରାଧିକାରପାଏ ଏବଂ ସମସ୍ୟା ଗୁଡ଼ିକର ସମାଧାନ ଆପେ ଆପେ ହୋଇଯାଏ । ଏବେ କେବଳ କୌଣସି ନିର୍ଦ୍ଦିଷ୍ଟ ରାଜ୍ୟ ବା ଅଂଚଳରେ ବିଚ୍ଛିନ୍ନତାବୋଧ, ଉଗ୍ରବାଦ ଓ ଆତଂକ ସୀମାବଦ୍ଧ ହୋଇ ରହିନାହିଁ, ଦେଶର ଅଖଣ୍ଡତା ଓ ଐକ୍ୟ ଏଥିପାଇଁ ବିପନ୍ନ ହେବାକୁ ବସିଛି । ଆମର ଚିନ୍ତା ଓ ଚେତନାରେ ଭାରତୀୟ ଚିରନ୍ତନ ମୂଲ୍ୟବୋଧ ସ୍ଥାନ ଧର୍ଣ୍ଣିଲେ ଆମେ ଆପେଆପେ ଜୀବନରୁ ଅନ୍ଧବିଶ୍ୱାସ, କୁସଂସ୍କାର, ମତାନ୍ଧତା ଦୂର କରିପାରିବୁ । ସଂଘର୍ଷନୁହେଁ ସମଝୋତା ବା ବୁଝାମଣାର ପ୍ରୟୋଜନସବୁ ସମସ୍ୟାର ସମାଧାନପାଇଁ ଅପରିହାର୍ଯ୍ୟ । ଆହୁରି ଏକଥା ବି ମନେରଖିବାକୁ ହେବ ଯେ ମୁଷ୍ଟିମେୟ କେତେକ ଲୋକ ଯଦି ଜାତୀୟ ସମ୍ପଦ ଉପଭୋଗକରନ୍ତି ଅଧିକାଂଶଙ୍କୁ ଦାରିଦ୍ର୍ୟର ସୀମାରେଖା ତଳେ ରହିବାକୁ ଛାଡ଼ି ଦିଅନ୍ତି, କେବଳ ଗଣତନ୍ତ୍ର ବିପନ୍ନ ହେବନାହିଁ, ଦେଶର ସଂହତି ଓ ଐକ୍ୟ ମଧ୍ୟ ବିପନ୍ନ ହେବ । ସହଯୋଗହିଁ ସର୍ବାଙ୍ଗୀଣ ସୃଷ୍ଟି କରେ । ଯେଉଁ ନୂତନ ନିର୍ମାଣର ଯୁଗ ଆସିଛି ତାର, ସଫଳ ରୂପାୟନ ଆମ ସମସ୍ତଙ୍କର ତ୍ୟାଗପୂତ କର୍ତ୍ତବ୍ୟନିଷ୍ଠା ଓ ଆନ୍ତରିକ ଶ୍ରଦ୍ଧା ଉପରେ ନିର୍ଭରକରେ । ଅସହିଷ୍ଣୁତା ଓ ଅହଂକାର ପରିତ୍ୟାଗକରି ଜାତିଧର୍ମ ନିର୍ବିଶେଷରେ ଭାରତକୁ ତଥା ଓଡ଼ିଶାକୁ ନୂଆରୂପ ଦେବାପାଇଁ ଯେଉଁ ଅଭିନବ ଉଦ୍ୟମ ଶୁରୁଅଛି ତାହାହିଁ ଜାତୀୟ ଯଜ୍ଞ ; ସେଥିରେ ଆହୁତି ଦେବାର ଅଧିକାର ସମସ୍ତଙ୍କର ରହିଛି । ସମସ୍ତଙ୍କୁ ସେହି ଅଧିକାର ବୋଧର ସ୍ୱାଦଦେଲେ ସେମାନଙ୍କଠାରୁ ସଂପୂର୍ଣ୍ଣ ଆନୁଗତ୍ୟ ସହିତ କର୍ତ୍ତବ୍ୟବୋଧ ମଧ୍ୟ ଆଶାକରିବା ଅପ୍ରାସଙ୍ଗିକ ହେବନାହିଁ । ଶାସନକଳକୁ ଅଧିକ ସକ୍ରୀୟ, ଦକ୍ଷ ଓ ସଚ୍ଚୋଟ କରିବା ସକାଶେ ପଦକ୍ଷେପ ନିଆଯାଉଛି ।

ନୂତନ ଭାରତ ଓ ନୂତନ ଓଡ଼ିଶାର ଗଠନ ଜଣଙ୍କର ବା ମୁଷ୍ଟିମେୟ କେତେକଙ୍କର ଦାୟିତ୍ୱନୁହେଁ, ଏହା ସମସ୍ତଙ୍କର । ଯେଉଁଦିନ ଦୁର୍ବଳତମ ବ୍ୟକ୍ତିଟି ମଧ୍ୟ ଅନୁଭବ କରିବ ଯେ ଯାହା କରଯାଉଛି, ଯେଉଁନୀତି ନିର୍ଦ୍ଧାରିତ ହେଉଛି ଏବଂ ଯେଉଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ସେଥିରେ ତାର ସର୍ବାଧିକ କଲ୍ୟାଣ ନିହିତ, ସେହିଦିନ ସେ ଜଣେ ଭରମ ନାଗରିକର କର୍ତ୍ତବ୍ୟ ସଂପାଦନ କରିବାପାଇଁ ସ୍ୱତଃପ୍ରବୃତ୍ତ ହୋଇ ଆଗେଇ ଆସିବ । ସେଇ ଅନୁଭବ ତାଭିତରେ ସୃଷ୍ଟି କରିବା ସକାଶେ ଅଂଗୀକାରବଦ୍ଧ ଉଦ୍ୟମ ଆରମ୍ଭ ହୋଇଛି । ଏହାହିଁ ନବଜାଗରଣର ଉଜ୍ଜ୍ୱଳତମ ଅବଦାନ । ଏହି ଶୁଭ ମୁହୂର୍ତ୍ତର ଉପଯୋଗ କରିବା ସମସ୍ତଙ୍କ ପକ୍ଷରେ ଏକ ଜାତୀୟ କର୍ତ୍ତବ୍ୟ । ବ୍ୟକ୍ତିଗତ ତଥା ସାମାଜିକ ଜୀବନରୁ ଭ୍ରଷ୍ଟାଚାର, ଆଳସ୍ୟ, ବିଶୃଙ୍ଖଳା, ମତାନ୍ଧତା, ଅଜ୍ଞତା, କୁସଂସ୍କାର ଓ ଶଠତା ଦୂରକରିବାପାଇଁ ନେତୃତ୍ୱ ମଧ୍ୟରେ ଯେପରି ଜନତା ମଧ୍ୟରେ ମଧ୍ୟ ସେହିପରି ପ୍ରୟାସ ଓ ସଂକଳ୍ପ ପ୍ରକାଶିତ ହେବା ଉଚିତ୍ । ସେଥିପାଇଁ ଏକ ଜୀବନ୍ତ ସ୍ପନ୍ଦିତ ସଂସ୍କୃତି ଜନଜୀବନରେ ସ୍ୱୀକୃତି ଓ ଗ୍ରାହ୍ୟହେଲେ ତାହା ଜୀବନଚର୍ଯ୍ୟାରେ ପରିଣତହେବ । ଅନ୍ୟାୟ, ଅବିଚାର ଓ ଉତ୍ପୀଡ଼ନ ବିରୁଦ୍ଧରେ ସେତିକିବେଳେ ସଂଗ୍ରାମ ସଫଳହେବ । ସେତିକିବେଳେ ଆଦର୍ଶ ଆଚରଣଗତ ହୋଇପାରିବ । ଏହା ନହେଲେ ସବୁ ସ୍ତରରେ ବିଶ୍ୱାସଯୋଗ୍ୟତା ବାଧାପ୍ରାପ୍ତ ହେବ ।

ପରିଶେଷରେ ଶ୍ରୀମା'ଙ୍କ ଉକ୍ତି ଉଦ୍ଧାରକରି ପ୍ରସଙ୍ଗ ସାଙ୍ଗ କରୁଛି—

ହେ ପ୍ରଭୁ !
ତୁମର ଯାହାଇଚ୍ଛା ତାହାହିଁ ମୁଁ କରୁଛି
ଜଗତରେ ଏକ ନୂତନ ଆଲୋକ ଅବତରଣ କରିଛି
ଏକ ନୂତନ ପୃଥିବୀ ଜନ୍ମ ନେଇଛି
ଯାହା ଆଜିଯାଏ ପ୍ରତିଶ୍ରୁତିର ବିଷୟଥିଲା
ତାହା କାର୍ଯ୍ୟରେ ପରିଣତ ହେଉଛି ।

ଏବେ ଅତୀତରେ ଦିଆଯାଇଥିବା ସବୁ ପ୍ରତିଶ୍ରୁତି ପୂର୍ଣ୍ଣ କରିବାର ବେଳ ଆସିଛି । ଏହି ଶୁଭ କାର୍ଯ୍ୟର ଆରମ୍ଭହିଁ ଏଇ ଚଳନ୍ତି ଦଶନ୍ଧିର ସର୍ବଶ୍ରେଷ୍ଠ ସାଫଲ୍ୟ ଏହାହିଁ ଓଡ଼ିଶାର ନବଜାଗରଣର ମହନୀୟ ମୁହୂର୍ତ୍ତ ।

୨, ଷ୍ଟେସନ ସ୍କୋୟାର
ଭୁବନେଶ୍ୱର
751001



# ସରଳ ଭାଷା ଲୋକଙ୍କ ଗଣତାନ୍ତ୍ରିକ ଅଧିକାର

**ଶ୍ରୀ ସହଦେବ ସାହୁ**

ଆମ ରାଜ୍ୟରେ ସରକାରୀ କାଗଜପତ୍ରରେ ସରଳ ଓଡ଼ିଆ ବ୍ୟବହାର କରାଯାଉ ଓ ଇଂରାଜୀ ଶବ୍ଦର କଦର୍ଥ ଅନୁବାଦ କରା ନ ଯାଉ ବୋଲି କିଛିଦିନ ତଳେ ମୁଖ୍ୟମନ୍ତ୍ରୀ କହିଥିଲେ । ଏହା କାର୍ଯ୍ୟକାରୀ କରିବାରେ ବାଧାସୃଷ୍ଟି ହେବ ନିଶ୍ଚୟ; କିନ୍ତୁ କିପରି କାର୍ଯ୍ୟକାରୀ କରାଯାଇ ପାରିବ, ସେ ବିଷୟ ଆଲୋଚନା କରିବାର ବେଳ ଆସିଛି ।

ଭାଷା କେବଳ ଲେଖକ ବା ବକ୍ତା ପାଇଁ ନୁହେଁ; ପାଠକ ବା ଶ୍ରୋତା ନଥିଲେ ଲେଖକର ଲେଖା ବା ବକ୍ତାର କଥା ବାହାରିବ ନାହିଁ । ସଫଳ ଭାବ ବିନିମୟର (ଥିଓରି ଅଫ୍ କମ୍ୟୁନିକେସନ) ଅନ୍ୟ ନିୟମ ହେଉଛି; ଶ୍ରୋତାର ଭାଷାରେ କୁହ, ପାଠକର ଭାଷାରେ ଲେଖ । ଏହା ନ ହେଲେ କଦର୍ଥ ବା ଭିନ୍ନ ଅର୍ଥ ବାହାରି ପାରେ । କବିତାର ଭିନ୍ନ ଭିନ୍ନ ଅର୍ଥ ହେବାର ଗୋଟିଏ ବଡ଼ କାରଣ ଯେ ପ୍ରତ୍ୟେକ ପାଠକ ତାର ନିଜ ଅର୍ଥ ବାହାର କରିଥାଏ । ଅର୍ଥ ସମସ୍ତଙ୍କ ପାଇଁ ସ୍ପଷ୍ଟ ନ ହେଲେ ପ୍ରତ୍ୟେକ ପାଠକ ବା ଶ୍ରୋତା ସମାଲୋଚକ ହୋଇପଡ଼େ ଏବଂ ତାର ନିଜ ବୁଝିବା ଅନୁଯାୟୀ ସମାଲୋଚନାର ଦିଗ ନିର୍ଦ୍ଦିଷ୍ଟ କରେ । ଏହି କାରଣରୁ ଗଦ୍ୟ ଲେଖାର ଯେତେ ସମାଲୋଚନା ବାହାରେ ନାହିଁ, ତାହାଠାରୁ ବେଶି ପଦ୍ୟ ରଚନାର ସମାଲୋଚନା ବାହାରେ ।

ଭାଷା ସରଳ ହେଲେ, ସମସ୍ତେ ବୁଝିପାରିଲେ ସାହିତ୍ୟ ସୃଷ୍ଟିର ମଜା ଚାଲିଯିବ : ଏ ଧାରଣା ଭାଷା ବିଭାଗର ଶିକ୍ଷକ ଓ ଅଧ୍ୟାପକମାନେ ଦେଇଥାନ୍ତି । ସେମାନଙ୍କ ସ୍ୱର ଧରି ଲେଖକ ଲେଖିକାମାନେ ମଧ୍ୟ କହିଥାନ୍ତି । କିନ୍ତୁ ସେମାନଙ୍କ ଦୃଷ୍ଟିରୁ ଆଲୋଚନା କରିବାର ବେଳ ଏ ନୁହେଁ । ଏତିକି କହିଲେ ଯଥେଷ୍ଟ ହେବ ଯେ, ଯଦି ପାଠକ ବା ଶ୍ରୋତା କଥା ବୁଝି ନ ପାରିଲେ, ବାକ୍ୟ ଗଠନ ତା ପାଇଁ କ୍ଲିଷ୍ଟ ହେଲେ ବା ଅଧିକାଂଶ ଶବ୍ଦର ଅର୍ଥ ବୁଝିବାପାଇଁ ଅଭିଧାନ ଦେଖିବାକୁ ବାଧ୍ୟ ହେଲେ, ତେବେ ପଢ଼ିବାର ଆଗ୍ରହ କମିଯିବ । ତାହାଦ୍ୱାରା ଆମେ ପାଠକ ଶ୍ରେଣୀ ବୃଦ୍ଧି ହେବାରେ ବାଧା ସୃଷ୍ଟି କରିବା ଓ ଶ୍ରୋତାମାନଙ୍କୁ ଭାଷଣକୁ ନ ଆସିବାର ଉତ୍ସାହିତ କରିବା । ଲେଖା ଏପରି ହେବା ଦରକାର ଯେ କେବଳ ବାକ୍ୟଗୁଡ଼ିକ ବୁଝିହେବ ତା ନୁହେଁ, ଗୋଟିଏ ଧାଡ଼ି କିମ୍ବା ବାକ୍ୟ ପଢ଼ିବାକ୍ଷଣି ଆଉ ଗୋଟିଏ ଧାଡ଼ି ବା ବାକ୍ୟକୁ ଆମ ମନଟାଣି ହୋଇଯିବ । ଏହାକୁ ଭାଷାର ସାବଲୀଳତା ବା ଫ୍ଲୋ କହନ୍ତି । ଏହା ସାହିତ୍ୟରେ ଯେତେ ଦରକାର, ସରକାରୀ କାଗଜପତ୍ରରେ ତା'ଠାରୁ ବେଶି ଦରକାର ।

ଅନ୍ୟାନ୍ୟ ଅଧିକାର ଭଳି "ବୁଝିବାର ଅଧିକାର" ଗୋଟିଏ ମୌଳିକ ଅଧିକାର । ଗଣତାନ୍ତ୍ରିକ ସରକାର ଲୋକଙ୍କ ନିକଟରେ ହେବା କଥା । ଯଦି ସରକାରୀ ଚିଠିପତ୍ର ବା ଆଦେଶନାମା ଲୋକଙ୍କର ଅବୋଧ୍ୟ ରହିଯାଏ, ତେବେ ସରକାର ଓ ନାଗରିକ ମଧ୍ୟରେ ଥିବା ଦୂରତା କମିବ ନାହିଁ । ଏହି କାରଣରୁ ଭାଷା ସରଳ ହେବା ସର୍ବାଦୌ ବାଞ୍ଛନୀୟ । କେବଳ ସରକାରୀ ନୁହେଁ, ବେସରକାରୀ ଅନୁଷ୍ଠାନ, କଂପାନୀ ଓ ବ୍ୟବସାୟିକ ସଙ୍ଗଠନମାନେ ମଧ୍ୟ ସରଳଭାଷା ବ୍ୟବହାର କରିବା ଉଚିତ । ଯେ ପର୍ଯ୍ୟନ୍ତ ବୁଝିବା ପାଇଁ ମଧ୍ୟସ୍ଥ (ଶିକ୍ଷକ ହେଉ ବା ପ୍ରଶାସନ ଶବ୍ଦକୋଷ ହେଉ) ଦରକାର, ସେ ପର୍ଯ୍ୟନ୍ତ ପତ୍ର ପ୍ରେରକ ଓ ପତ୍ର ପାଠକ ମଧ୍ୟରେ ଦୂରତା ରହିବ । ଜମିବାଡ଼ିରୁ ମଧ୍ୟ-ସ୍ୱତ୍ୱଅଧିକାର ଉଠାଇ ଦେଇ ସରକାର ଓ ଚାଷୀ ମଧ୍ୟରେ ଯଦି ସିଧାସଳଖ ଯୋଗସୂତ୍ର ରଖାଯିବାର ବ୍ୟବସ୍ଥା ହେଉଛି, ତେବେ ଲେଖକ ଓ ପାଠକ ମଧ୍ୟରେ ମଧ୍ୟସ୍ଥର ଆବଶ୍ୟକତା କାହିଁକି ନ କମାଇବା ?

ଅମଲତନ୍ତ୍ରର ଭାଷା, ଓକିଲ ବା ଆଇନ ଅଦାଲତରେ ବ୍ୟବହୃତ କାଗଜର ବାକ୍ୟ ତଥା ବୀମା କଂପାନୀ ବା ବ୍ୟାଙ୍କର ଦଲିଲରେ ଥିବା ସର୍ତ୍ତାବଳିକୁ କେତେଜଣ ସାଧାରଣ ନାଗରିକ ବୁଝନ୍ତି ? ତଥାପି ଭାଷାକୁ ସରଳ କରିବା ପାଇଁ

ଯଦି ଉଦ୍ୟମ ହୁଏ, ତାର ବିରୋଧ କରିବେ ଆଇନଜୀବୀ ବା ଓକିଲମାନେ । ଅନ୍ୟ ଯେଉଁମାନେ ବିରୋଧ କରନ୍ତି ସେମାନେ ବୁଝନ୍ତି ନାହିଁ ସରଳଭାଷା କ'ଣ ।

ଭାଷାକୁ ସରଳ କରିବା ଅର୍ଥ କ'ଣ ? ସମାଜରେ ପ୍ରଚଳିତ ଗଦ୍ୟ ଶୈଳୀକୁ ନିୟନ୍ତ୍ରଣ କରିବା ଏହାର ଲକ୍ଷ୍ୟନୁହେଁ । ଆଇନଦ୍ୱାରା ବ୍ୟକ୍ତିଗତ ଲେଖନୀର ଢାଞ୍ଚା ବଦଳାଇବା ଏହାର ଉଦ୍ଦେଶ୍ୟ ନୁହେଁ । ଭାଷାକୁ ସରଳ କରିବା ଅର୍ଥ ନୁହେଁ ଯେ କେବଳ ଦୁଇତିନି ଅକ୍ଷରିଆ ଓଡ଼ିଆଶବ୍ଦ ବ୍ୟବହାର ହେବ ; କିମ୍ବା ସଚ୍ଚି ରାଉତରାୟ ବା ଗୋପୀନାଥ ମହାନ୍ତିଙ୍କ ରଚନାକୁ ଶିଶୁର ଦରୋଟି ଭାଷାରେ ଅନୁବାଦ କରାହେବ, ଅଥବା ରାଧାନାଥ ରାୟ ଓ ଫକୀର ମୋହନ ସେନାପତିଙ୍କ ସୃଷ୍ଟିକୁ ଆଦିବାସୀର ଭାଷାରେ ଲେଖାଯିବ । ଏ ଭଳି କରିବାର ଇଚ୍ଛା ଅଦମନୀୟ ହେଲେ ମଧ୍ୟ, ତାହା ଭାଷା ସରଳୀକରଣର ଲକ୍ଷ୍ୟ ନୁହେଁ । ଭାଷାର ଗୋଟିଏ ଗୋଟିଏ ଶବ୍ଦ ଭିନ୍ନଭିନ୍ନ ଅର୍ଥରେ ବ୍ୟବହାର କରାଯାଇଥାଏ ; ବିଭିନ୍ନ ବିଷୟରେ ବ୍ୟବହାର ହେଲେ ଏହାର ସ୍ୱତନ୍ତ୍ର ଅର୍ଥ ବାହାରିଥାଏ । ସାହିତ୍ୟରେ "ବୃତ୍ତାନ୍ତ"ର ଅର୍ଥ କଥା ; କିନ୍ତୁ ସାମ୍ବାଦିକତାରେ ଏହାର ଅର୍ଥ ସମାଚାର ହେବ । ଏଗୁଡ଼ିକୁ କୂଳଭାଷା ବା ବୃତ୍ତିଶବ୍ଦ କୁହାଯାଏ ; ଇଂରାଜୀରେ 'ଜାରଗନ୍' କୁହନ୍ତି । ବୃତ୍ତିଗତ ବା ପାଠଗତ ଗୁଡ଼ିକୁ ବଦଳାଇବା ବା ଏଡ଼ାଇଦେବା ସରଳୀକରଣର ଲକ୍ଷ୍ୟନୁହେଁ । ଓକିଲ ଓକିଲ ଭିତରେ, ହିସାବରକ୍ଷକ ହିସାବ ରକ୍ଷକ ମଧ୍ୟରେ ଯେମିତି କଥାବାର୍ତ୍ତା ହେଉଛନ୍ତି ହେଉନ୍ତୁ ; ଯେ ପର୍ଯ୍ୟନ୍ତ ପରସ୍ପର ବୁଝୁଛନ୍ତି, ଚିନ୍ତାନାହିଁ ତାହା ହେଲେ 'ସରଳ ଓଡ଼ିଆ ଆନ୍ଦୋଳନ'ର ଲକ୍ଷ୍ୟକ'ଣ ? ଆମେ ବ୍ୟବହାର କରିଥିବା ଦଲିଲ ଦସ୍ତାବୀଜମାନ ଆମ କାମରେ ଆସୁଛିତ ? ସରକାର ହେଉ, ମହାଜନ ହେଉ ବା ବୀମା କଂପାନୀ ହେଉ, ସେମାନେ ଯେଉଁ କାଗଜ ଦିଅନ୍ତି ସାଧାରଣ ନାଗରିକ ବା ଗ୍ରାହକ ବୁଝେକି ? ଯଦି ଗ୍ରାହକ କୌଣସି ଲିଖିତ ଦଲିଲମାନି ଚଳିବ, ସେ ତା'ର ଭାଷା ବୁଝିବା ଦରକାର । ଅଧିକାଂଶ ସମୟରେ ଗ୍ରାହକ ଚିହ୍ନିତ ସ୍ଥାନରେ ଦସ୍ତଖତମାରେ, ସେ ପ୍ରତ୍ୟେକ ଲିଖିତ ଶବ୍ଦକୁ ମାନିନେଇଛି ବୋଲି କହିବା ଉଚିତ ହେବନାହିଁ । ତେଣୁ ଜନସାଧାରଣ ବର୍ତ୍ତମାନ ଗୋଟିଏ ନୂଆ ଅଧିକାର ଦାବୀ କରୁଛନ୍ତି । ତାହା ହେଉଛି ବୁଝିବାର ଅଧିକାର (ରାଇଟ୍ ଟୁ ଅଣ୍ଡରଷ୍ଟାଣ୍ଡ) । ଗ୍ରାହକ ପାଇଁ ଦଲିଲ ତା ପାଇଁ ଅବୋଧ ହେବା ଉଚିତ୍ କି ? ଦୂରଦୃଷ୍ଟି ଦେଇ ଚିନ୍ତାକଲେ ଆମେ ଦେଖିବା ସରଳ ଦଲିଲ କେବଳ ଗ୍ରାହକର ସୁବିଧା କରେ ନାହିଁ, ବ୍ୟବସାୟ ବଢ଼ିବାରେ ସାହାଯ୍ୟ କରେ ମଧ୍ୟ । ଆଇନ୍ ଅଦାଲତପାଇଁ ସ୍ୱତନ୍ତ୍ର ପ୍ରକାର ଭାଷା ଦରକାର ବୋଲି ଯେଉଁମାନେ କହନ୍ତି ସେମାନେ ମଧ୍ୟସ୍ଥଗୋଷ୍ଠୀର ଅନ୍ତର୍ଭୁକ୍ତ । ଠାକୁରଙ୍କୁ ପୂଜାକରିବାପାଇଁ ସଂସ୍କୃତ ଭାଷା ଦରକାର ଓ ବ୍ରାହ୍ମଣ ହୋଇଥିବା ଦରକାର ବୋଲି ଯେଉଁ ପୁରୋହିତ ଗୋଷ୍ଠୀ କହନ୍ତି, ଏମାନେ ସେହିମାନଙ୍କ ଭଳି ମଧ୍ୟସ୍ଥ ଶ୍ରେଣୀର । ଆଇନଗତ ପ୍ରଭାବକୁ (ଲିଗାଲ ଏଫେକ୍ଟିଭ୍‌ନେସ୍) ବଳି ନ ଦେଇ ମଧ୍ୟ ଭାଷାକୁ ବୋଧଗମ୍ୟ କରାଯାଇପାରେ । ଏଠାରେ ଗୋଟିଏ ବ୍ୟାଙ୍କର ଦଲିଲର ମୂଳବାକ୍ୟ ଗୁଡ଼ିକ ସହିତ ଡାହାଣ ପାଖରେ ସରଳ ଇଂରାଜୀର ବାକ୍ୟ ଦିଆଯାଇଛି । ତୁଳନାପାଇଁ ଓଡ଼ିଆରେ ମୂଳ ଦଲିଲର ଉଦ୍ଦେଶ୍ୟ ବା ଭାଷାର ଅର୍ଥ ଭିନ୍ନ ହେଉଛି କି ? ଯଦି ଭିନ୍ନ ହେଉନାହିଁ, ସରଳ ଇଂରାଜୀ ବା ସରଳ ଓଡିଆ ବ୍ୟବହାର କରିବାରେ ଅନ୍ତରାୟ କେଉଁଠି ?

ସରଳ ଇଂରାଜୀ ବ୍ୟବହାର ହେବା ପୂର୍ବରୁ ମାର୍କିନ ସିଟି ବ୍ୟାଙ୍କରେ ବ୍ୟବହୃତ ଗୋଟିଏ ଦଲିଲର କିଛି ଅଂଶ :

In the event of default in the payment of this or any other obligation or the performance or observance of any term of covenant contained herein or in any note or other contract or agree-evidencing or relating to obligation or any Collatoral on the Borrower's part to be performed or observed, or the undersigned borrower shall die, or any of the undersigned become insolvent or make an assignment for the benefit of creditors, or a petition shall be filed by or against any of the undersigned under any provision of the Bankruptcy Act, or any money, securities or property of the undersigned now or hereafter on deposit with or in the possession or under the control of the Bank shall be attached or become subject to distraint proceedings any order or process of any court, or the Bank shall deem itself to be insecure, then and in any such event, the Bank shall have the right (at its option), without demand or notice of any kind, to declare all or any part of the Obligations to be immediately due and payable.

ସରଳ ଇଂରାଜୀରେ ଲିଖିତ ଉକ୍ତ ଅଂଶ :

Default. I'll be in default—

1. If I don't pay an instalment on time, or
2. If any other creditor tries by legal process to take any money of mine in your possession.

ଋଣ ଦେଉଥିବା ବ୍ୟାଙ୍କ ନିଜର ସୁରକ୍ଷା ପାଇଁ ଚିରାଚରିତ ଦଲିଲରେ ବିସ୍ତାରିତ ଭାବରେ ଗୁଡ଼ିଏ ସର୍ତ୍ତ ଦେଇଛି; ତହିଁରେ ପ୍ରାୟ ୧୮୦ରୁ ଅଧିକ ଶବ୍ଦ ଲାଗିଛି । ଗୋଟିଏ ବାକ୍ୟଖଣ୍ଡ (କ୍ଲଜ୍)ରୁ ଆଉ ବାକ୍ୟଖଣ୍ଡକୁ ଯିବାକୁ ମନ ବଳାଉନାହିଁ ; ପ୍ରତ୍ୟେକ ଅନ୍ୟଠାରୁ ଅଧିକ ଦୁର୍ବୋଧ୍ୟ । ସାଧାରଣଲୋକ ଆଖିବୁଜି ଦସ୍ତଖତ କରେ; ନହେଲେ ଋଣ ପାଇବ ନାହିଁ । କାର୍ଯ୍ୟକ୍ଷେତ୍ରରେ କେଉଁ ସର୍ତ୍ତଟି ବ୍ୟବହାର ହୁଏ, ତାହାରି ଉପରେ ଜୋର ଦେଲେ ଦଲିଲଟି ସରଳ ହୋଇଯିବ । ଋଣ କାରବାରରେ ମୂଳସର୍ତ୍ତ ହେଉଛି କିସ୍ତି ଯେପରି ଖିଲାପନହୁଏ ତା ଉପରେ ଗୁରୁତ୍ୱ ଦେଇ ସରଳ ଇଂରାଜୀରେ ଉପରଲିଖିତ ଅଂଶ ଦିଆଯାଇଛି । ଓଡିଆରେ ପୁରୁଣା ଦଲିଲଟି କିପରି ହେଉଛି ଓ ସରଳଭାଷାରେ କିପରି ହେବା ଉଚିତ, ତାହା ନିମ୍ନରେ ଦିଆଗଲା ।

ପୂର୍ବରୁ ଋଣଗ୍ରହୀତା ତରଫରୁ କର୍ତ୍ତବ୍ୟରେ ବା ବନ୍ଧକ ସଂପର୍କୀୟ କୌଣସି ଚୁକ୍ତିନାମା ବା ଠିକା ବା ଟିପଣୀରେ

ଥିବା କୌଣସି ସନଦର ସର୍ତ୍ତ ପାଳନ କରିବାରେ ବା ଅନ୍ୟ କୌଣସି କର୍ତ୍ତବ୍ୟରେ ବା ଋଣ ପରିଶୋଧ କରିବାରେ ଖିଲାପ ହେଲେ, କିମ୍ବା ନିମ୍ନ ସ୍ୱାକ୍ଷରକାରୀ ଋଣଗ୍ରହୀତା ଇହଧାମ ତ୍ୟାଗ କରେ କିମ୍ବା ନିମ୍ନ ସ୍ୱାକ୍ଷରକାରୀମାନଙ୍କ ମଧ୍ୟରୁ କେହି ଦେବାଳିଆ ହୋଇଗଲେ ବା କୌଣସି ଋଣଦାନକାରୀଙ୍କ ନାମରେ ହସ୍ତାନ୍ତର କରେ କିମ୍ବା ଦେବାଳିଆ ଆଇନର କୌଣସି ଧାରା ଅନୁଯାୟୀ ନିମ୍ନସ୍ୱାକ୍ଷରକାରୀଙ୍କ ମଧ୍ୟରୁ କାହାରି ବିରୁଦ୍ଧରେ ଦରଖାସ୍ତ ପେଶ୍ ହେଲେ କିମ୍ବା ନିମ୍ନସ୍ୱାକ୍ଷରକାରୀର କୌଣସି ଟଙ୍କା ପଇସା, ସଂପତ୍ତି ବା ବନ୍ଧକ ଏବେ ବା ପରବର୍ତ୍ତୀ କାଳରେ ଡିପୋଜିଟ ହେଲେ ବା ବ୍ୟାଙ୍କ ଅଧିନକୁ ଆସିଲେ, ସେ ସମସ୍ତ କୋର୍ଟ ଆଦେଶ ଅନୁଯାୟୀ ବାଜ୍ୟାପ୍ତି ହେଲେ ବା ନିଲମ ହେଲେ କିମ୍ବା ବ୍ୟାଙ୍କଟଙ୍କା ପାଇବାର ଆଶାକ୍ଷୀଣ ମନେକଲେ, ସେହି ସମୟରେ ଉକ୍ତ ଘଟଣାକ୍ରମେ ବ୍ୟାଙ୍କ ଚିଜ ଇଚ୍ଛାରେ ନୋଟିସ ହେଉ ବା ବିନାନୋଟିସରେ ହେଉ ସମସ୍ତ ଦେୟ ତତକ୍ଷଣାତ ଆଦାୟ ଯୋଗ୍ୟ ବୋଲି ଘୋଷିତ କରିପାରିବ ।

ସରଳ ଓଡିଆରେ ବର୍ତ୍ତମାନ :

ଖିଲାପ ।

ମୁଁ ଖିଲାପ କରିଛି ବୋଲି ଧରାଯିବ

ଯଦି

(୧) ଯଥାସମୟରେ ମୁଁ କିଛି ନ ଦିଏ, କିମ୍ବା

(୨) ଆଇନର ଆଶ୍ରୟ ନେଇ ଅନ୍ୟ କୌଣସି ଋଣଦାନକାରୀ ମୋର କୌଣସି ଧନ ବା ସଂପତ୍ତି ନେବାକୁ ଚେଷ୍ଟା କରେ ।

(ଆଉ କିଛି ଆର ଥର୍‌କୁ)



ଢେଙ୍କାନାଳ ଅନ୍ଧ-ମୂକ-ବଧିର ଛାତ୍ରଛାତ୍ରୀଙ୍କୁ ପଦକ ବିତରଣ

# ଓଡ଼ିଶାର ଅର୍ଥନୈତିକ ସ୍ଥିତି

ଡକ୍ଟର ବୈଦ୍ୟନାଥ ମିଶ୍ର

ଓଡ଼ିଶା ଏ ପର୍ଯ୍ୟନ୍ତ ଗୋଟିଏ ଦରିଦ୍ର ରାଜ୍ୟ ବୋଲି ସାରା ଭାରତରେ ନିନ୍ଦିତ ହେଉଛି । ଓଡ଼ିଶାରେ ଅନେକ ବିଭବ ଥାଇ ଓଡ଼ିଶା କାହିଁକି ଏ ପର୍ଯ୍ୟନ୍ତ ଦରିଦ୍ର ରହିଛି ବୋଲି ଅନେକ ପ୍ରଶ୍ନ କରୁଛନ୍ତି । କିନ୍ତୁ ଖୁବ୍ କମ୍ ଲୋକ ପ୍ରକୃତ ଅବସ୍ଥା ବୁଝିଛନ୍ତି ବା ବୁଝିବାକୁ ଚେଷ୍ଟା କରୁଛନ୍ତି । ଗତ ୪୦ ବର୍ଷ ଭିତରେ ଓଡ଼ିଶାର ଯେ କିଛି ଉନ୍ନତି ନ ହୋଇଛି, ତାହା ନୁହେଁ । କିନ୍ତୁ ତମେ ଯଦି ଖୁବ୍ ନିମ୍ନସ୍ତରରୁ ଆରମ୍ଭ କରିବ, ତାହାହେଲେ ଅନ୍ୟ ରାଜ୍ୟମାନଙ୍କ ସହିତ ସମକକ୍ଷ ହେବାକୁ ଅନେକ ସମୟ ଲାଗିବ । ଅନ୍ୟମାନେ ମଧ୍ୟ ଅଗ୍ରଗତି କରୁଛନ୍ତି । ସେମାନଙ୍କର ଗତି ଯଦି ମନ୍ଥର ହୋଇଥାନ୍ତା, ତାହାହେଲେ ହୁଏତ ଆମେ ସେମାନଙ୍କୁ ଏହି ସମୟ ଭିତରେ ଟପି ଯାଇ ପାରିଥାନ୍ତେ । ସେମାନଙ୍କ ଗତି କିନ୍ତୁ ମନ୍ଥର ନୁହେଁ । ଅର୍ଥନୈତିକ ପ୍ରଗତି ପାଇଁ ସବୁ ରାଜ୍ୟରେ ଉଦ୍ୟମ ଚାଲିଛି । ଯେଉଁଠାରେ ଠିକେ ଭଲ ଆଧାରିକ ସଂରଚନା (infrastructure) ଅଛି, ଲୋକମାନଙ୍କର ଉଦ୍ୟମଶୀଳତା ବା ସାହସିକତା ପଦକ୍ଷେପ ନେବାର ଶକ୍ତିenterpriseଅଛି, ରାଜନୈତିକ କ୍ଷେତ୍ରରେ ସ୍ଥିରତା ଅଛି, କୃଷି, ଶିଳ୍ପ ଓ ବ୍ୟବସାୟରେ ବିନିଯୋଗ କରିବା ପାଇଁ ଯଥେଷ୍ଟ ପୁଞ୍ଜି ଅଛି ଏବଂ ଅର୍ଥନୀତିକ ସଂଗଠନ ଅର୍ଥନୈତିକ ବିକାଶର ଗତିରୋଧ ନ କରି, ଅର୍ଥନୀତିକୁ ଗତିଶୀଳ କରୁଛି, ସେଠାରେ ଅର୍ଥନୈତିକ ପ୍ରଗତି ସହଜ ହେଉଛି । ଓଡ଼ିଶାରେ କ'ଣ ଅଛି ଓ କ'ଣ ନାହିଁ, ତାହା ସମସ୍ତଙ୍କୁ ଅଳ୍ପେ ବହୁତେ ଜଣା । ତେଣୁ ସେ ସବୁ ଏଠାରେ ବିସ୍ତୃତ ଭାବରେ ଆଲୋଚନା କରିବାର କୌଣସି କାରଣ ନାହିଁ । କାହାକୁ ଦୋଷ ଦେବା ବା କାହାକୁ ପ୍ରଶଂସା କରିବା ଆମର ଉଦ୍ଦେଶ୍ୟ ନୁହେଁ । ଆମର ଲେଖିବାର ଉଦ୍ଦେଶ୍ୟ ହେଉଛି ଯେ ଗତ ଚାଳିଶ ବର୍ଷରେ ଯାହା ଉନ୍ନତି ହୋଇଛି, ତାହା ଆମର ନିନ୍ଦାକୁ ଦୂର କରିବାରେ ସମର୍ଥ ହୋଇ ନାହିଁ । ୧୯୩୬ ଠାରୁ ୧୯୪୭ ପର୍ଯ୍ୟନ୍ତ ହିସାବ ଦେଇ କିଛି ଲାଭ ନାହିଁ । ଔପନିବେଶିକ ଅବସ୍ଥାରେ କୌଣସି ରାଜ୍ୟ ଉନ୍ନତି କରି ପାରେ ନାହିଁ । ଓଡ଼ିଶା ମଧ୍ୟ କରି ପାରି ନାହିଁ । ସେତେବେଳେ ମଧ୍ୟ ଓଡ଼ିଶାର ଗଡ଼ଜାତଗୁଡ଼ିକ ଓଡ଼ିଶା ସହିତ ସାମିଲ ହୋଇ ନ ଥିଲେ । ମୟୂରଭଞ୍ଜ ବ୍ୟତୀତ ଅନ୍ୟ ଗଡ଼ଜାତଗୁଡ଼ିକ ୧୯୪୮ରେ ଓଡ଼ିଶାରେ ସାମିଲ ହେଲା । ମୟୂରଭଞ୍ଜ ୧୯୪୯ରେ ଓଡ଼ିଶାରେ ମିଶିଲା । ତେଣୁ ପୂର୍ଣ୍ଣାଙ୍ଗ ଓଡ଼ିଶାର ଜନ୍ମ ୧୯୪୯ ଠାରୁ । ସେ ଯାହାହେଉ, ସ୍ୱାଧୀନତା ପରଠାରୁ ଓଡ଼ିଶାର ପ୍ରଗତିକୁ ଦେଖିବାକୁ ପଡ଼ିବ । କାରଣ ସ୍ୱାଧୀନତା ପରେ ପ୍ରଗତିର ସ୍ରୋତ ଆରମ୍ଭ ହୋଇଛି ।

ପ୍ରଗତିର ଇତିହାସ ଆଲୋଚନା କରିବା ଏଠାରେ ସମ୍ଭବ ନୁହେଁ । ଦରକାର ମଧ୍ୟ ନାହିଁ । ବର୍ତ୍ତମାନର ଅବସ୍ଥା ଜଣ ଜାଣିଲେ, ଆମେ କେତେଦୂର ଅଗ୍ରଗତି କରିଛୁ, ଜାଣିହେବ । କାରଣ ଆମେ ମୋଟାମୋଟି ଶୂନରୁ ଆରମ୍ଭ କରିଛୁ । ସାଧାରଣତଃ ବ୍ୟକ୍ତିପିଛା ଆୟ ଅନୁସାରେ ଗୋଟିଏ ରାଜ୍ୟର ଆର୍ଥିକ ଉନ୍ନତି ବିଚାର କରାଯାଏ । ସେହି ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ ୧୯୮୫-୮୬ ରେ ଓଡ଼ିଶାର ବ୍ୟକ୍ତିପିଛା ଆୟ ହେଉଛି ୧,୯୫୪ ଟଙ୍କା । ସେହିବର୍ଷ ଭାରତରେ ଜଣପିଛା ହାରାହାରି ବାର୍ଷିକ ଆୟ ହେଉଛି ୨,୫୯୬ ଟଙ୍କା । ଅର୍ଥାତ୍ ଭାରତୀୟ ବ୍ୟକ୍ତିପିଛା ବାର୍ଷିକ ଆୟଠାରୁ ଓଡ଼ିଶାର ବ୍ୟକ୍ତି ପିଛା ବାର୍ଷିକ ଆୟ ୬୪୨ ଟଙ୍କା କମ । ଏଥିରୁ ଦେଖାଯିବ ଯେ ଭାରତର ଅନେକ ରାଜ୍ୟର ଲୋକଙ୍କର ଅବସ୍ଥା ଆମଠାରୁ ଖୁବ୍ ଭଲ । ଏହାର ଅର୍ଥ ନୁହେଁ ଯେ ଭାରତରେ ଅନ୍ୟାନ୍ୟ ଦରିଦ୍ର ରାଜ୍ୟ ନାହାନ୍ତି । ଅଛନ୍ତି । ସେମାନଙ୍କ ଭିତରୁ କେତେକ ରାଜ୍ୟର ବ୍ୟକ୍ତିପିଛା ଆୟ ଓଡ଼ିଶାଠାରୁ ମଧ୍ୟ କମ । କିନ୍ତୁ ସେମାନଙ୍କ ସହିତ ଆମେ ନିଜକୁ ତୁଳନା କରିବା ଉଚିତ ନୁହେଁ । ଆମକୁ ଉନ୍ନତ ରାଜ୍ୟମାନଙ୍କ ସହିତ ପ୍ରତିଯୋଗିତା କରିବାକୁ ପଡ଼ିବ, ଅନୁନ୍ନତ ରାଜ୍ୟମାନଙ୍କ ସହିତ ନୁହେଁ । ଅନ୍ୟ ଗୋଟିଏ ମାପକାଠି ଦେଖାଯାଉ । ଭାରତରେ କେତେ ଲୋକ ଦାରିଦ୍ର୍ୟ ସୀମା ରେଖାର ନିମ୍ନରେ ଅଛନ୍ତି, ଓଡ଼ିଶାରେ କେତେ ଲୋକ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ଅଛନ୍ତି । ୧୯୮୩-୮୪ ମସିହା ହିସାବ ଅନୁସାରେ ଦେଖାଯାଉଛି ଯେ ଓଡ଼ିଶାରେ ୪୨.୮ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ଅଛନ୍ତି । ଏ ଦିଗରେ ମଧ୍ୟ ଭାରତର ହାରାହାରି ଅବସ୍ଥା ଆମଠାରୁ ଭଲ । ସେଠାରେ ସେହି ବର୍ଷ ଶତକଡା ୩୭.୪ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ରହିଛନ୍ତି । ଅବଶ୍ୟ ଗତ ପାଞ୍ଚ ଛ ବର୍ଷ ଭିତରେ ଏ ଦିଗରେ ଓଡ଼ିଶାରେ କିଛି ଉନ୍ନତି ହୋଇଛି । ୧୯୭୭-୭୮ ରେ ଓଡ଼ିଶାରେ ଶତକଡା ୬୬.୪୦ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ଥିଲେ । ତାହା ଏବେ କମି ୪୨.୮ କୁ ଆସିଛି । ପ୍ରଗତି ମନ୍ଦ ନୁହେଁ । କିନ୍ତୁ ଏଥିରୁ ଖୁସି ହେବାର କିଛି ନାହିଁ । ଅନେକ କାମ ବାକି ଅଛି ।

ଅର୍ଥନୈତିକ ପରିବର୍ତ୍ତନର ଅନ୍ୟ ଏକ ମାପକାଠି ହେଉଛି ଅର୍ଥନୈତିକ ସଂଗଠନ । ଗତ ୩୦/୪୦ ବର୍ଷ ଭିତରେ ଅନେକ ରାସ୍ତା ହୋଇଛି, ଶିକ୍ଷାର ଅନେକ ଉନ୍ନତି ହୋଇଛି, ବହୁତ ଶିଳ୍ପ ଓ ବ୍ୟବସାୟ ମୁଣ୍ଡ ଟେକି ଉଠିଛି, ଜଳସେଚନ ଓ ବିଦ୍ୟୁତ ଶକ୍ତିର ଉନ୍ନତି ହୋଇଛି, ଅନେକ ବ୍ୟାଙ୍କ ଓ ସମବାୟ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଛି– ଯାହାକୁ ସାଧାରଣତଃ ଆମେ ଆଧାରିକ ସଂଗଠନ କହୁ ଏବଂ ଯାହା ଅର୍ଥନୈତିକ ପ୍ରଗତିରେ ସାହାଯ୍ୟ କରେ– ସେ ସବୁରେ ଅନେକ ପରିବର୍ତ୍ତନ ହୋଇଛି । କିନ୍ତୁ ତା ସତ୍ତ୍ୱେ ବିଭିନ୍ନ ବିଭାଗରୁ ଯେଉଁ ଆୟ ସଂଗୃହୀତ ହେଉଛି, ତାହା ଅର୍ଥନୈତିକ ଦିଗ ପରିବର୍ତ୍ତନ କରିବାରେ ସାହାଯ୍ୟ କରି ପାରି ନାହିଁ । ସାଧାରଣତଃ ଅର୍ଥନୈତିକ ପ୍ରଗତି ହେଲେ କୃଷିରୁ କମ ଜାତୀୟ ଆୟ ଆଦାୟ ହୁଏ ଓ ଶିଳ୍ପ, ବ୍ୟବସାୟ, ବାଣିଜ୍ୟ ଓ ସୁକିରି ଚାକିରିରୁ ଅଧିକ ଆୟ ଆଦାୟ ହୁଏ । ଓଡ଼ିଶାରେ ଏବେ ସୁଦ୍ଧା କୃଷିରୁ ମୋଟ ରାଜ୍ୟ ଆୟର ଶତକଡା ୬୦ ଭାଗ ଆଦାୟ ହେଉଛି । ସାରା ଭାରତରେ ଏହା କମି ଶତକଡା ୩୭ ଭାଗକୁ ଆସିଛି । ଓଡ଼ିଶାରେ ଶିଳ୍ପରୁ ଆଦାୟ ହେଉଛି ମୋଟେ ଶତକଡା ୧୦.୩ ଭାଗ । ଭାରତରେ ଏହାର ଦୁଇଗୁଣଠାରୁ ସାମାନ୍ୟ କିଛି ଅଧିକ ଆଦାୟ ହେଉଛି । ଏହି ସବୁ ପ୍ରକାର ତୁଳନାତ୍ମକ ହିସାବ ଦେଇ ଭାରତର ଭିନ୍ନ ଭିନ୍ନ ରାଜ୍ୟ ସହିତ ଓଡ଼ିଶାକୁ ତୁଳନା କରି ହେବ । ଆମେ ମୋଟାମୋଟି ହାରାହାରି ହିସାବ ନେଇ ଭାରତର ସାମୁହିକ ପରିବର୍ତ୍ତନ ସହିତ ଓଡ଼ିଶାର ଏକ ତୁଳନାତ୍ମକ ଚିତ୍ରର ଉଲ୍ଲେଖ କରିଛୁ । ଏଥିରୁ ଦେଖିବାକୁ ହେବ ଯେ ଭାରତର ଅନ୍ୟାନ୍ୟ ରାଜ୍ୟ ସହିତ ତାଳ ଦେଇ ଅଗ୍ରଗତି କରିବାକୁ ହେଲେ ଆମକୁ ଅଧିକ କିଛି ଉଦ୍ୟମ କରିବାକୁ ପଡ଼ିବ । ସେ ଉଦ୍ୟମ କଣ ହେବା ଉଚିତ, ସେ ବିଷୟରେ ସାମାନ୍ୟ କେତେକ କଥା ନିମ୍ନରେ ଆଲୋଚନା କରୁଛୁ ।

ପ୍ରଥମେ କୃଷି କଥା ଦେଖାଯାଉ । ଓଡ଼ିଶା ପାଇଁ କୃଷି ଏକ ପ୍ରଧାନ ଜୀବିକା । ପୂର୍ବରୁ ଆମେ କହିଛୁ ଯେ କୃଷିରୁ ରାଜ୍ୟର ମୋଟ ଆୟର ଶତକଡା ୬୦ ଭାଗ ସଂଗୃହୀତ ହେଉଛି । ଓଡ଼ିଶାରେ ଯେତେ କାମିକା ଲୋକ ଅଛନ୍ତି, ତାହା ଭିତରୁ ୭୪.୭ ଭାଗ ଲୋକ କୃଷିରେ କାମ କରୁଛନ୍ତି । କିନ୍ତୁ ଦୁଃଖର କଥା ଯେ କୃଷିର ଉତ୍ପାଦିକା ଶକ୍ତିରେ ଏପର୍ଯ୍ୟନ୍ତ ଯଥେଷ୍ଟ ପରିବର୍ତ୍ତନ ହୋଇ ପାରି ନାହିଁ । କୃଷିର ଉତ୍ପାଦନ ଏ ପର୍ଯ୍ୟନ୍ତ ମୌସୁମୀ ପ୍ରବାହ ଉପରେ ନିର୍ଭର କରୁଛି । ଗତ ତିନିବର୍ଷ ଧରି ଓଡ଼ିଶାରେ ବର୍ଷାର ଅଭାବ ପଡ଼ିଛି ଯାହା ଫଳରେ ମୋଟ ଉତ୍ପାଦନ ବଢ଼ି ପାରୁ ନାହିଁ । ଉଦାହରଣ ସ୍ୱରୂପ ଧାନ ଆମର ପ୍ରଧାନ ଫସଲ । ୧୯୮୩-୮୪ ସାଲରେ ମୋଟ ୫୧.୨୦ ଲକ୍ଷ ମେଟ୍ରିକ ଟନ ଚାଉଳ ଉତ୍ପନ୍ନ ହୋଇଥିଲା ବୋଲି ହିସାବ ବାହାରିଛି । ସେ ବର୍ଷଟି ଫସଲ ପାଇଁ ଭଲ ଥିଲା । ୧୯୮୪-୮୫ ରେ ଏହା କମି ୪୧.୭୨ ମେଟ୍ରିକ ଟନ ହେଲା । ୧୯୮୫-୮୬ ରେ କିଛି ବୃଦ୍ଧି ପାଇଲା (୫୨.୨୬ ମେଟ୍ରିକ ଟନ) । କିନ୍ତୁ ପୁଣି ୧୯୮୬-୮୭ ରେ ଏହା କମି ୪୮.୩୪ ଲକ୍ଷ ମେଟ୍ରିକ ଟନ ହେଲା । ଏ ବର୍ଷ କେତେ ଫସଲ ହେବ, ତାହା କହିବା ସମ୍ଭବ ନୁହେଁ । ଏ ସବୁ ହିସାବ ଦେବାର ଉଦ୍ଦେଶ୍ୟ ହେଉଛି ଯେ ଧାନ ଚାଉଳ ଉତ୍ପାଦନରେ ଓଡ଼ିଶାରେ ଏ ପର୍ଯ୍ୟନ୍ତ ସ୍ଥିରତା ଆସି ପାରି ନାହିଁ । ଅନ୍ୟାନ୍ୟ ଫସଲରେ ଅବଶ୍ୟ କିଛି ଉନ୍ନତି ହୋଇଛି । କିନ୍ତୁ ବେଶୀ ନୁହେଁ । ଜମିର ଉତ୍ପାଦିକା ଶକ୍ତି ଯାହା ବଢ଼ିଛି, ତାହା ଯଥେଷ୍ଟ ନୁହେଁ । କୃଷିର ଉତ୍ପାଦିକା ଶକ୍ତି ବୃଦ୍ଧି ନ କଲେ ଓଡ଼ିଶାର ଆର୍ଥିକ ସ୍ଥିତି ମଜବୁତ ହୋଇ ପାରିବ ନାହିଁ । ପୁଣି ଓଡ଼ିଶାରେ ଯେତେ ଚାଷୀ ଅଛନ୍ତି, ତାହା ଭିତରୁ ପ୍ରାୟ ୭୫/୭୬ ଭାଗ କ୍ଷୁଦ୍ର ଓ ନାମକୁ ମାତ୍ର ଚାଷୀ । ସେମାନଙ୍କ ଆର୍ଥିକ ଅବସ୍ଥା ଭଲ ନୁହେଁ ।

କୃଷିର ଉନ୍ନତି ପାଇଁ ଅନେକ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ପଡ଼ିବ । ଆମେ ଏଠାରେ ଦୁଇ ତିନୋଟି କାର୍ଯ୍ୟକ୍ରମର ସୂଚନା ଦେଉଛୁ । ପ୍ରଥମ ହେଉଛି ଜଳସେଚନ । ଓଡ଼ିଶାରେ ଚାଷ ଜମିର ପ୍ରାୟ ୨୭/୨୮ ଭାଗ ଅଞ୍ଚଳରେ ଜଳସେଚନର ସୁବିଧା ଅଛି । ଭାରତରେ ହାରାହାରି ୪୭/୪୮ ଭାଗ । ଓଡ଼ିଶାରେ ପ୍ରତ୍ୟେକ ବର୍ଷ ଯୋଜନା ଖର୍ଚ୍ଚର ୨୦/୨୫ ଭାଗ ପୁଞ୍ଜି ଜଳସେଚନରେ ବିନିଯୋଗ କରାଯାଉଛି । ହୁଏତ ସପ୍ତମ ଯୋଜନା ଶେଷବେଳକୁ ଆମର ୩୦ ଭାଗ ଚାଷଜମିରେ ଜଳସେଚନର ସୁବିଧା ହୋଇ ପାରିବ । ଅଧିକ ଜଳସେଚନ ଅବଶ୍ୟ ଦରକାର । କାରଣ ପଞ୍ଜାବରେ ପ୍ରାୟ ୮୦ ଭାଗ ଓ ହରିଆନାରେ ୫୦ ଭାଗ ଅଞ୍ଚଳରେ ଜଳସେଚନର ସୁବିଧା ଅଛି । କିନ୍ତୁ ପ୍ରଶ୍ନ ହେଉଛି ଯେତିକି ଜଳସେଚନର ସୁବିଧା ଅଛି, ତାହା ମଧ୍ୟ ଉପଯୁକ୍ତ ଭାବରେ ବ୍ୟବହୃତ ହେଉ ନାହିଁ । ଏକ ହେକ୍ଟର ଜଳସେଚିତ ଜମିରୁ ପଞ୍ଜାବ ଓ ହରିଆନା ଚାଷୀମାନେ ଯେତେ ଫସଲ ଆଦାୟ କରୁଛନ୍ତି, ଆମେ କରି ପାରୁ ନାହୁଁ । ଚାଇନା, ଜାପାନ ପ୍ରଭୃତି ରାଜ୍ୟରେ ଏକ ହେକ୍ଟର ଜଳସେଚିତ ଅଞ୍ଚଳରୁ ଯେତେ ଫସଲ ଆଦାୟ କରୁଛନ୍ତି, ଆମେ ତା'ର ପ୍ରାୟ ଏକ ତୃତୀୟାଂଶ ଆଦାୟ କରୁଛୁ । ଜଳର ଉପଯୁକ୍ତ ବିନିଯୋଗ ପାଇଁ କ୍ଷେତ୍ରପ୍ରଣାଳୀ ( field channels ) ର ଆବଶ୍ୟକତା ଚାଷୀମାନେ ଏ ପର୍ଯ୍ୟନ୍ତ ଉପଲବ୍ଧି କରି ପାରି ନାହାନ୍ତି । କ୍ଷେତ୍ରପ୍ରଣାଳୀର ଉନ୍ନତି ହୋଇ ପାରିଲେ କମ ଜଳରେ ଅନେକ ଫସଲ ହୋଇ ପାରିବ । ଏହାବ୍ୟତୀତ କ୍ରପିଙ୍ଗ ପାଟର୍ନ cropping pattern ରେ ମଧ୍ୟ ପରିବର୍ତ୍ତନ ହେବା କଥା । ଧାନ ଉତ୍ପାଦନରେ ଅନେକ ଜଳ ଦରକାର । ପୁଣି ଡିପ ଜମିରେ ମଧ୍ୟ ଧାନ ଫସଲ କେବେ ଭଲ ହୋଇ ପାରିବ ନାହିଁ । ତେଣୁ ଧାନ ପରିବର୍ତ୍ତେ ଅନ୍ୟାନ୍ୟ ଅର୍ଥକରୀ ଫସଲ ଯଦି ଅଧିକ ପରିମାଣରେ ଉତ୍ପାଦନ କରାଯାଇ ପାରିବ, ତାହାହେଲେ ଚାଷୀମାନେ ଫସଲରୁ ଅଧିକ ଆୟ ସଂଗ୍ରହ କରି ପାରିବେ । ସେ ଦିଗରେ ଅବଶ୍ୟ କିଛି ଉଦ୍ୟମ ହୋଇଛି । କିନ୍ତୁ ତାହା ଯଥେଷ୍ଟ ନୁହେଁ ।

କୃଷିର ଉନ୍ନତି ପାଇଁ ଅନ୍ୟ ଏକ ଉପାଦାନ ହେଉଛି ଅଧିକ ଅମଳକ୍ଷମ ବିହନ, ରାସାୟନିକ ସାର, ପୋକମରା ଔଷଧ ଇତ୍ୟାଦି । ଅଧିକ ଜଳସେଚନ ହେଲେ ଅଧିକ ଉତ୍ପାଦନକ୍ଷମ ବିହନର ପ୍ରସାର ସମ୍ଭବ ହୋଇ ପାରିବ । ଅଧିକ ଉତ୍ପାଦନକ୍ଷମ ବିହନ ପାଇଁ ବେଶୀ ରାସାୟନିକ ସାର ଦରକାର, ବେଶୀ ପୋକମରା ଔଷଧ ଦରକାର । ଏବେ ଓଡ଼ିଶାରେ ରାସାୟନିକ ସାରର ପ୍ରୟୋଗ ବହୁତ କମ– ହେକ୍ଟର ପିଛା ମୋଟେ ୧୫/୧୬ କେ.ଜି. । ଭାରତରେ ହାରାହାରି ହେକ୍ଟର ପିଛା ୪୬/୪୭ କେ.ଜି । ପଞ୍ଜାବରେ ହେକ୍ଟର ପିଛା ପ୍ରାୟ ୧୫୦ କେ.ଜି । ଏ କଥା ସମସ୍ତେ ଜାଣନ୍ତି ରାସାୟନିକ ସାର ନ ଦେଲେ ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି ହୁଏ ନାହିଁ । ତେଣୁ ଅଧିକ ରାସାୟନିକ ସାର ପ୍ରୟୋଗ କରିବା ପାଇଁ ଉଦ୍ୟମ କରିବାକୁ ପଡ଼ିବ । ସେହିପରି ଅନ୍ୟାନ୍ୟ ଉପାଦାନ ମଧ୍ୟ । ତେବେ ପ୍ରଧାନ ପ୍ରଶ୍ନ ହେଉଛି ଏ ଉପାଦାନ ଗୁଡ଼ିକ କିପରି ସହଜରେ ଚାଷୀମାନେ ପାଇ ପାରିବେ । ଚାଷୀମାନଙ୍କର ବୁଦ୍ଧି ଅଛି, ଅଭିଜ୍ଞତା ଅଛି । କିନ୍ତୁ ଯେତେବେଳେ ଯେଉଁ ଇନ୍‌ପୁଟ୍ ( input ) ଖୋଜୁଛନ୍ତି, ସେହି ଇନ୍‌ପୁଟ୍ ପାଉ ନାହାନ୍ତି । ଇନପୁଟର ବଣ୍ଟନ ପ୍ରକ୍ରିୟାରେ ଆମେ ଯଥେଷ୍ଟ ଉନ୍ନତି କରି ପାରି ନାହୁଁ । ସେହିପରି ଚାଷୀମାନେ ଠିକ ସମୟରେ କ୍ରେଡ଼ିଟ ପାଉ ନାହାନ୍ତି କି ନିଜ ଉତ୍ପାଦିତ ଦ୍ରବ୍ୟ ଉପଯୁକ୍ତ ଦରରେ ବିକ୍ରୟ କରିବାକୁ ସୁବିଧା ପାଉ ନାହାନ୍ତି । ଏ ସବୁ କଠିନ କାମ । କିନ୍ତୁ ଏହାକୁ କରିବାକୁ ପଡ଼ିବ । ତା ନ ହେଲେ ଚାଷ ବା ଚାଷୀର ଉନ୍ନତି ହୋଇ ପାରିବ ନାହିଁ ।

ଦ୍ୱିତୀୟ ହେଉଛି ଶିଳ୍ପର ଅଭିବୃଦ୍ଧି । ଗତ କେତେବର୍ଷରେ ଶିଳ୍ପର ଉନ୍ନତି ପାଇଁ ଅନେକ ଉଦ୍ୟମ କରାଯାଇଛି । ବିଶେଷକରି ଅନେକ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠିତ ହୋଇଛି । ମୋଟ କ୍ଷୁଦ୍ରଶିଳ୍ପର ସଂଖ୍ୟା ୨୯ ହଜାରରୁ ଅଧିକ । ତଥାପି ଶିଳ୍ପ କ୍ଷେତ୍ରରେ ଆମେ ଏ ପର୍ଯ୍ୟନ୍ତ ଆଗୁଆ ହୋଇ ପାରି ନାହୁଁ । ସାରା ଭାରତରେ ଯେତେ ଶିଳ୍ପ ଉତ୍ପାଦିତ ଦ୍ରବ୍ୟ ଉତ୍ପାଦିତ ହେଉଛି, ଓଡ଼ିଶାରେ ତା'ର ମାତ୍ର ଶତକଡା ୨ ଭାଗ ବା ତା'ଠାରୁ ସାମାନ୍ୟ କିଛି କମ । ଏ କଥା ସତ ଯେ ଶିଳ୍ପର ପ୍ରସାର ପାଇଁ ରାଜ୍ୟରେ ଏକ ହାୱା ସୃଷ୍ଟି ହୋଇଛି । ଓଡ଼ିଶାରେ କିଛି ଶିଳ୍ପ ହୋଇ ପାରିବ ବୋଲି ପୂର୍ବରୁ କେହି ବିଶ୍ୱାସ କରୁ ନଥିଲେ । ଏବେ ବାହାରର ଲୋକ ଆସି ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା କରିବାକୁ ଉଦ୍ୟମ କରୁଛନ୍ତି । ଓଡ଼ିଶାର କିଛି ଉଦ୍ୟମୀ ଲୋକ ମଧ୍ୟ ସେ ଦିଗରେ ଅଗ୍ରସର ହେବାକୁ

ଲାଗିଛନ୍ତି । ବୃହତ ଶିଳ୍ପ ପ୍ରତିଷ୍ଠା କରିବା ଯେତେ ସହଜ, କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରିବା ସେତେ ସହଜ ନୁହେଁ । ପ୍ରତିଷ୍ଠିତ ଶିଳ୍ପପତିମାନେ ବୃହତ ଶିଳ୍ପ ପ୍ରତିଷ୍ଠା କରି ବେଶୀ ଲାଭ ଉଠାଇବାକୁ ଚାହୁଁଛନ୍ତି । ସେମାନଙ୍କର କ୍ଷୁଦ୍ରଶିଳ୍ପ ଆଡ଼କୁ ମନ ଯାଉ ନାହିଁ । ଯେଉଁମାନେ ଓଡ଼ିଶାରେ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରୁଛନ୍ତି,ସେମାନଙ୍କର ଯଥେଷ୍ଟ ଅଭିଜ୍ଞତା ନାହିଁ । ତେଣୁ ଓଡ଼ିଶାରେ ଯେତେ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠିତ ହୋଇଛି, ତାହା ଭିତରୁ ଶତକଡା ୯/୧୦ ଭାଗ ରୁଗ୍ଣ ବୋଲି କୁହାଯାଉଛି । ଏହି ସବୁ ଶିଳ୍ପ ପାଇଁ ଯଥେଷ୍ଟ ଚଳନ୍ତି ପୁଞ୍ଜି ମିଳୁ ନାହିଁ, କଞ୍ଚାମାଲର ଅଭାବ ପଡୁଛି । ବଜାର ନାହିଁ । ତେଣୁ ସରକାରଙ୍କ ପ୍ରୋତ୍ସାହନ ସତ୍ତ୍ୱେ କ୍ଷୁଦ୍ର ଶିଳ୍ପଗୁଡ଼ିକ ଯେତେ ପରିମାଣରେ ଉଠିବାର କଥା, ସେତେ ପରିମାଣରେ ଉଠିପାରୁ ନାହିଁ । ଗାଁ ଗହଳର ଆର୍ଥିକ ଉନ୍ନତି ପାଇଁ କେବଳ କୃଷି ଉପରେ ନିର୍ଭର କଲେ ଚଳିବ ନାହିଁ । କୃଷିରେ ବହୁତ ଲୋକ ରହିଲେଣି । ଜଣପିଛା ଜମିର ପରିମାଣ ଆସ୍ତେ ଆସ୍ତେ କମୁଛି । ତେଣୁ ଗାଁ ଗହଳରେ କିଛି କୃଷି ସମ୍ବନ୍ଧୀୟ ଶିଳ୍ପ ପ୍ରସାର କରି ଅଧିକ ଲୋକଙ୍କୁ ନିଯୁକ୍ତି ଦେବାକୁ ପଡ଼ିବ । ପଞ୍ଜାବରେ ଏହି କ୍ଷୁଦ୍ର ଶିଳ୍ପ କରିଆରେ କେବଳ କୃଷିର ଉନ୍ନତି ହୋଇ ନାହିଁ, ଲୋକଙ୍କର ଆର୍ଥିକ ଅବସ୍ଥାର ମଧ୍ୟ ଉନ୍ନତି ହୋଇଛି । କୃଷି, ପଶୁପାଳନ, ମତ୍ସ୍ୟ ଚାଷ, ବନୀକରଣ ଓ କ୍ଷୁଦ୍ର ଶିଳ୍ପର ପ୍ରସାର ସାହାଯ୍ୟରେ ମଫସଲର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ କରିବାକୁ ହେବ ।

ଏହି ସବୁ କାମ କରିବା ପାଇଁ ଆଧାରିକ ସଂରଚନାର ଅନେକ ଉନ୍ନତି ଦରକାର । ଅନ୍ୟ ରାଜ୍ୟ ତୁଳନାରେ ଲୋକଙ୍କ ପିଛା ରାସ୍ତା, ଯାନବାହାନ, ବ୍ୟାଙ୍କ୍ ବ୍ୟବସାୟ, ବିଦ୍ୟୁତ୍‌ଶକ୍ତି ଓଡ଼ିଶାରେ ଅନେକ କମ । ଏହି ବିଦ୍ୟୁତଶକ୍ତି କଥା ଦେଖାଯାଉ । ଓଡ଼ିଶାରେ ପ୍ରତ୍ୟେକ ବର୍ଷ ବିଦ୍ୟୁତଶକ୍ତିର ଚାହିଦା ଶତକଡା ପ୍ରାୟ ୨୦ ଭାଗ ବଢୁଛି– ସାରା ଭାରତରେ ଚାହିଦା ବଢ଼ିର ପରିମାଣ ଶତକଡା ମୋଟେ ୧୦/୧୨ ଭାଗ । ତାହାର ଅର୍ଥ ଅର୍ଥନୈତିକ ପ୍ରଗତି ପାଇଁ ଏଠାରେ ବେଶୀ ଉଦ୍ୟମ ହେଉଛି । କିନ୍ତୁ ବିଦ୍ୟୁତଶକ୍ତିର ବହୁତ ଅଭାବ । ଷଷ୍ଠ ଯୋଜନା ଶେଷବେଳକୁ ଓଡ଼ିଶାରେ ବିଦ୍ୟୁତଶକ୍ତିର ଚାହିଦା ପ୍ରାୟ ୭୧୮ ମେଗାୱାଟ ଥିଲା । କିନ୍ତୁ ମୋଟେ ୪୯୬ ମେଗାୱାଟର ବିଦ୍ୟୁତଶକ୍ତି ମିଳୁଥିଲା । ଅନେକ ହିସାବ କରୁଛନ୍ତି ଯେ ଏହି ଶତାବ୍ଦୀର ଶେଷବେଳକୁ ଓଡ଼ିଶାରେ ବିଦ୍ୟୁତଶକ୍ତିର ଚାହିଦା ପ୍ରାୟ ୨ ହଜାର ମେଗାୱାଟ ହେବ । ଯଦି ଏହା ଭିତରେ ଆମେ ତାଳଚେରର ସୁପର ଥର୍ମାଲ ଓ ଇବ ଉପତ୍ୟକାରୁ ବିଦ୍ୟୁତ ଉତ୍ପାଦନ କାର୍ଯ୍ୟକାରୀ କରି ପାରିବା, ତାହାହେଲେ ହୁଏତ ଚାହିଦା ପୂରଣ ହୋଇ ପାରିବ । ନ ହେଲେ ଆମର ପ୍ରଗତିରେ ଅନେକ ବାଧା ସୃଷ୍ଟି ହେବ । କୃଷି, ଶିଳ୍ପ, ବ୍ୟବସାୟ, ବାଣିଜ୍ୟ– ସବୁର ଉନ୍ନତି ପାଇଁ ବିଦ୍ୟୁତଶକ୍ତି ଦରକାର । ବିଦ୍ୟୁତଶକ୍ତି ପାଇଁ ଯେଉଁ ଯନ୍ତ୍ରପାତି ଅଛି, ତାହା ଉପଯୁକ୍ତ ଭାବରେ କାମ କରୁ ନାହିଁ । ଅନେକ ଯନ୍ତ୍ରପାତି ପୁରୁଣା ହେଲାଣି । ସେ ଗୁଡ଼ିକର ଆଧୁନିକୀକରଣ ଦରକାର । ପୁଣି ସେ ସବୁର ପରିଚାଳନାରେ ମଧ୍ୟ ଅନେକ ଗଲ୍‌ତି ଅଛି । ବଣ୍ଟନ ପ୍ରକ୍ରିୟାରେ ମଧ୍ୟ ଦୋଷ ଅଛି । ଯାହା ଅଛି, ତା'ର ଦକ୍ଷତା ବୃଦ୍ଧି କରିବାକୁ ପଡ଼ିବ ଏବଂ ନୂତନ ଶକ୍ତି ସୃଷ୍ଟି କରିବାକୁ ପଡ଼ିବ । ଆମେ କେବଳ ବିଦ୍ୟୁତଶକ୍ତି କଥା ଉଲ୍ଲେଖ କରିଛୁ । ଏହା ବ୍ୟତୀତ ଆଧାରିକ ସଂରଚନାର ଅନେକ ବିଭାଗ ଅଛି । ମୋଟ ଉପରେ ଆଧାରିକ ସଂରଚନାର ଉନ୍ନତି ନ ହେଲେ ଅର୍ଥନୈତିକ ପ୍ରଗତି ତ୍ୱରାନ୍ୱିତ ହୋଇ ପାରିବ ନାହିଁ । ଆମକୁ ଅନେକ ପଥ ଅତିକ୍ରମ କରିବାକୁ ପଡ଼ିବ । ବିଶ୍ରାମର ସମୟ ନାହିଁ । ଓଡ଼ିଶାବାସୀମାନେ ଯଦି ଏହି ପଥ ଅତିକ୍ରମ କରିବା ପାଇଁ ଦୃଢ଼ ସଂକଳ୍ପ ହେବେ, ତାହାହେଲେ ହୁଏତ ଓଡ଼ିଶାର ଭାଗ୍ୟ ବଦଳିଯିବ । ଓଡ଼ିଶା ଅର୍ଥନୀତି କ୍ଷେତ୍ରରେ ସାରା ଭାରତରେ ନିଜର ଆସନ ଅଧିକାର କରି ପାରିବ ।



ମାଇଲଖୁଣ୍ଟ

# ଏ ବର୍ଷର କେନ୍ଦ୍ର ବଜେଟ୍

ସ୍ମିତା ମିଶ୍ର

୧୯୮୮-୮୯ ଆର୍ଥିକବର୍ଷ ନିମନ୍ତେ ଭାରତ ସରକାରଙ୍କ ବଜେଟ୍ ଫେବୃୟାରୀ ୨୯ ଦିନ ପାର୍ଲିଆମେଣ୍ଟରେ ଅର୍ଥମନ୍ତ୍ରୀ ଶ୍ରୀନାରାୟଣ ଦତ୍ତ ତିୱାରୀ ଉପସ୍ଥାପନା କରିଛନ୍ତି । ୧୯୮୮ ଗୋଟିଏ ଅଧିବର୍ଷ ଏବଂ ଏହି ଅଧିବର୍ଷର ବଜେଟର ପର୍ଯ୍ୟାଲୋଚନା ଏକ ସ୍ୱାତନ୍ତ୍ର୍ୟ ଦାବୀ କରେ ।

### ପୃଷ୍ଠଭୂମି

ଏହି ବଜେଟ୍‌ର ଆଲୋଚନା ଆରମ୍ଭ କରିବା ଆଗରୁ ବିଶ୍ୱର ଅର୍ଥନୈତିକ ଅବସ୍ଥାର ଏକ ସାମଗ୍ରିକ ଆଲୋଚନା ସମୀଚିନ ହେବ । ପୃଥିବୀର ଧନ ଏବଂ ଅନ୍ୟ ପୁଞ୍ଜି କ୍ରମେ କ୍ରମାଗତ ଭାବରେ ଏକ ସଂଖ୍ୟାଲଘୁ ଗୋଷ୍ଠୀ ହାତମୁଠା ଭିତରକୁ ଖସି ଆସୁଅଛି ଏବଂ ଏହି ସଂଖ୍ୟାଲଘୁ ଗୋଷ୍ଠୀ ଆସ୍ତେ ଆସ୍ତେ ସଙ୍କୁଚିତ ହୋଇ ଯାଉଛି । ଏହାର ଫଳରେ ବିଶ୍ୱ ଅର୍ଥନୀତିର ଭାରସାମ୍ୟରେ ଏକ ବିକୃତ ଅବସ୍ଥା ସୃଷ୍ଟି ହୋଇ ସମଗ୍ର ପୃଥିବୀର ଅର୍ଥ ବଜାରରେ ଏକ ମାନ୍ଦା ଅବସ୍ଥା ଜାତ ହୋଇଛି । ପୃଥିବୀର ଅର୍ଥନୈତିକ ଅବସ୍ଥାରେ ଏକ ଆଶୁ ବିପ୍ଳବ ହେବାର ଆଶା ଓ ଆଶଙ୍କା ଏବେ ସବୁ ଅର୍ଥନୀତିଜ୍ଞଙ୍କ ମନ ଉହାଡ଼ରେ କାର୍ଯ୍ୟ କରୁଛି । ଏହି ବିପ୍ଳବ ଫଳରେ ଅର୍ଥ ଓ ପୁଞ୍ଜିର ନିୟନ୍ତ୍ରଣ ଆଉଥରେ ଗାଁ ଗହଳିକୁ ଏବଂ ଅଫାଇମାନଙ୍କ ହାତକୁ ଭିୟର୍ ପରିମାଣରେ ଖସିଯିବାକୁ ବାଧ୍ୟ ହେବ । ଏହି ବିପ୍ଳବର କେନ୍ଦ୍ରବିନ୍ଦୁ ଯୁକ୍ତରାଷ୍ଟ୍ର ଆମେରିକା, ଜାପାନ ଏବଂ ପଶ୍ଚିମ ଜର୍ମାନୀ ପରି ଶକ୍ତିଶାଳୀ ଓ ଧନବାନ୍ ରାଷ୍ଟ୍ର ହେଲେ ମଧ୍ୟ, ଏହା ଯେ ତୃତୀୟ ବିଶ୍ୱର ଅନୁନ୍ନତ ଓ ଉନ୍ନତକାମୀ ରାଷ୍ଟ୍ରମାନଙ୍କୁ ସ୍ପର୍ଶ କରିବ— ଏଥିରେ କୌଣସି ସନ୍ଦେହ ନାହିଁ । ସେହି ପରିବର୍ତ୍ତନକୁ ଦୃଷ୍ଟିରେ ରଖି ଭାରତୀୟ ବଜେଟ୍ ପ୍ରସ୍ତୁତ ହେଲା ପରି ଜଣା ପଡୁଛି । କେବଳ କୃଷି, ସମବାୟ ଓ ଜଳସମ୍ପଦ ପାଇଁ ବ୍ୟୟ ବରାଦ ଗତବର୍ଷ ତୁଳନାରେ ଶତକଡ଼ା ୪୦ ଭାଗ ବୃଦ୍ଧି ପାଇଁ ୧୯୮୮-୮୯ର ବଜେଟ୍‌ର ଦିଗ୍‌ଦର୍ଶନ ନିଶ୍ଚିତ ଭାବରେ ଗ୍ରାମ୍ୟାଭିମୁଖୀ ହୋଇଯାଇଛି ଏବଂ ଏହା ସ୍ୱାଗତଯୋଗ୍ୟ ।

ବିଗତ ତିନିଗୋଟି ବର୍ଷ କ୍ରମାନ୍ୱୟରେ ଖରାପ ମୌସୁମୀ ପ୍ରବାହ ଭିତରେ ଶେଷ ହୋଇଛି । ସେଥିରୁ ଗତ ବର୍ଷ ଶତାବ୍ଦୀର ସବୁଠୁ କମ୍ ବର୍ଷାପାତ ହୋଇଥିବା ବର୍ଷମାନଙ୍କ ମଧ୍ୟରେ ଅନ୍ୟତମ ଏବଂ ଏହି ଅନାବୃଷ୍ଟି ଜନିତ ମରୁଡ଼ିର ପ୍ରଭାବ ଭାରତୀୟ ଅର୍ଥନୀତି ଉପରେ ନିଶ୍ଚିତ ଭାବରେ ପଡ଼ିଛି । ଭାରତର ଅଧିକାଂଶ ପ୍ରାନ୍ତ ଅନାବୃଷ୍ଟିର କବଳରେ ପଡ଼ିଥିବାବେଳେ ଆସାମ, ପଶ୍ଚିମ ବଙ୍ଗଳା ଏବଂ ବିହାର ଅତିବୃଷ୍ଟି ଜନିତ ବନ୍ୟାର ଶିକାର ହୋଇଥିଲା । ପ୍ରଥମ ତିନିବର୍ଷର କ୍ରମାଗତ ଅନାବୃଷ୍ଟି ଜନିତ ଦୁର୍ବଳ ହୋଇପଡ଼ିଥିବା ଅର୍ଥନୀତି ଏହି ୧୯୮୭-୮୮ର ପ୍ରଳୟଙ୍କରୀ ଅନାବୃଷ୍ଟି ଯୋଗୁଁ ଅତ୍ୟଧିକ ଦୁର୍ବଳ ହୋଇଯାଇଥିଲା । ସେହି ଦୃଷ୍ଟିରୁ ୧୯୮୮-୮୯ ବଜେଟରେ କୃଷି ଏବଂ ସମବାୟ ଓ ଜଳ ସମ୍ପଦ ଉପରେ ବିଶେଷ ଧ୍ୟାନ ଦେବା ଏକାନ୍ତ ଆବଶ୍ୟକ ଥିଲା ।

ତଥାପି ଏହି କଠିନ ଗ୍ରାସ ଓ କ୍ଳେଶ ଭିତରେ ଭାରତୀୟ ଅର୍ଥନୀତି କେବଳ ଦୁଇଟି କାରଣଯୋଗୁଁ ଆଶ୍ଚର୍ଯ୍ୟଜନକ ଭାବେ ଆତ୍ମରକ୍ଷା କରି ପାରିଛି । ପ୍ରଥମ କାରଣ ହେଲା ଗତ କେତେ ବର୍ଷର ଅନୁସୃତ ଅର୍ଥନୀତି ଯୋଗୁଁ ସାମୟିକ ଦୁର୍ଘଟଣାଗୁଡ଼ିକୁ ସହି ପାରିବା କ୍ଷମତା ଭାରତୀୟ ଅର୍ଥନୀତିର ଏକ ଧର୍ମ ହୋଇଯାଇଛି । ଦ୍ୱିତୀୟ କାରଣ ହେଲା, ସରକାର ପ୍ରଥମେ ଏହି ଦୁର୍ବିପାକ ଯୋଗୁଁ ବିବ୍ରତ ହୋଇ ଯାଇଥିଲେ ମଧ୍ୟ, ଅନାବୃଷ୍ଟି ଓ ମରୁଡ଼ିର ଆହ୍ୱାନକୁ ଠିକଣା ସମୟରେ ଜବାବ ଦେବାକୁ ଭୁଲି ଯାଇନଥିଲେ ଏବଂ ଅନାବୃଷ୍ଟିର ସାମାଜିକ ତଥା ଅର୍ଥନୈତିକ ମୂଲ୍ୟକୁ ବିହିତ ଭାବରେ ସଂଯମ ସୀମିତ କରିବାକୁ ସାମଗ୍ରିକ ଚେଷ୍ଟା କରିବାରେ ସଫଳ ହୋଇ ପାରିଥିଲେ ।

୧୯୮୭ ଜୁଲାଇ ୧ ତାରିଖ ଦିନ ଭାରତ ସରକାରଙ୍କ ନିକଟରେ ୨୩୦ ଲକ୍ଷ ଟନ୍ ଖାଦ୍ୟଶସ୍ୟ ମହଜୁଦ୍ ଥିଲା ଏବଂ ଏହି ଖାଦ୍ୟ ସମଗ୍ର ଦେଶକୁ ବିଶେଷତଃ ଅନାବୃଷ୍ଟି ପ୍ରପୀଡ଼ିତ ମରୁଡ଼ି ଅଞ୍ଚଳରେ ଯଥେଷ୍ଟ ଖାଦ୍ୟ ଯୋଗାଇବାକୁ ସମର୍ଥ ଥିଲା । ତାହା ଛଡ଼ା ଅନାବୃଷ୍ଟି ଜନିତ ମରୁଡ଼ି ସହ ସଂଗ୍ରାମ କରିବାକୁ ଭାରତ ସରକାର ନୀତିଗତ ଭାବେ କେତେକ ବିଶିଷ୍ଟ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ, ଯଥା, (୧) ସାହାଯ୍ୟ ତଥା କର୍ମଯୋଗାଣ କାର୍ଯ୍ୟକ୍ରମର ସଂପ୍ରସାରଣ, (୨) ସାଧାରଣ ଲୋକଙ୍କୁ ଖାଦ୍ୟ ଯୋଗାଇବା ନିମନ୍ତେ ଥିବା ବ୍ୟବସ୍ଥାର ସୁଦୃଢ଼ୀକରଣ, (୩) ପାନୀୟ ଜଳ ଯୋଗାଇ ଦେବାକୁ ସ୍ୱତନ୍ତ୍ର ବ୍ୟବସ୍ଥା, (୪) ପଶୁମାନଙ୍କର ଖାଦ୍ୟ ଯୋଗାଇଦେବାକୁ ସ୍ୱତନ୍ତ୍ର ବ୍ୟବସ୍ଥା, (୫) ତୁରନ୍ତ ଜଳସେଚନ ନିମନ୍ତେ ଗୋଲକସେଚନ ପାଇଁ ସ୍ୱତନ୍ତ୍ର ପଦକ୍ଷେପ, (୬) ଖରିଫ ଋତୁରେ ବିକଳ୍ପ ଶସ୍ୟ ଲଗାଇବା ଏବଂ ରବିଋତୁ ହେବାକୁ ଥିବା ଶସ୍ୟ କ୍ଷେତ୍ରର

ପରିବର୍ଦ୍ଧନ ଓ ପୁଷ୍ଟିକରଣ ନିମନ୍ତେ ସ୍ୱତନ୍ତ୍ର ଯୋଜନା, (୭) ଗୃହପାଳିତ ପଶୁମାନଙ୍କର ରକ୍ଷଣାବେକ୍ଷଣ ନିମନ୍ତେ ସ୍ୱତନ୍ତ୍ର ବ୍ୟବସ୍ଥା ଏବଂ (୮) ଅତ୍ୟାବଶ୍ୟକୀୟ ଡ଼ାଲି ଏବଂ ତେଲଜାତୀୟ ଖାଦ୍ୟର ବିଦେଶରୁ ଆମଦାନୀ ନିମନ୍ତେ ବ୍ୟବସ୍ଥା ।

ଏହି ବିଭିନ୍ନ ପଦକ୍ଷେପ ନେବା ହେତୁ ଅର୍ଥନୀତିର ସୂଚକଗୁଡ଼ିକ (ଇକୋନୋମିକ୍ ଇନ୍‌ଡିକେଟରସ୍) ବିଗତ ଅନାବୃଷ୍ଟିର ମରୁଡ଼ି ଜନିତ ପୂର୍ବ ବର୍ଷମାନଙ୍କ ଅପେକ୍ଷା ଉନ୍ନତ ହୋଇ ପାରିଛି । ୧୯୮୭-୮୮ରେ କୃଷି ଉତ୍ପାଦନ ହ୍ରାସ ପାଇଥିଲେ ମଧ୍ୟ ସାମୁହିକ ଜାତୀୟ ଉତ୍ପାଦନର (ଜିଏନ୍‌ପି) ବୃଦ୍ଧି ଶତକଡା ୧ ରୁ ୨ ଭିତରେ ହେବ । ଅଥଚ ୧୯୭୮-୮୦ରେ ଏହା ଶତକଡା ୪.୭ ଭାଗ କମି ଯାଇଥିଲା । ଏପ୍ରିଲ ୧୯୮୭ ରୁ ନଭେମ୍ବର ୧୯୮୭ ଭିତରେ ୬ ମାସରେ ଶିଳ୍ପ ଉତ୍ପାଦନ ଶତକଡା ୧୦.୨ ଭାଗ ବୃଦ୍ଧି ପାଇଥିଲା, ଅଥଚ '୧୯୭୯-୮୦ରେ ତାହା ଶତକଡା ୧.୨ ଭାଗ କମି ଯାଇଥିଲା । ମୋଟା ବେପାର ମୂଲ୍ୟ ସୂଚକ (ହୋଲ୍‌ସେଲ୍ ପ୍ରାଇସ୍ ଇନ୍‌ଡେକସ୍) ଭିତ୍ତିରେ ହିସାବ କରାଗଲେ, ଏହି ଆର୍ଥିକବର୍ଷର ମୁଦ୍ରାସ୍ଫୀତି ଫେବ୍ରୁୟାରୀ ୧୯୮୮ରେ ଶତକଡା ୯.୮ ଭାଗ ହୋଇଛି ଏବଂ ଏହି ହାର ଅର୍ଥନୈତିକ କ୍ଷେତ୍ରରେ ଗ୍ରହଣୀୟ ଅଟେ । ଜିନିଷ ପତ୍ରର ଦରଦାମ ସ୍ଥିର ରଖିବାକୁ ଅବ୍ୟାହତ ଚେଷ୍ଟା ଓ ଅହରହ ଉଦ୍ୟମ କରିବାକୁ ସବୁରାଜ୍ୟର ଜିଲ୍ଲାସ୍ତରରେ ନିୟନ୍ତ୍ରଣ କକ୍ଷ ଖୋଲା ଯାଇଅଛି ।

ଶିଳ୍ପ ଉତ୍ପାଦନ ୧୯୮୪-୮୫ ବର୍ଷଠାରୁ କ୍ରମାଗତ ଭାବରେ ଚତୁର୍ଥ ବର୍ଷପାଇଁ ଶତକଡା ୮ ଭାଗ ବୃଦ୍ଧି ପାଇଅଛି । ଅର୍ଥନୈତିକ ମୂଳପଗନ (ଇକୋନୋମିକ୍ ଇନଫ୍ରାଷ୍ଟ୍ରକ୍‌ଚର) ଗୁଡ଼ିକ ମଧ୍ୟ ଏହି ବର୍ଷ ଆଶାଜନକ । ଅନାବୃଷ୍ଟି ଯୋଗୁ ଜଳବିଦ୍ୟୁତ୍ କେନ୍ଦ୍ରରୁ କମ୍ ବିଦ୍ୟୁତ ଜାତ ହୋଇଥିଲେ ମଧ୍ୟ ତାପଜ ବିଦ୍ୟୁତ୍ କେନ୍ଦ୍ରମାନଙ୍କର କର୍ମଦକ୍ଷତା ଓ ଉତ୍ପାଦିକାର ବୃଦ୍ଧି ଘଟିଥିବାରୁ ଦେଶରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ଏହି ବର୍ଷର ପ୍ରଥମ ନଅ ମାସରେ ଶତକଡା ୭.୬ ଭାଗ ବୃଦ୍ଧି ହୋଇଛି । କୋଇଲା ଉତ୍ପାଦନ ମଧ୍ୟ ଶତକଡା ୧୦.୨ ଭାଗ ବୃଦ୍ଧି ପାଇଛି । ରେଳ ଚଳାଚଳ କ୍ଷେତ୍ରରେ ମଧ୍ୟ ଉତ୍ପାଦିକା ଶକ୍ତିର ବୃଦ୍ଧି ସନ୍ତୋଷଜନକ ହୋଇ ପାରିଛି ।

ରପ୍ତାନୀ କ୍ଷେତ୍ରରେ ୧୯୮୬-୮୭ ବର୍ଷରେ ଭାରତରୁ ରପ୍ତାନୀ ଶତକଡା ୧୫ ଭାଗ ବୃଦ୍ଧି ପାଇଥିବା ବେଳେ ଏହି ବର୍ଷର ପ୍ରଥମ ନଅ ମାସରେ ତାହା ଶତକଡା ୨୫ ଭାଗ ବଢ଼ିଛି । କିନ୍ତୁ ଏହି ସମୟ ଭିତରେ ବିଦେଶରୁ ଆମଦାନୀ ଶତକଡା ୧୪ ଭାଗ ବଢ଼ିଛି । ତେଣୁ ଭାରତରେ ବାଣିଜ୍ୟ କ୍ଷେତ୍ରରେ ନିଅଣ୍ଟ ପରିମାଣ ଗତ ଦୁଇବର୍ଷ ହେଲା କ୍ରମେ ହ୍ରାସ ପାଇ ଆସୁଅଛି । କିନ୍ତୁ ସାଧାରଣତଃ ଆମ ଦେଶର ଏହି ନିଅଣ୍ଟିଆ ପରିସ୍ଥିତି ବର୍ତ୍ତମାନ ମଧ୍ୟ ଚାପ ମୁକ୍ତ ହୋଇ ନାହିଁ । ଖାଇବା ତେଲ ଓ ଡ଼ାଲି ଜାତୀୟ ଶସ୍ୟ ଅଧିକ ପରିମାଣରେ ଆମଦାନୀ କରିବାକୁ ପଡ଼ିଥିବାରୁ, ପେଟ୍ରୋଲ ନିମନ୍ତେ ବିଦେଶରୁ ମୂଳ ତୈଳ ଆମଦାନୀକୁ ବଢ଼ାଇବାକୁ ପଡ଼ିଥିବାରୁ ତଥା ବିକାଶଶୀଳ ରାଷ୍ଟ୍ରମାନଙ୍କ ରପ୍ତାନୀ ସାମଗ୍ରୀ ଉପରେ ଉନ୍ନତ ରାଷ୍ଟ୍ରମାନଙ୍କ ଦ୍ୱାରା ବାଣିଜ୍ୟ କଟକଣା ଓ ଅନ୍ୟାନ୍ୟ ରକ୍ଷଣଶୀଳ ନୀତି ପ୍ରବର୍ତ୍ତନ ଯୋଗୁଁ ଆମ ଦେଶର ଆର୍ଥିକ ଦେବା ନେବା (ବାଲାନସ୍ ଅଫ୍ ପେମେଣ୍ଟ) ପରିସ୍ଥିତିର କ୍ରମେ ଅବନତି ହେଉଛି । ତା ସାଙ୍ଗକୁ ଅନ୍ତଃରାଷ୍ଟ୍ରୀୟ ଅର୍ଥନୀତିରେ ବିପର୍ଯ୍ୟୟ ମଧ୍ୟ ଉନ୍ନତ ରାଷ୍ଟ୍ରମାନଙ୍କର ବାଣିଜ୍ୟ ପରିସ୍ଥିତିରେ ଅବନତି ଘଟାଇ ଦେଇଛି । ମୁଦ୍ରା ବିନିମୟ ହାରରେ ଭାରତର ଦୁର୍ବଳ ପରିସ୍ଥିତି ଓ ବିଶ୍ୱର ବାଣିଜ୍ୟ ବୃଦ୍ଧି କ୍ଷେତ୍ରରେ ମନ୍ଥରତା ଯୋଗୁଁ ଭାରତ କ୍ରମେ ବେଶୀ ଅସୁବିଧା ପରିସ୍ଥିତିର ସମ୍ମୁଖୀନ ହୋଇ ଯାଉଛି ।

ଋଣ ପରିଶୋଧ ଏବଂ ଋଣର ପରିଶୋଧ କ୍ଷେତ୍ରରେ ଭାରତ ସନ୍ତୋଷଜନକ ପରିସ୍ଥିତିରେ ରହିନାହିଁ । ଅବଶ୍ୟ ତୃତୀୟ ବିଶ୍ୱର ଅନେକ ରାଷ୍ଟ୍ର ବୈଦେଶିକ ଋଣର ଗୋଲକଧନ୍ଦା ଭିତରେ ନିଜ ନିଜର ଅର୍ଥନୈତିକ ସ୍ୱାଧୀନତା ହରାଇ ରାଜନୈତିକ ଓ ସାମାଜିକ ସ୍ୱାଧୀନତାକୁ ବିପନ୍ନ କରିଥିବା ବେଳେ ଭାରତ ସେଭଳି ପରିସ୍ଥିତିର ସମ୍ମୁଖୀନ ହୋଇନାହିଁ । ଭାରତୀୟ ଟଙ୍କାର ମୂଲ୍ୟ ହ୍ରାସ କରାଯିବ ନାହିଁ ବୋଲି କେନ୍ଦ୍ର ଅର୍ଥମନ୍ତ୍ରୀଙ୍କର ଆଶ୍ୱାସନା ଏ ସଂପର୍କରେ ବେଶ ଗୁରୁତ୍ୱପୂର୍ଣ୍ଣ ।

## ସଂକ୍ଷେପରେ ବଜେଟ

ଏହି ପୃଷ୍ଠ ଭୂମିରେ ୧୯୮୮-୮୯ରେ ସାଧାରଣ ବଜେଟ ଉପସ୍ଥାପନା କରାଯାଇଅଛି ଏବଂ ସଂକ୍ଷେପରେ ଏହି ବଜେଟ ନିମ୍ନରେ ଦିଆଗଲା ।

ସାଧାରଣ ବଜେଟର ସଂକ୍ଷିପ୍ତ ପରିଚୟ

(କୋଟି ଟଙ୍କାରେ)

| | ୧୯୮୬-୮୭ର ପ୍ରକୃତ ହିସାବ | ୧୯୮୭-୮୮ର ବଜେଟ ବରାଦ | ୧୯୮୭-୮୮ର ସଂଶୋଧିତ ହିସାବ | ୧୯୮୮-୮୯ର ବଜେଟ ବରାଦ |
|---|---|---|---|---|
| (୧) ରାଜସ୍ୱ ଆୟ | ୩୨,୮୯୮ | ୩୨,୬୮୮ | ୩୮,୧୨୨ | ୪୨,୭୯୮ |
| (୨) ରାଜସ୍ୱ ବ୍ୟୟ | ୪୦,୬୬୪ | ୩୯,୪୩୦ | ୪୬,୬୧୯ | ୫୨,୬୪୦ |
| (୩) ମୂଳପୁଞ୍ଜି ଆୟ | ୧୮,୫୨୯ | ୨୦,୫୬୬ | ୨୧,୯୫୯ | ୨୩,୨୭୮ |
| (୪) ମୂଳପୁଞ୍ଜି ବ୍ୟୟ | ୧୯,୧୦୪ | ୧୯,୫୧୨ | ୧୯,୫୪୨ | ୨୦,୯୨୦ |
| (୫) ରାଜସ୍ୱ ନିଅଣ୍ଟ (୨)–(୧) | ୭,୭୬୬ | ୬,୭୪୨ | ୮,୪୯୭ | ୯,୮୪୨ |
| (୬) ମୋଟ୍ ଆୟ (୧)+(୩) | ୫୧,୪୨୭ | ୫୩,୨୫୪ | ୬୦,୦୮୧ | ୬୬,୦୭୬ |
| (୭) ମୋଟ ବ୍ୟୟ (୨+୪) | ୫୯,୬୮୮ | ୬୨,୯୪୨ | ୬୬,୧୬୧ | ୭୩,୫୬୦ |
| (୮) ନିଅଣ୍ଟ (୭–୬) | ୮,୨୬୧ | ୯,୬୮୮ | ୬,୦୮୦ | ୭,୪୮୪ |

ତେଣୁ ୧୯୮୬-୮୭ ରେ ମୋଟ ନିଅଣ୍ଟ ପରିମାଣ ୮,୨୬୧ କୋଟି ଟଙ୍କା ହେବା ବେଳେ ୧୯୮୭-୮୮ ରେ ମୋଟ ନିଅଣ୍ଟ ପରିମାଣ ୬,୦୮୦ କୋଟି ଟଙ୍କା ଏବଂ ୧୯୮୮-୮୯ ପାଇଁ ଏହି ନିଅଣ୍ଟ ପରିମାଣ ୭,୪୮୪ କୋଟି ଟଙ୍କା ହେବ ବୋଲି ଆଶା କରାଯାଉଛି । ଏହି ନିଅଣ୍ଟ ପରିମାଣଟି ମୁଦ୍ରାସ୍ଫୀତିର ସୂଚନା ଦିଏ । ଏହି ନିଅଣ୍ଟ ପରିମାଣ ମୋଟ ରାଜସ୍ୱ ଆୟର ୧୧.୪ ଭାଗ । ତେଣୁ ସରକାରଙ୍କୁ ଅଣ-ଯୋଜନା ରାଜସ୍ୱ ବ୍ୟୟ ସଙ୍କୋଚନ କରି ଦକ୍ଷତାର ସହ ଅର୍ଥନୈତିକ ନିୟନ୍ତ୍ରଣ ଭିତରେ ରଖିବାକୁ ହେବ ଏବଂ ବ୍ୟୟ ବଢ଼ାଇବା ନିମନ୍ତେ ସବୁପ୍ରକାର ଚାପ ଓ ଅନୁରୋଧକୁ ଉପେକ୍ଷା କରି ଚଳିବାକୁ ହେବ ।

୧୯୮୭-୮୮ ରେ କେନ୍ଦ୍ରୀୟ ଯୋଜନା ବାବଦରେ ୨୪,୬୨୨ କୋଟି ଟଙ୍କା ବରାଦ ହୋଇଥିବା ବେଳେ, ୧୯୮୮-୮୯ ରେ ୨୮,୬୧୫ କୋଟି ଟଙ୍କା ବ୍ୟୟ କରାଯିବ ବୋଲି ଅଟକଳ କରାଯାଇଅଛି । ଏହି ବରାଦ ୧୯୮୭-୮୮ରେ ହୋଇଥିବା ସଂଶୋଧିତ ବ୍ୟୟବରାଦ ଅପେକ୍ଷା ଶତକଡା ୧୧.୭ ଭାଗ ଅଧିକ ଅଟେ । ଏହି ବ୍ୟୟ ବିଶେଷତଃ କୃଷି, ବିଦ୍ୟୁତ୍ ଓ ଦାରିଦ୍ର୍ୟ ଦୂରୀକରଣ ଯୋଜନାମାନଙ୍କ ନିମନ୍ତେ ଉଦ୍ଦିଷ୍ଟ । ଏହି ବ୍ୟୟ ବରାଦ ସଫଳ ଭାବରେ ଖର୍ଚ୍ଚ ହୋଇପାରିଲେ ସପ୍ତମ ଯୋଜନା ସମୟର କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ କାର୍ଯ୍ୟମାନଙ୍କର ଶତକଡା ୮୬ ଭାଗ ବ୍ୟୟ ଏହି ବର୍ଷ ଶେଷ ସୁଦ୍ଧା ହୋଇ ଯାଇ ପାରିବ ।

କେନ୍ଦ୍ର ବଜେଟରେ ଆସନ୍ତାବର୍ଷ ବିଭିନ୍ନ ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳକୁ ସାହାଯ୍ୟ ଦେବା ନିମନ୍ତେ ୯,୬୧୪ କୋଟି ଟଙ୍କା ବରାଦ କରାଯାଇଅଛି । ତା' ଛଡା ବିଭିନ୍ନ ଟିକସ ଓ କର ବାବଦରୁ ରାଜ୍ୟମାନେ ତାଙ୍କର ପ୍ରାପ୍ୟ ଭାଗ ପାଇବେ ୨୬,୩୪୮ କୋଟି ଟଙ୍କା । ୧୯୮୭-୮୮ ଆର୍ଥିକ ବର୍ଷରେ ଏହି ବାବଦରେ ୨୪,୮୭୦ କୋଟି ଟଙ୍କା ବରାଦ ହୋଇଥିବା ବେଳେ ୧୯୮୮-୮୯ ରେ ଏହି ଟଙ୍କାକୁ ପ୍ରାୟ ଶତକଡା ୬ ଭାଗ ବୃଦ୍ଧି କରି ଦିଆଯାଇଛି ।

କେନ୍ଦ୍ରର ଏହି ବଜେଟରେ ଦିଆଯାଇଥିବା ଉପକାର ଓ ଲାଭକୁ ଯଥାଯଥ ଭାବରେ ଲୋକମାନଙ୍କ ପାଖରେ ପହଞ୍ଚାଇବା ଦାୟିତ୍ୱ ମୁଖ୍ୟତଃ ବ୍ୟାଙ୍କମାନଙ୍କର ରହିବ ।

**ବ୍ୟାଙ୍କମାନଙ୍କର ଭୂମିକା**

ଏହି କେନ୍ଦ୍ର ବଜେଟ ବ୍ୟାଙ୍କମାନଙ୍କର ଭୂମିକା ଉପରେ ସୁଦୂର ପ୍ରସାରୀ ପ୍ରଭାବ ପକାଇବ । ସ୍ୱାଧୀନତା ପରେ ଏହି ବର୍ଷ ପ୍ରଥମ ଥର ପାଇଁ ଭାରତର ପ୍ରତ୍ୟେକ ଗ୍ରାମର ଆର୍ଥିକ ଆବଶ୍ୟକତା ପୂରଣ କରିବା ନିମନ୍ତେ କୋଟିଏ କୋଟିଏ ନିର୍ଦ୍ଦିଷ୍ଟ ବ୍ୟାଙ୍କର ଶାଖା ଅଫିସ ଉପରେ ଦାୟିତ୍ୱ ନ୍ୟସ୍ତ କରାଯାଇଛି । ବ୍ୟାଙ୍କର ଚିହ୍ନିତ ଏହି ଶାଖା ନିର୍ଦ୍ଦିଷ୍ଟ ଗ୍ରାମର ଲୋକମାନଙ୍କର କୃଷି, ବ୍ୟବସାୟ ଅଥବା ଶିଳ୍ପ ବିଷୟରେ ଋଣ ଦେବା ବିଷୟ ବୁଝିବେ । ତେଣୁ ଲୋକମାନଙ୍କୁ ଏଥର ଗୁଡ଼ିଏ ବ୍ୟାଙ୍କ ପାଖକୁ ଦୌଡାଦୌଡ଼ି କରିବାକୁ ପଡ଼ିବ ନାହିଁ ଏବଂ ଋଣ ପରିଶୋଧ ମଧ୍ୟ ନିୟମିତ ହୋଇପାରିବ । ଭାରତରେ ରହିଥିବା ୪୦,୦୦୦ ବ୍ୟାଙ୍କ ଶାଖା ଅଫିସରୁ ଏହି ସୁବିଧା ଦିଆଯିବ ଏବଂ ପ୍ରତ୍ୟେକ ବ୍ୟାଙ୍କକୁ ପ୍ରାୟ ୧୫ ରୁ ୨୦ଟି ନିର୍ଦ୍ଦିଷ୍ଟ ଗ୍ରାମ ସେବା ନିମନ୍ତେ ନିର୍ଦ୍ଦିଷ୍ଟ କରାଯିବ । ତେଣୁ ବ୍ୟାଙ୍କମାନଙ୍କର ଋଣ ଦେବା ତଥା ପୁଞ୍ଜି ସଂଗ୍ରହ କରିବା ନୀତିର ପୁନର୍ବିନ୍ୟାସ କରାଯିବ ।

ଗରିବ ପାଇଁ ସୁଧ ନେଉଥିବା ଋଣ ଉପରେ ଏବେ ସୁଧକୁ ୫,୦୦୦ ଟଙ୍କା ପର୍ଯ୍ୟନ୍ତ ଋଣ ଉପରେ ଶତକଡା ୧୧.୫ ହାରରେ ସୁଧ ଏବଂ ୭,୫୦୦ ପର୍ଯ୍ୟନ୍ତ ଋଣ ଉପରେ ଶତକଡା ୧୨.୫ ହାରରେ ସୁଧ ଦେବାକୁ ପଡୁଛି । କିନ୍ତୁ ଏହି ବଜେଟରେ ଏହି ସୁଧର ହାରକୁ କମାଇ ଦିଆଯାଇ ୭,୫୦୦ ଟଙ୍କା ପର୍ଯ୍ୟନ୍ତ ଋଣ ଉପରେ ଶତକଡା ୧୦ ହାରରେ ସୁଧ ନିଆଯିବା ପାଇଁ ନିଷ୍ପତ୍ତି ହୋଇଛି ।

ବ୍ୟାଙ୍କର ଋଣ ଦେବା ପରିସର ଏବଂ ପରିମାଣରେ ଏବେ ଶତକଡା ୧୬ ଭାଗ ଋଣ ଗ୍ରାମାଞ୍ଚଳ ପାଇଁ ନିର୍ଦ୍ଦିଷ୍ଟ ଥିଲା । କିନ୍ତୁ ଏହି ବଜେଟରେ ଏହି ଋଣ ଅଂଶକୁ ବୃଦ୍ଧି କରାଯାଇ ଶତକଡା ୧୭ ଭାଗ ଋଣ ଗ୍ରାମାଞ୍ଚଳ ପାଇଁ ନିର୍ଦ୍ଦିଷ୍ଟ କରାଯାଇଥିବାରୁ ଗ୍ରାମାଞ୍ଚଳର ପ୍ରାପ୍ୟ ଋଣର ପରିମାଣ ଅଧିକା ୩,୦୦୦ କୋଟି ଟଙ୍କା ହୋଇପାରିଛି ।

ଏହାଛଡ଼ା ଗୃହ ନିର୍ମାଣ କରିବା ନିମନ୍ତେ ଗ୍ରାମାଞ୍ଚଳକୁ ୩୦୦ କୋଟି ଟଙ୍କା ଋଣ ବ୍ୟାଙ୍କରୁ ଅଧିକା ମିଳିବା ବ୍ୟବସ୍ଥା କରାଯାଇଅଛି ।

ତେଣୁ ଏହି ବଜେଟ ଫଳରେ ଗ୍ରାମମାନଙ୍କୁ ପ୍ରତିବର୍ଷ ପ୍ରାୟ ୩,୩୦୦ କୋଟି ଅଧିକା ଟଙ୍କା ମିଳିବାର ଆଶା କରାଯାଇପାରେ ।

**ଦେଶରକ୍ଷା ନିମନ୍ତେ ଖର୍ଚ୍ଚ**

ଏହି ବଜେଟରେ ଦେଶରକ୍ଷା ନିମନ୍ତେ ଉଦ୍ଦିଷ୍ଟ ବ୍ୟୟ ବରାଦ ଏକ ବିବାଦନୀୟ ବିଷୟ ହୋଇ ରହିବ ।

ସ୍ୱାଧୀନତା ପାଇବାର ପରବର୍ତ୍ତୀ ବର୍ଷମାନଙ୍କରେ ଦେଶରକ୍ଷା ନିମନ୍ତେ ମୋଟ ଜାତୀୟ ଉତ୍ପାଦ (ଗ୍ରସ୍ ନେସନାଲ୍ ପ୍ରୋଡକ୍ଟ)ର ଶତକଡା ୧.୩ ଭାଗ ଖର୍ଚ୍ଚ ହେଉଥିଲା ଏବଂ ଭାରତର ସ୍ୱାଧୀନତା ରକ୍ଷା କରିବା ଦାୟିତ୍ୱ ବୈଦେଶିକ ନୀତି ଏବଂ କୂଟନୀତି ଉପରେ ମୁଖ୍ୟତଃ ନ୍ୟସ୍ତ ଥିଲା । କିନ୍ତୁ ୧୯୬୨ରେ ଚୀନର ଆକ୍ରମଣ ପରେ ଏହି ଭ୍ରମପୂର୍ଣ୍ଣ ନୀତିର ସଂଶୋଧନ କରାଯାଇ ଦେଶରକ୍ଷା ମୁଖ୍ୟ ଦାୟିତ୍ୱ ଦେଶରକ୍ଷା ବିଭାଗ ଉପରେ ନ୍ୟସ୍ତ ହେଲା । ଦେଶରକ୍ଷା ନିମନ୍ତେ ସେନାବାହିନୀକୁ ମାର୍ଜିତ ଓ ପରିବର୍ଦ୍ଧିତ କରାଗଲା, ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରାଗଲା । ନୌବାହିନୀ ଓ ବିମାନବାହିନୀକୁ ସଂଗଠିତ କରି ଆଧୁନିକିକରଣ କରାଗଲେ ନିଶ୍ଚିତ ଭାବରେ ବ୍ୟୟ ବୃଦ୍ଧି ପାଇବ । ତେଣୁ ଏବେ ଦେଶରକ୍ଷା ବାବଦରେ ମୋଟ ଜାତୀୟ ଉତ୍ପାଦନର ଶତକଡା ୩.୯ ଭାଗ ବ୍ୟୟ ହେଉଛି ।

ଦେଶର ସାମାଜିକ ଓ ଅର୍ଥନୈତିକ ଉନ୍ନୟନ ନିମନ୍ତେ ଆବଶ୍ୟକ ପୁଞ୍ଜି ଏବଂ ଦେଶରକ୍ଷା ନିମନ୍ତେ ଆବଶ୍ୟକ ପାଣ୍ଠି ମଧ୍ୟରେ ଏକ ସୁକ୍ଷ୍ମ ଅଥଚ ତାତ୍ତ୍ୱିକ ସମ୍ପର୍କ ରକ୍ଷା କରାଯିବା ଆବଶ୍ୟକ । କାରଣ ଦେଶର ଦୁର୍ବଳତା ଆଭ୍ୟନ୍ତରୀଣ କାରଣରୁ ଅଥବା ବହିଃଦେଶରୁ ଆକ୍ରମଣ ହେତୁରୁ ରହିବା ଉଚିତ ନୁହେଁ । ଦେଶରକ୍ଷା ନିମନ୍ତେ ଆମକୁ ସଦା ଜାଗ୍ରତ ଓ ସଦା ପ୍ରସ୍ତୁତ ହୋଇ ରହିବାକୁ ପଡ଼ିବ । କିନ୍ତୁ ଦେଶରକ୍ଷା ନିମନ୍ତେ ବରାଦ ହୋଇଥିବା ପ୍ରତ୍ୟେକ ଟଙ୍କାର ସଦୁପଯୋଗ ହେବା ଦରକାର ।

୧୯୮୪-୮୫ ରେ ଦେଶରକ୍ଷା ନିମନ୍ତେ ୬,୬୬୧ କୋଟି ଟଙ୍କା ବରାଦ ହୋଇଥିବା ସ୍ଥଳେ ଏବର୍ଷ ଦେଶରକ୍ଷା ନିମନ୍ତେ ୧୩,୦୦୦ କୋଟି ଟଙ୍କା ବରାଦ କରାଯାଇଅଛି । ଅଥଚ ୧୯୮୭-୮୮ ଆର୍ଥିକ ବର୍ଷ ଦେଶରକ୍ଷା ନିମନ୍ତେ ମୋଟ ଖର୍ଚ୍ଚ ୧୨,୦୦୦ କୋଟି ଟଙ୍କା ହୋଇଥିଲା । ଏହା ଜାତୀୟ ଉତ୍ପାଦନର ଶତକଡା ୩.୯ ଭାଗ ଏବଂ ଦେଶର ବାର୍ଷିକ ବ୍ୟୟର ଶତକଡା ୧୫ ଭାଗ ଅଟେ ।

ଭାରତୀୟ କୂଟନୀତି ଏବଂ ସଫଳ ବୈଦେଶିକ ନୀତି ତଥା ୧୯୭୧ ରେ ବଙ୍ଗଳା ଦେଶର ସୃଷ୍ଟି ହେବା ପରେ ଦେଶରକ୍ଷା ବ୍ୟୟ ଭାର କ୍ରମେ ହ୍ରାସ ପାଇବ ବୋଲି ମନେ ହେଉଥିଲା ବେଳେ ଭାରତର ପଡୋଶୀ ପାକିସ୍ଥାନର ଯୁଦ୍ଧ ମନୋଭାବ ଏବଂ ଆଣବିକ ଅସ୍ତ୍ର ତିଆରି କରିବା କ୍ଷମତା ଆମକୁ ନ ଯଯୌ ନ ତସ୍ଥୌ ଅବସ୍ଥାରେ ପକାଇ ଦେଇଛି । ତା ସାଙ୍ଗକୁ ଶ୍ରୀଲଙ୍କାରେ ଭାରତୀୟ ଶାନ୍ତିରକ୍ଷା ବାହିନୀ ଏବେ ଯେପରି ସମ୍ମୁଖ ସମରର ସମ୍ମୁଖୀନ ହୋଇଛନ୍ତି ସେଥିଯୋଗୁଁ ଦେଶରକ୍ଷା ବାବଦର ଖର୍ଚ୍ଚ ଅନିବାର୍ଯ୍ୟ ହୋଇ ପଡ଼ିଛି ।

ଏହି ଅନିବାର୍ଯ୍ୟ ଖର୍ଚ୍ଚ କମାଇବାକୁ ଭାରତରେ ତିଆରି ହୋଇଥିବା ଆଧୁନିକ ଅସ୍ତ୍ରଶସ୍ତ୍ର, ଗୋଳାବାରୁଦ ଏବଂ ଯୁଦ୍ଧ ଉପକରଣ ନିମନ୍ତେ ବିଦେଶରେ ବିକ୍ରୀ କରିବା ବ୍ୟବସ୍ଥା ତତ୍ପର ସଂପନ୍ନ ହେବା ଆବଶ୍ୟକ । ଏଥି ନିମନ୍ତେ ଦକ୍ଷିଣ ଆମେରିକା, ଆଫ୍ରିକା, ମଧ୍ୟପ୍ରାଚ୍ୟ ଏବଂ ଦକ୍ଷିଣପୂର୍ବ ଏସିଆର ରାଷ୍ଟ୍ରମାନଙ୍କ ସହିତ ଆଲୋଚନା ଆରମ୍ଭ ହେବ ବୋଲି ଆଶା କରିବା ସ୍ୱାଭାବିକ ।

## ଋଣ ପରିଶୋଧ

ଦେଖାଯାଉଅଛି ଯେ ଅଣଯୋଜନା କ୍ଷେତ୍ରରେ ମଧ୍ୟ ଯେଉଁ ବ୍ୟୟ ବରାଦ ଅଣ-ଉନ୍ନୟନ ନିମନ୍ତେ ରଖାଯାଇଅଛି ତାହା ଉନ୍ନୟନ ନିମନ୍ତେ ଉଦ୍ଦିଷ୍ଟ ବ୍ୟୟ ଅପେକ୍ଷା ଅଧିକ ପ୍ରଖର ସ୍ରୋତସ୍ୱିନୀ ଧାରା ପରି ପ୍ରତୀୟମାନ ହେଉଛି । ଋଣ ଓ ସୁଧ ପରିଶୋଧ କରିବାକୁ ଏହି ବଜେଟରେ ୧୫,୦୦୦ କୋଟି ଟଙ୍କା ରଖା ହୋଇଛି । ଏହି ଋଣର କ୍ରମବର୍ଦ୍ଧିଷ୍ଣୁ ରୂପ ଶେଷରେ ଭାରତକୁ ଏକ ଋଣ-ଜନ୍ତାରେ ପକାଇ ଦେଇ ପାରେ । ଆଜିଠୁ ଏବିଷୟରେ ସାବଧାନ ନହେଲେ ଭାରତ ଅବଶେଷରେ ଟଙ୍କାର ମୂଲ୍ୟ ହ୍ରାସ କରିବାକୁ ବାଧ୍ୟହେବ ଏବଂ ତାପରେ ଋଣ ମାତ୍ରାର ବୃଦ୍ଧି ଓ ଟଙ୍କାର ମୂଲ୍ୟ ହ୍ରାସ ଓ ମୁଦ୍ରାସ୍ଫୀତିର କୁଚକ୍ର ଭିତରେ ପଡ଼ିଯାଇ ଭାରତକୁ ଦକ୍ଷିଣ ଆମେରିକାର ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କ ଭଳି ଏକ ଅତ୍ୟନ୍ତ ସଂକଟଜନକ ପରିସ୍ଥିତିରେ ପଡ଼ିବାକୁ ହେବ ।

## ଗ୍ରାମାଞ୍ଚଳକୁ ଲାଭ

ଏହି ବଜେଟର ପ୍ରତ୍ୟକ୍ଷ କର ଏବଂ ସବସିଡ଼ି ଦ୍ୱାରା ସମାଜର ବିଭିନ୍ନ ଅଞ୍ଚଳ ଓ ଶ୍ରେଣୀ ଲାଭବାନ ହେବେ । ସେହି ସୁଯୋଗ ଗୁଡ଼ିକର ଏକ ସଂକ୍ଷିପ୍ତ ପରିଚୟ ଏଠାରେ ଦିଆଯାଉଅଛି ।

(୧) ଦୁର୍ବଳ ଶ୍ରେଣୀର ଲୋକଙ୍କ ନିମନ୍ତେ ମାଗଣାରେ ବୀମା ଯୋଜନା ପ୍ରବର୍ତ୍ତନ ।

(୨) ସାମାଜିକ ନିରାପତ୍ତାର ଅଭିବୃଦ୍ଧି, ଅଧିକ କର୍ମଯୋଗାଣ ଏବଂ ଦରିଦ୍ରମାନଙ୍କୁ ସାହାଯ୍ୟ ଦେବା ନିମନ୍ତେ ପଦକ୍ଷେପ ।

(୩) ମରୁଡ଼ି ଦ୍ୱାରା ପ୍ରପୀଡ଼ିତ କୃଷକମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଜାତୀୟ କୃଷି ଋଣ ସାହାଯ୍ୟ ନାମରେ ଏକ ନୂତନ ଅନୁଷ୍ଠାନ ଗଠନ ।

(୪) ଶସ୍ୟ ଋଣ ଉପରେ ସୁଧର ହାର ଶତକଡା ୪ ଭାଗରୁ ଶତକଡା ୨.୫ ଭାଗକୁ ହ୍ରାସ ।

(୫) ଗ୍ରାମାଞ୍ଚଳରେ ସ୍ୱଳ୍ପ ସଂଚୟ ବୃଦ୍ଧି କରିବାକୁ କିଶାନ ବିକାଶପତ୍ର ନାମରେ ଏକ ସ୍ୱତନ୍ତ୍ର ଯୋଜନା ସୃଷ୍ଟି କରାଯାଇଅଛି । ଏଥିରେ ଜମା ହୋଇଥିବା ଅର୍ଥ ସାଢ଼େ ପାଞ୍ଚବର୍ଷରେ ଦୁଇଗୁଣ ହୋଇପାରିବ ।

(୬) ମରୁଡ଼ି ଅଞ୍ଚଳରେ ନାମମାତ୍ର ଓ କ୍ଷୁଦ୍ରଚାଷୀଙ୍କୁ ଉଠା ଜଳସେଚନର ସୁଯୋଗ ଦେବାକୁ ଜଳଧାରା ନାମକ ଏକ ନୂତନ ଯୋଜନା ପ୍ରଚଳନ କରାଯାଇଅଛି । ଏଥିରେ କମ୍ଭଡ଼ାରେ ପମ୍ପସେଟ୍ କୃଷକମାନଙ୍କୁ ଭଡ଼ା ଦିଆଯିବ ।

(୭) ଆସନ୍ତା ଖରିଫ ଓ ରବି ଋତୁରେ ସାରର ଦାମ ନିର୍ଦ୍ଦିଷ୍ଟ ଦରଠାରୁ ଶତକଡା ୭.୫ ହାର କମ କରିବାକୁ ସାରକାରଖାନାମାନଙ୍କୁ ନିର୍ଦ୍ଦେଶ ଦିଆଯାଇଅଛି ।

(୮) ଗ୍ରାମାଞ୍ଚଳରେ ଗୃହ ନିର୍ମାଣ ନିମନ୍ତେ ୧୦୦ କୋଟି ଟଙ୍କାରେ ଏକ ସ୍ୱତନ୍ତ୍ର ପାଣ୍ଠି ଗଠନ କରାଯାଇଛି ଏବଂ ସ୍ୱଳ୍ପ ମୂଲ୍ୟରେ ଗୃହ ନିର୍ମାଣ କରିବା ନିମନ୍ତେ ଉତ୍ସାହ ଦିଆଯିବ ।

(୯) ଗ୍ରାମାଞ୍ଚଳରେ ଥିବା ସମବାୟ ସଂସ୍ଥାମାନଙ୍କ ଦ୍ୱାରା ନିର୍ମିତ ରେଡ଼ିଓ, ଟେପରେକର୍ଡର ଓ କ୍ୟାସେଟ ବଜାଇବା ଯନ୍ତ୍ର ଏବଂ ଭୋଲଟେଜ ଷ୍ଟେବିଲାଇଜର ଉପରେ ଅବକାରୀ କର ସଂପୂର୍ଣ୍ଣ ଭାବରେ ଛାଡ଼ି ଦିଆଯାଇଅଛି ;

(୧୦) ଗ୍ରାମ୍ୟ ଖଦୀ ବୋର୍ଡ ଦ୍ୱାରା ପ୍ରସ୍ତୁତ କରା ଯାଇଥିବା ଜାମ, ଜେଲି ଓ ଆଗ୍ସର ଉପରୁ ଅବକାରୀ ଶୁଳ୍କ ସଂପୂର୍ଣ୍ଣ ଭାବରେ ଛାଡ଼ି ଦିଆଯାଇଅଛି ।

## ସହରାଞ୍ଚଳ ଲୋକଙ୍କର ସୁବିଧା

ଏବର୍ଷ ବଜେଟ ଗ୍ରାମାଭିମୁଖୀ ହୋଇଥିଲେ ମଧ୍ୟ ସହରାଞ୍ଚଳ ଲୋକଙ୍କ କଥା ଭୁଲି ଯାଇ ନାହିଁ ।

(୧) ବ୍ୟକ୍ତିଗତ ଆୟକର ହାରରେ କୌଣସି ପରିବର୍ତ୍ତନ କରାଯାଇ ନାହିଁ । ବରଂ ଆୟକର ଧାର୍ଯ୍ୟ କଲାବେଳେ ପୂର୍ବେ ପ୍ରଥମେ ଦଶ ହଜାର ଟଙ୍କା ଉପରେ କର ଧାର୍ଯ୍ୟ କରାଯାଉ ନଥିବା ବେଳେ ଏବେ ପ୍ରଥମେ ବାର ହଜାର ଟଙ୍କା ଉପରେ କର ଧାର୍ଯ୍ୟ କରା ଯିବ ନାହିଁ । ଏହାଦ୍ୱାରା ମଧ୍ୟବିତ୍ତ ଶ୍ରେଣୀର ପ୍ରାୟ ଦଶଲକ୍ଷ ପରିବାର ଉପକୃତ ହେବେ । ଅବଶ୍ୟ ପଚିଶ ହଜାର ଟଙ୍କାରୁ ଉର୍ଦ୍ଧ୍ୱ ଆୟ ଉପରେ ଆୟ କରର ଶତକଡା ୫ ଭାଗ ଅତିରିକ୍ତ କର ଦେବାକୁ ପଡ଼ିବ ।

(୨) ଚିନି, ଦିଆସିଲି, ଚାହା, କଫି, ବନସ୍ପତି, ରିଫାଇନ ତେଲ ଓ କିରାସିନୀ ଉପରୁ ଅତିରିକ୍ତ କର ସଂପୂର୍ଣ୍ଣ ରୂପେ ଉଠାଇ ନିଆଯିବା ହେତୁ ଦର କମିଯିବ ।

(୩) ଗୃହରେ ବ୍ୟବହାର କରାଯାଉଥିବା ବିଭିନ୍ନ ବିଦ୍ୟୁତ ଉପକରଣ ଯଥା ବିଦ୍ୟୁତ୍ ଚାଷା, ବିଦ୍ୟୁତ୍‌କେଟଲ୍, ପାଉଁରୁଟି ସେକିବା ଯନ୍ତ୍ର, ଇସ୍ତ୍ରି କରିବା ଯନ୍ତ୍ର, ଓ ୬୦ ୱାଟ୍‌ରୁ ଅଧିକ ଶକ୍ତି ବିଶିଷ୍ଟ ବିଦ୍ୟୁତ୍ ବଲବର ଦାମ କମିଯିବ, କାରଣ ବିଦ୍ୟୁତ୍ ଉପକରଣ ଉପରୁ ଅବକାରୀ ଟିକସ ସଂପୂର୍ଣ୍ଣ ଭାବେ ଉଠାଇ ଦିଆଯିବା ସଙ୍ଗେ ସଙ୍ଗେ ବଲବ୍ ଉପରେ ଥିବା ଅବକାରୀ ଶୁଳ୍କ ଦେଢ଼ ଟଙ୍କାରୁ ଏକ ଟଙ୍କାକୁ କମାଇ ଦିଆ ଯାଇଅଛି ।

(୪) ସିମେଣ୍ଟ ଉପରେ ବସ୍ତାପିଛା ଅବକାରୀ ଶୁଳ୍କ ଏକ ଟଙ୍କା ହ୍ରାସ କରାଯିବାରୁ ସିମେଣ୍ଟ ବସ୍ତାର ଦାମ କମିଯିବ ।

(୫) ପିଲାଙ୍କର ଖେଳନା, କଣ୍ଢେଇ, ଖେଳନା ସ୍କୁଟର, ଖେଳନା ବାଦ୍ୟଯନ୍ତ୍ର ଉପରୁ ଅବକାରୀ ଟିକସ ସମ୍ପୁର୍ଣ୍ଣ ରୂପେ ଉଠାଇ ଦିଆଯାଇଅଛି ।

(୬) କାଚ ଓ ଚୀନାମାଟିରେ ତିଆରି କପ୍, ପ୍ଲେଟ, ଜଗ୍ ଉପରେ ଅବକାରୀ ଶୁଳ୍କ ଶତକଡା ୪୦ ଭାଗରୁ ଶତକଡା ୨୦ ଭାଗକୁ କମାଇ ଦିଆଯାଇଅଛି ।

(୭) କାନ୍ଥ ଘଣ୍ଟା, ବ୍ୟାଟେରୀ ଚାଳିତ ଘଣ୍ଟା ଏବଂ ତାର ଯନ୍ତ୍ରାଂଶ ଉପରୁ ଅବକାରୀ ଶୁଳ୍କକୁ ଶତକଡା ୧୫ ରୁ ଶତକଡା ୫ ଭାଗକୁ କମାଇ ଦିଆଯାଇଅଛି ।

(୮) ନାରୀମାନଙ୍କର ପ୍ରସାଧାନ ସାମଗ୍ରୀ ସିନ୍ଦୁର, କଜ୍ଜ୍ୱଳ ଓ ଅଳତା ଉପରୁ ଅବକାରୀ ଶୁଳ୍କ ସଂପୂର୍ଣ୍ଣ ରୂପେ ଉଠାଇ ଦିଆଯାଇଅଛି ।

(୯) ଔଷଧ ମୂଲ୍ୟ ନିୟନ୍ତ୍ରଣ ଆଇନ ଦ୍ୱାରା ନିୟନ୍ତ୍ରିତ ପ୍ରଥମ ଶ୍ରେଣୀ ମୌଳିକ ଉପାଦାନ ଓ ସେଥିରୁ ତିଆରି ହେଉଥିବା ଔଷଧ ଏବଂ ଔଷଧର ମଧ୍ୟବର୍ତ୍ତୀ ଉପାଦାନ ଗୁଡ଼ିକ ଉପରେ ଅବକାରୀ ଶୁଳ୍କକୁ ସଂପୂର୍ଣ୍ଣ ଭାବେ ଉଠାଇ ଦିଆଯାଇଥିବାରୁ ଔଷଧର ଦାମ କମିଯିବ । ବିଶେଷତଃ ହୃଦରୋଗ, କୁଷ୍ଠ, ଯକ୍ଷ୍ମା, ମ୍ୟାଲେରିଆ, ବହୁମୂତ୍ର ଏବଂ କ୍ୟାନସର ରୋଗର ଔଷଧର ଦାମ କମିଯିବ ।

## ଦରିଦ୍ରମାନଙ୍କ ନିମନ୍ତେ ସ୍ୱତନ୍ତ୍ର ସୁବିଧା

(୧) ଦାରିଦ୍ର୍ୟ ଦୂରୀକରଣ ନିମନ୍ତେ ଏହି ବଜେଟରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଅଛି । ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ରହିଥିବା ପରିବାରମାନଙ୍କର ଆୟ ବୃଦ୍ଧି ନିମନ୍ତେ ଉଦ୍ଦିଷ୍ଟ ସମନ୍ୱିତ ଗ୍ରାମ୍ୟ ଯୋଜନା କାର୍ଯ୍ୟକ୍ରମ (ଆଇ.ଆର୍.ଡ଼ି.ପି.) ନିମନ୍ତେ ଏହି ବଜେଟରେ ୩୪୬.୨୨ କୋଟି ଟଙ୍କା ବ୍ୟୟ ବରାଦ କରା ଯାଇଅଛି ଓ ଏତଦ୍ୱାରା ୩୨ ଲକ୍ଷ ପରିବାର ଉପକୃତ ହେବେ ।

(୨) ଗ୍ରାମାଞ୍ଚଳର ଭୂମିହୀନ ଶ୍ରମିକମାନଙ୍କୁ ନିଶ୍ଚିତ କର୍ମ ଯୋଗାଣ ନିମନ୍ତେ ७୩୦ କୋଟି ଟଙ୍କା ବ୍ୟୟ ବରାଦ ହୋଇ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଅଛି ଏବଂ ଏତଦ୍ୱାରା ୩୨ କୋଟି ଶ୍ରମ-ଦିବସ ସୃଷ୍ଟି ହୋଇ ପାରିଛି ।

(୩) ଜାତୀୟ ଗ୍ରାମାଞ୍ଚଳ କର୍ମନିଯୁକ୍ତି କାର୍ଯ୍ୟକ୍ରମ ପାଇଁ ଏହି ବଜେଟରେ ୫୨୯.୪୩ କୋଟି ଟଙ୍କା ବରାଦ କରାଯାଇଅଛି ।

(୪) ଦରିଦ୍ର ଲୋକଙ୍କୁ ଶସ୍ତାରେ ଦୈନିକ ଅତ୍ୟନ୍ତ ଜିନିଷ ଆବଶ୍ୟକୀୟ ଯୋଗାଇ ଦେବା ନିମନ୍ତେ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଅଛି ।

(୫) ଭୂମିହୀନ ଶ୍ରମିକ ଓ ପରିଶ୍ରମୀ ଶ୍ରେଣୀର ଲୋକମାନଙ୍କର କୁଡ଼ିଆ ଘରକୁ ନିଆଁ ଲାଗିଯିବା ଭୟ ଦୂର କରିବା ନିମନ୍ତେ ଏକ ନୂତନ ବୀମା ଯୋଜନା ପ୍ରସ୍ତୁତ କରାଯାଇଅଛି ଏବଂ ବୀମାର ଦେୟ ପ୍ରିମିୟମ କିସ୍ତି କେନ୍ଦ୍ର ସରକାର ବହନ କରିବେ ।

(୬) ସମାଜର ଦୁର୍ବଳ ଶ୍ରେଣୀର ଲୋକଙ୍କ ନିମନ୍ତେ ବିଭିନ୍ନ ସୁବିଧା ଅନୁଦାନରେ ଯୋଗାଇ ଦେବାକୁ ୧୦୦ କୋଟି ଟଙ୍କାର ଏକ ନୂତନ ପାଣ୍ଠି ଜୀବନବୀମା ନିଗମ ଦ୍ୱାରା ସୃଷ୍ଟି କରାଯିବ ।

(୭) ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଦ୍ୱାରା ଉପକୃତ ହେଉଥିବା ପରିବାରରେ ମୁଖ୍ୟ ଲୋକଙ୍କର ଜୀବନକୁ ସରକାରୀ ଖର୍ଚ୍ଚରେ ଆକସ୍ମିକ ମୃତ୍ୟୁ ନିମନ୍ତେ ବୀମା କରାଯିବ ଏବଂ ଏହିଦ୍ୱାରା ୪୦ ଲକ୍ଷ ପରିବାର ଉପକୃତ ହେବେ ।

(୮) ଏନ୍.ଆର୍.ଇ.ପି. ଏବଂ ଆର.ଏଲ.ଇ.ଜି.ପି. କାର୍ଯ୍ୟକ୍ରମ ଅନୁଯାୟୀ ତପସିଲ ଭୁକ୍ତ ଜାତି ଏବଂ ଉପଜାତିର କ୍ଷୁଦ୍ର ଏବଂ ନାମମାତ୍ର କୃଷକମାନଙ୍କର ଉପକାର ନିମନ୍ତେ ସମସ୍ତ ଦେଶର ବିଭିନ୍ନ ସ୍ଥାନରେ ଦଶଲକ୍ଷ କୂପ ଖୋଳାଯିବ ।

(୯) ତପସିଲଭୁକ୍ତ ଜାତି ଏବଂ ଉପଜାତିର ଲୋକଙ୍କ ନିମନ୍ତେ କର୍ମସଂସ୍ଥାନ କରିବାକୁ ଏକ ଜାତୀୟ ଅର୍ଥ ଉନ୍ନୟନ ନିଗମ ଗଠିତ ହେବ ଏବଂ ଏହି ନିଗମ ଗଠନ ପାଇଁ କେନ୍ଦ୍ର ସରକାର ଏବର୍ଷ ୫୮ କୋଟି ଟଙ୍କା ଅନୁଦାନ ଦେଇଛନ୍ତି ।

## ଶ୍ରମିକମାନଙ୍କ ନିମନ୍ତେ ସ୍ୱତନ୍ତ୍ର ସୁବିଧା

(୧) କଳକାରଖାନା ମାନଙ୍କରେ କାମକରୁଥିବା ଶ୍ରମିକମାନେ କଳକାରଖାନାର ପରିଚାଳନାରେ ଭାଗ ନେବାକୁ କେନ୍ଦ୍ର ସରକାର ଉତ୍ସାହ ଦେଉଛନ୍ତି । ଏହାର ଏକ ଉତ୍କୃଷ୍ଟ ଉପାୟ ହେଉଛି ଶ୍ରମିକମାନଙ୍କୁ କଳକାରଖାନାର ମୂଳଧନର ଅଂଶ କ୍ରୟ କରିବାକୁ ସୁବିଧା ଦେବା । ଏହି ଅଂଶ କ୍ରୟ କରିବାକୁ ବ୍ୟାଙ୍କମାନେ ସୁବିଧାରେ ଋଣ ଯୋଗାଇ ଦେବେ ଏବଂ ଖର୍ଚ୍ଚର ଯେଉଁ ଅଂଶ କମ୍ପାନୀମାନେ ବହନ କରିବେ, ସେହି ଅଂଶ ଉପରେ ଟିକସ ଲାଗୁ ହେବ ନାହିଁ ।

## ଏ ଟଙ୍କା କେଉଁଠୁ ଆସିବ ?

ସମସ୍ତଙ୍କର ସୁବିଧା ତଥା ଦେଶରକ୍ଷା ବ୍ୟୟଭାର ବ୍ୟତୀତ ସରକାରଙ୍କ ରହିଥିବା ସରକାରୀ ଋଣ, ତାର କର୍ମଚାରୀଙ୍କ କ୍ରମବର୍ଦ୍ଧିଷ୍ଣୁ ଦରମା, ମହଙ୍ଗାଭତ୍ତା, ଉପଖର୍ଚ୍ଚ ଇତ୍ୟାଦି ତୁଲାଇବାକୁ ଏହି ବର୍ଷ ଗତବର୍ଷ ଅପେକ୍ଷା ୧୩,୨୨୨ କୋଟି ଟଙ୍କା ଅଧିକା ଆୟ କରିବାକୁ ହେବ । ଭାରତର ମୋଟ ଆୟ ଶତକଡ଼ା ୨୨ ଭାଗ ଅବକାରୀ ଶୁଳ୍କ ଓ ଶତକଡ଼ା ୧୯ ଭାଗ ବହିଃ ଶୁଳ୍କରୁ ମିଳିଥାଏ, ଯାହାପର ଶତକଡ଼ା ୪ ଭାଗ ବିଦେଶରୁ ଋଣ ଆକାରରେ ମିଳିଥାଏ । ତେଣୁ ଏହି ଅଧିକା ଆୟ ବିଶେଷତଃ ଅବକାରୀ ଶୁଳ୍କ, ବହିଃ ଶୁଳ୍କ ଏବଂ ଅନ୍ୟାନ୍ୟ କରରୁ ହିଁ ମିଳିବ ଓ ଏଥି ନିମନ୍ତେ ନିମ୍ନ ଲିଖିତ ପଦକ୍ଷେପମାନ ଗ୍ରହଣ କରାଯାଇଛି ।

(୧) ଅବକାରୀ ଶୁଳ୍କର ମୌଳିକ ଅଂଶ ଉପରେ ଶତକଡ଼ା ୫ ଭାଗ ସ୍ୱତନ୍ତ୍ର ଅବକାରୀ ଶୁଳ୍କ ହିସାବରେ ଅଧିକ କର ଦେବାକୁ ପଡ଼ିବ ।

(୨) ରଙ୍ଗୀନ ଟେଲିଭିଜନ ଉପରେ ଥିବା ଅବକାରୀ ଶୁଳ୍କକୁ ୧,୭୫୦ ଟଙ୍କାରୁ ୨,୦୦୦ ଟଙ୍କାକୁ ବୃଦ୍ଧି କରାଯାଇଅଛି ।

(୩) ଶୀତତାପ ନିୟନ୍ତ୍ରିତ ଯନ୍ତ୍ରମାନଙ୍କ ଉପରେ ଥିବା ଅବକାରୀ ଶୁଳ୍କକର ବୃଦ୍ଧି କରାଯାଇଅଛି ।

(୪) କୃତ୍ରିମ ସୂତା ଭିସ୍‌କସ୍ ଫାଇବରର ଉପରେ ଅବକାରୀ ଶୁଳ୍କ କିଲୋଗ୍ରାମ ପ୍ରତି ଆଠଟଙ୍କା କରି ବୃଦ୍ଧି କରାଯାଇଅଛି ।

(୫) ୧୯୮୫-୮୬ ଠାରୁ ଦେଶରେ ମୃତ୍ୟୁ କରକୁ ଉଚ୍ଛେଦ କରି ଦିଆ ହୋଇଥିଲା । କିନ୍ତୁ ଏହି ବର୍ଷଠାରୁ ଉତ୍ତରାଧିକାରୀ କର ପ୍ରବର୍ତ୍ତ ପ୍ରଚଳିତ ହେବ ଏବଂ ଏହି କର ବାବଦରୁ ୨୩ କୋଟି ଟଙ୍କା ଆଦାୟ ହେବ ।

(୬) ପଚାଶ ହଜାର ଟଙ୍କାରରୁ ଊର୍ଦ୍ଧ୍ୱ ବାର୍ଷିକ ଆୟ କରୁଥିବା ବ୍ୟକ୍ତିମାନେ ସେମାନଙ୍କ ଆୟ ଉପରେ ନିର୍ଦ୍ଧାରିତ ଆୟକରର ଶତକଡ଼ା ୫ ଭାଗ ଅଧିକା କର ଦେବେ ।

(୭) ସଂପଦ କର ଉପରେ ଏବର୍ଷ ଶତକଡ଼ା ୧୦ ଭାଗ ଅତିରିକ୍ତ ମହୁଡ଼ି କର ଦେବାକୁ ପଡ଼ିବ ।

(୮) ପ୍ରତ୍ୟକ୍ଷ କରର ପରିବର୍ତ୍ତନ ଯୋଗୁଁ ଆଦାୟ ଏବଂ କ୍ଷତିକୁ ହିସାବରେ ନେଇ କେନ୍ଦ୍ରସରକାର ୬୯ କୋଟି ଟଙ୍କା ଅଧିକ ପାଇବେ । ପ୍ରତ୍ୟକ୍ଷ ଓ ପରୋକ୍ଷ କର ସାହାଯ୍ୟରେ ସର୍ବମୋଟ ପ୍ରାୟ ୬୨୫ କୋଟି ଟଙ୍କା ଅଧିକ ମିଳିବ ।

## ବଜେଟରେ ଅଣଯୋଜନା ବ୍ୟୟ

୧୯୮୬-୮୭ ତୁଳନାରେ ୧୯୮୭-୮୮ ଆର୍ଥିକ ବର୍ଷରେ ଅଣଯୋଜନା ବ୍ୟୟ ଶତକଡ଼ା ୧୬ ଭାଗ ବୃଦ୍ଧି ପାଇଥିବା ବେଳେ ଯୋଜନା ବ୍ୟୟ ଶତକଡ଼ା ୧୨ ଭାଗ ମାତ୍ର ବୃଦ୍ଧି ପାଇଅଛି । ଏହା ଉଦ୍‌ବେଗର କାରଣ ଅଟେ ।

## ମୁଦ୍ରାସ୍ଫୀତି

ବିଶ୍ୱର ଉନ୍ନତ ଦେଶମାନଙ୍କରେ ମୁଦ୍ରାସ୍ଫୀତି ଏକ ଗ୍ରହଣୀୟ ଉନ୍ନତିର ସୂଚକ ଧରାଯାଇଛି । ମୁଦ୍ରାସ୍ଫୀତି ନିୟନ୍ତ୍ରିତ ହୋଇ ପାରିଲେ ଦେଶର ଅର୍ଥନୀତିର ଅଭିବୃଦ୍ଧି କରାଇଥାଏ । କିନ୍ତୁ ନିୟନ୍ତ୍ରଣ ବାହାରକୁ ଚାଲିଗଲେ ମୁଦ୍ରାସ୍ଫୀତି ଦେଶକୁ କ୍ରମେ ଧ୍ୱଂସ ମୁଖକୁ ଅତିରେ ଟାଣି ନିଏ । ତେଣୁ ଅର୍ଥନୀତି ବେତ୍ତାମାନଙ୍କୁ ମୁଦ୍ରାସ୍ଫୀତି କେତେ ପରିମାଣରେ ହେଲେ ଦେଶର ସାମୂହିକ ଉନ୍ନତି ହେବ ସେଥିପ୍ରତି ଦୃଷ୍ଟି ଦେଇ ସ୍ଥିର ନୀତି କରିବାକୁ ପଡ଼ିବ ।

ଏହି ବଜେଟରେ ନିଅଣ୍ଟ ପରିମାଣ ୭,୪୮୪ କୋଟି ଟଙ୍କା । ଆଗାମୀ ବର୍ଷ ପାଣିପାଗ ଅବସ୍ଥା ଭଲ ହେଲେ ଏହି ନିଅଣ୍ଟ ପରିମାଣ ବହୁ ପରିମାଣରେ କମିଯାଇ ପାରିବ । ତେଣୁ ଅଧିକା ମୁଦ୍ରା ପ୍ରଚଳନ କରିବାକୁ ଆବଶ୍ୟକତା ରହିଥିଲେ ମଧ୍ୟ, କୃଷି ଏବଂ ଶିଳ୍ପ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧି ଯୋଗୁଁ, ଏହାର ମାତ୍ରା ନିୟନ୍ତ୍ରଣ ବାହାରକୁ ଯିବ ନାହିଁ ବୋଲି ଆଶା କରାଯିବା ସ୍ୱାଭାବିକ ଏହି ବର୍ଷର ମୁଦ୍ରାସ୍ଫୀତି ଏକକ ସଂଖ୍ୟା ଭିତରେ ରହିବା ନିଶ୍ଚିତ ।

## ସାମାଜିକ ନ୍ୟାୟ

ଏହି ବର୍ଷ ଆଗତ କରାଯାଇଥିବା ବଜେଟ କୃଷକ ଏବଂ ଗ୍ରାମମାନଙ୍କ ନିମନ୍ତେ ଏକ ଅପୂର୍ବ ସୁଯୋଗ ଆଣି ପାରିଛି । ଗ୍ରାମ୍ୟ ସମବାୟ ସଂଗଠନ ଏବଂ କୃଷକମାନଙ୍କର ଉନ୍ନତି ନିମନ୍ତେ ଏହି ବଜେଟରେ ଅନେକ ନୂତନ ସୁବିଧା ଦିଆଯାଇଅଛି । ଏହି ବଜେଟରେ ଲକ୍ଷ୍ୟ ହେଉଛି କୃଷିର ଉନ୍ନତି ଏବଂ କୃଷକ, ଶ୍ରମିକ ତଥା ଦାରିଦ୍ର୍ୟ ନିପୀଡ଼ିତ ଜନସାଧାରଣଙ୍କର ସମ୍ୟକ୍ ଉନ୍ନତି ଓ ବେକାର ସମସ୍ୟାର ଆଂଶିକ ସମାଧାନ । ଏହାହିଁ ସାମାଜିକ ନ୍ୟାୟ, ଏହାହିଁ ଭାରତୀୟ ସାମ୍ୟବାଦର ମୌଳିକ ବିଚାର ଧାରା । ଏହା ଆମର ଇତିହାସ, ଆମର ସଂସ୍କୃତି ଏବଂ ଆମର ବର୍ତ୍ତମାନକୁ ନେଇ ଗଠିତ । ଏବର୍ଷର ବଜେଟ ଭାରତୀୟ ସାମ୍ୟବାଦକୁ ସାକାର କରିବା ନିମନ୍ତେ ଏକ ସଫଳ ପ୍ରୟାସ ।

ଅଧ୍ୟାପିକା,
ଶୈଳବାଳା ମହିଳା କଲେଜ
କଟକ



ରସାଲପୁରରୁ ଇଞ୍ଚୁଡ଼ିକୁ ଯାଉଥିବା ଐତିହାସିକ ଦାଣ୍ଡି ପଦଯାତ୍ରାରେ ମୁଖ୍ୟମନ୍ତ୍ରୀ, ରାଜସ୍ୱ ମନ୍ତ୍ରୀ, ଶିକ୍ଷା ମନ୍ତ୍ରୀ ଓ ଶ୍ରମ ମନ୍ତ୍ରୀ ।



କେନ୍ଦ୍ର ପର୍ଯ୍ୟଟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗିରିଧର ଗୋମା
ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ସହିତ ଆଲୋ




ଭୁବନେଶ୍ୱରରେ ଅନୁଷ୍ଠିତ ଗ୍ରନ୍ଥମେଳାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ

ରାଜଧାନୀ ସତ୍‌ସଙ୍ଗ ବିହାରରେ
ଅନୁକୂଳଚନ୍ଦ୍ର ଶତବାର୍ଷିକୀ







ବିଧ୍ୱସ୍ତ ବିମାନର ବିଭୀଷିକାଗ୍ରସ୍ତ ମଙ୍ଗେଶ୍ୱର ଇଲାକାରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ଦ୍ୱାରା ଭୁବନେଶ୍ୱରରେ କର୍ଣ୍ଣାଟକ ସାଂସ୍କୃତିକ ଉତ୍ସବ ଉଦ୍‌ଘାଟନ



ରାଜ୍ୟପାଳ ଶ୍ରୀ ପାଣ୍ଡେଙ୍କ ଦ୍ୱାରା ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ ପ୍ରଦର୍ଶନୀ ଉଦ୍‌ଘାଟନ






ଷ୍ଟେଟ୍ କାଉନ୍‌ସିଲ୍‌ର କର୍ମଶାଳା ଉଦ୍‌ଘାଟନ ଅବସରରେ ମୁଖ୍ୟମନ୍ତ୍ରୀଙ୍କ ଅଭିଭାଷଣ

''କମଳ କଳାପୀଠ'' ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ





ଅର୍ଥ ଓ ବାଣିଜ୍ୟ ମନ୍ତ୍ରୀ ଏନ୍.ଡ଼ି. ତିୱାରୀଙ୍କ ଦ୍ୱାରା ଭୁବନେଶ୍ୱରରେ ଅର୍ବାନ୍ କୋଅପରେଟିଭ୍ ବ୍ୟାଙ୍କ ଉଦ୍‌ଘାଟନ

## ପ୍ରାତଃ ସ୍ମରଣୀୟ

# କୃଷ୍ଣଚନ୍ଦ୍ର ଗଜପତି

ଡା: ସତ୍ୟନାରାୟଣ ରାଜଗୁରୁ

(ଓଡ଼ିଶା ପ୍ରଦେଶ ଗଠନର ଏକ ଲୁପ୍ତ ଅଧ୍ୟାୟ)

ସ୍ୱାଧୀନ ଓଡ଼ିଶାର ମହାରାଜା ମୁକୁନ୍ଦ ଦେବଙ୍କ ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ଆତତାୟୀଙ୍କ ହସ୍ତରେ ମୃତ୍ୟୁପରେ ଓଡ଼ିଶାର ସୌଭାଗ୍ୟ-ରବି ଅସ୍ତମିତ ହେଲେ । ବଙ୍ଗୀୟ ପଠାଣ ଓ ମରହଟ୍ଟା ଶାସନର ନିର୍ମମ ଅତ୍ୟାଚାର ହେତୁ ଓଡ଼ିଆ ଜାତି ସର୍ବସ୍ୱାନ୍ତ ହୋଇଥିଲେ । ସେମାନଙ୍କ ଦୁର୍ଦ୍ଦଶା କ୍ରମେ ଅଧିକରୁ ଅଧିକ ହେଲା ଯେତେବେଳେ ଓଡ଼ିଆଭାଷୀ ଅଞ୍ଚଳ ଖଣ୍ଡଖଣ୍ଡ ହୋଇ ବିଭିନ୍ନ ଶାସନ ସଂସ୍ଥା ଭିତରେ ଅନ୍ତର୍ଭୁକ୍ତ ହେଲା । ଚିଲିକାର ଦକ୍ଷିଣାଞ୍ଚଳ ବାହାମନୀ ସୁଲତାନ ଓ ସେଥିର ଉତ୍ତରାଞ୍ଚଳ ପଠାଣ ଓ ମରହଟ୍ଟାମାନଙ୍କ ଶାସନରେ ନିଷ୍ପୀଡ଼ିତ ହେଲା । ରାଜ୍ୟରେ ଘୋର ଅସ୍ଥିରତା ହେତୁ ଏବଂ ପ୍ରାକୃତିକ ବିପଦରେ ପଡ଼ି ଓଡ଼ିଆଜାତି ସାମାଜିକ ହୀନମନ୍ୟତାର କବଳିତ ହେଲା ।

ଦକ୍ଷିଣ-ଓଡ଼ିଶା ଗୋଲକୁଣ୍ଡା ସୁଲତାନଙ୍କ ଶାସନ ବେଳେ ଉତ୍ତର-ସରକାରର ଅନ୍ତର୍ଭୁକ୍ତ ହୋଇଥିବାରୁ ସେଥିରେ ତେଲୁଗୁଭାଷୀଙ୍କ ସଂଖ୍ୟା ଅଧିକ ହୋଇଥିଲା । ତେଣୁ ଗଞ୍ଜାମ ଓ ଭିଶାଖାପାଟଣା ଜିଲ୍ଲାର ଓଡ଼ିଆ ଜମିଦାରମାନେ ଆତ୍ମରକ୍ଷାପାଇଁ ସେଠାର ଆଦିବାସୀ କନ୍ଧ, ଶବର ପ୍ରଭୃତି ଜାତିମାନଙ୍କ ସଙ୍ଗେ ବିଦ୍ରୋହ ସୃଷ୍ଟି କରୁଥିଲେ । ପାର୍ବତୀୟ ଅଞ୍ଚଳରେ ସେହି ଦୁର୍ଦ୍ଧର୍ଷ ଓଡ଼ିଆ ଓ ଆଦିବାସୀଙ୍କ ସମ୍ମିଳିତ ବିଦ୍ରୋହଦମନ କରିବା ଅତ୍ୟନ୍ତ କଷ୍ଟସାଧ୍ୟ ଓ ବ୍ୟୟବହୁଳ ହେବାରୁ ଏବଂ ଦାକ୍ଷିଣାତ୍ୟରେ ଇଂରାଜୀ ଓ ଫରାସୀମାନଙ୍କ ସାମରିକ ଶକ୍ତିର ପ୍ରସାର ହେତୁ ଉତ୍ତର-ସରକାର ଇଂରାଜୀମାନଙ୍କ ଶାସନାଧୀନ ହେଲା ।

୧୭୬୮ ସାଲରେ ମି. କଟସ୍ ଫୋର୍ଡ (Mr. Cots Ford)ଙ୍କୁ ଗଞ୍ଜାମର ଶାସକରୂପେ ନିଯୁକ୍ତ କରାଗଲା । ବୈଦେଶିକ ଓ ବିଧର୍ମୀ ସରକାରଙ୍କ ଅଧୀନତା ସ୍ୱୀକାର ନ କରି ଓଡ଼ିଆ ଜମିଦାରମାନେ ବହୁକାଳ ବ୍ୟାପୀ ବିଦ୍ରୋହ ଚଳାଇଲେ । 'କଣ୍ଟକେନୈବ କଣ୍ଟକମ୍' ନୀତିରେ ବିଦ୍ରୋହୀ ଓଡ଼ିଆ ରାଜାମାନଙ୍କ ବିରୁଦ୍ଧରେ ଅନୁଗତ ତେଲୁଗୁ ରାଜାଙ୍କୁ ଇଂରାଜୀମାନେ ନିଯୁକ୍ତ କଲେ । ବିଜୟନଗରର ରାଜା ସୀତାରାମ ରାଜୁଙ୍କୁ କେତେକ ସୁବିଧା ଦେଇ ଇଂରାଜୀଙ୍କ ଏଜେଣ୍ଟ ରୂପେ ନିଯୁକ୍ତି କରାଗଲା । ସେ ମଧ୍ୟ ଏହା ଚାହୁଁଥିଲେ । କାରଣ ପଡ଼ୋଶୀ ପାରଳା-ଖେମୁଣ୍ଡି ଓ ଗଞ୍ଜାମର ଅନ୍ୟାନ୍ୟ ଓଡ଼ିଆ ଜମିଦାରଙ୍କଠାରୁ କେତେକ ଅଧିକ ସୁବିଧା ପାଇବା ପାଇଁ ସୀତାରାମ ରାଜୁଙ୍କ ପ୍ରବଳ ଇଚ୍ଛାଥିଲା । ପାରଳାର ଗଜପତି ଜଗନ୍ନାଥ ନାରାୟଣ ଦେବଙ୍କ ସଙ୍ଗେ ଯୁଦ୍ଧ କରି ଥରେ ସେ ପରାସ୍ତ ହୋଇଥିଲେ । ଏଣୁ ଇଂରାଜୀଙ୍କ ସାହାଯ୍ୟରେ ନାରାୟଣ ଦେବଙ୍କୁ ପରାସ୍ତ କରିବା ସକାଶେ ସେ ମି: କାଟସ୍ ଫୋର୍ଡଙ୍କୁ ଅନୁରୋଧ କଲେ । ଅବିଳମ୍ବେ ତାଙ୍କ ପ୍ରାର୍ଥନା ମଞ୍ଜୁର ହେଲା । କର୍ଣ୍ଣେଲ୍ ପୀଚ୍ (Colonel Peach)ଙ୍କ ଅଧ୍ୟକ୍ଷତାରେ ବନ୍ଧୁକଧାରୀ ଇଂରାଜୀ ସୈନ୍ୟ ନାରାୟଣ ଦେବଙ୍କ ଜେଲ୍ମୁର ଦୁର୍ଗ ଅବରୋଧ କଲେ । ସେଥିରେ ପାରଳାର ପାଇକମାନେ ବନ୍ଧୁକ ଓ ତୋପ ସମ୍ମୁଖରେ ତିଷ୍ଠି ପାରିଲେ ନାହିଁ । ତେଣୁ ପାରଳାର କେତେକ ଅଞ୍ଚଳ ବଂଶଧାରାର ଦକ୍ଷିଣଭାଗ ବିଜୟନଗର ରାଜାଙ୍କ ଏଷ୍ଟେଟ୍‌ରେ ମିଶିଗଲା । ତଦବଧି ଓଡ଼ିଆମାନେ ଶତ୍ରୁ ଓ ତେଲୁଗୁମାନେ ଇଂରାଜୀଙ୍କ ମିତ୍ର ରୂପେ ବ୍ୟବହୃତ ହେଲେ । ବିଶେଷତଃ ଖ୍ରୀଷ୍ଟ : ୧୮ଶ ଶତାବ୍ଦୀରେ ଇଂରାଜୀଙ୍କ ଶାସନ-କେନ୍ଦ୍ର ସୁଦୂର ମାନ୍ଦ୍ରାଜରେ ରହିଥିବାରୁ ଗଞ୍ଜାମର ଓଡ଼ିଆମାନଙ୍କୁ କୌଣସି ପ୍ରଶାସନିକ ସୁବିଧା ମିଳିଲା ନାହିଁ । ଓଡ଼ିଆ ଭାଷାକୁ ମଧ୍ୟ ମାନ୍ଦ୍ରାଜରେ ସ୍ୱୀକୃତି ଦିଆଗଲା ନାହିଁ । କୋର୍ଟ—କଚେରୀମାନଙ୍କରେ ତେଲୁଗୁ ଭାଷା ପ୍ରଚଳିତ ହେଲା । ତେଣୁ ଓଡ଼ିଆ ଜମିଦାରମାନେ ଅନିଚ୍ଛାସତ୍ତ୍ୱେ ତେଲୁଗୁ ଓକିଲ ଓ ଶିକ୍ଷିତ ଲୋକଙ୍କୁ ଦକ୍ଷିଣରୁ ଅଣାଇ ନିଯୁକ୍ତ କଲେ । କ୍ରମେ ସେମାନଙ୍କ ସଂଖ୍ୟା ବିଭିନ୍ନ ସାମାଜିକ କ୍ଷେତ୍ରରେ ପ୍ରସାରିତ ହେଲା । ବାଣିଜ୍ୟ ବ୍ୟବସାୟରୁ ଆରମ୍ଭ କରି ଗ୍ରାମାଞ୍ଚଳରେ ଋଣୀରୂପେ ସ୍ଥାୟୀ ଅଧିବାସ କରିବାକୁ ସେମାନେ ଯଥେଷ୍ଟ ସୁବିଧା ପାଇଲେ ।

୧୮୦୩ ମସିହାରେ ଚିଲିକାର ଉତ୍ତରାଞ୍ଚଳ ଇଂରାଜୀମାନଙ୍କର ଶାସନାଧୀନ ହେଲା । ତା ପୂର୍ବରୁ ଅର୍ଥାତ୍ ୧୭୪୦ ଖ୍ରୀଷ୍ଟାବ୍ଦରୁ ଆରମ୍ଭ କରି ଓଡ଼ିଶା ଇଂରାଜୀଙ୍କ ହସ୍ତଗତ ହେବା ପର୍ଯ୍ୟନ୍ତ ଟିକସ ବାବଦରେ ଏବଂ ଅନ୍ୟାନ୍ୟ ସୂତ୍ରରେ ପ୍ରଚୁର ଧନ ଓଡ଼ିଆମାନଙ୍କଠାରୁ ମରହଟ୍ଟା ସୁବେଦାରମାନେ ସଂଗ୍ରହ କରୁଥିଲେ । ଓଡ଼ିଶା ଜଙ୍ଗଲରୁ ବହୁ ସଂଖ୍ୟାରେ ହାତୀ ଧରା ହୋଇ ନାଗପୁର ଭୋଁସଲାଙ୍କଠାକୁ ରପ୍ତାନୀ କରାଯାଉଥିଲା । ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ ଯାଉଥିବା ଯାତ୍ରୀମାନଙ୍କଠାରୁ ଟିକସ ସଂଗୃହୀତ ହେଉଥିଲା । ରାଜା—ଜମିଦାରଙ୍କଠାରୁ ପ୍ରଚୁର ପରିମାଣରେ କର ଓ ସଲାମି ବାବଦରେ ଅର୍ଥ ସଂଗ୍ରହ କରାଯାଉଥିଲା । ଏହିସବୁ ଶାସନିକ ବାବଦ ଧନରେ ସାଧାରଣ ପ୍ରଜାଙ୍କ ଉନ୍ନତି କିମ୍ବା କୃଷି ଓ ଶିଳ୍ପର ପ୍ରସାର କ୍ଷେତ୍ରରେ କିଛି ବ୍ୟୟ କରଯାଉନଥିଲା । ଏଣୁ ସମଗ୍ର ଓଡ଼ିଶାରେ ଦାରିଦ୍ର୍ୟଜନିତ ଦୁଃଖରେ ପ୍ରଜାମାନେ ଜୀବନଯାପନ କରୁଥିଲେ । ମରହଟ୍ଟା ଶାସକ-

ମାନେ ହିନ୍ଦୁ ଧର୍ମ ବିରୁଦ୍ଧରେ କିଛି ଦୁର୍ନୀତି ନକରୁଥିଲେ ସୁଦ୍ଧା ଦେଶରେ ଶିକ୍ଷାର ମାନ ବଢ଼ାଇବା ଓ ଲୋକଙ୍କ ସ୍ୱାସ୍ଥ୍ୟ ସୁରକ୍ଷା ପାଇଁ କୌଣସି ବ୍ୟବସ୍ଥା କରି ନ ଥିଲେ । ଏହା ଫଳରେ ବନ୍ୟା, ମରୁଡ଼ି, ମହାମାରୀ, ବାତ୍ୟା ପ୍ରଭୃତି ପ୍ରାକୃତିକ ଦୁର୍ବିପାକ ହେତୁ ଓଡ଼ିଶାର ଜନକ୍ଷୟ ଘଟୁଥିଲା । ଶାସନ ପଦ୍ଧତି ଆଦୌ ଶୃଙ୍ଖଳିତ ନଥିଲା । ରାଜ କର୍ମଚାରୀଙ୍କ ଦୁରପନେୟ ଅତ୍ୟାଚାରରେ ସାଧାରଣ ପ୍ରଜା ସର୍ବଦା ଶଙ୍କିତ ହେଉଥିଲେ ।

ଇଂରାଜୀ ଶାସନ କଠୋର ଓ ନିଷ୍ଠୁର ହୋଇ ସୁଦ୍ଧା ଆଇନ୍ ଶୃଙ୍ଖଳାକୁ ମାନି ଚଳୁ ଥିବାରୁ ଓଡ଼ିଶାରେ କେତେକ ପରିମାଣରେ ଲୋକେ ଆଶ୍ୱସ୍ତ ହେଲେ । ତତ୍ପର ଇଂରାଜମାନେ ସ୍ୱାଧୀନତା ପାଇଁ ଓଡ଼ିଶାରେ ବିଦ୍ରୋହ ସୃଷ୍ଟି କରିଥିବା ଓଡ଼ିଆମାନଙ୍କୁ ଆଦୌ ବିଶ୍ୱାସ କରି ପାରିଲେ ନାହିଁ । ଖୋର୍ଦ୍ଧାର ପାଇକ-ବିଦ୍ରୋହ ( ଖ୍ରୀ ୧୮୧୭-୧୬) ସଙ୍ଗେ ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱ ପୁଣି ଠାକୁର ରାଜାଙ୍କ ପ୍ରତି ଅନ୍ୟାନ୍ୟ ରାଜା ଓ ଜମିଦାରମାନଙ୍କ ଆନୁଗତ୍ୟ ଇଂରାଜଙ୍କ ଅବିଶ୍ୱାସ ଅଧିକ ବଢ଼ାଇଥିଲା । ଗଞ୍ଜାମର ଓଡ଼ିଆମାନେ ମାନ୍ଦ୍ରାଜରେ ଯେପରି ଅବହେଳିତ ହୋଇ ତେଲୁଗୁମାନଙ୍କ ଦ୍ୱାରା ସାମାଜିକ ସ୍ତରରେ ଶୋଷିତ ହେଉଥିଲେ, ଉତ୍କଳରେ ସେପରି ଶାସନ-ହେତୁ ଉଚ୍ଚିକତାରେ ରହିଥିବାରୁ ସେଠାର ଶିକ୍ଷିତ ବଙ୍ଗାଳୀମାନେ ଓଡ଼ିଶା ଶାସନ କଳରେ ନିଯୁକ୍ତ ହୋଇ ସାମାଜିକ ସ୍ତରରେ ଓଡ଼ିଆଙ୍କୁ ଅବହେଳିତ କରୁଥିଲେ । ଓଡ଼ିଶାର ବହୁ ଜମିଦାରୀ ଅଞ୍ଚଳ ପର୍ଯ୍ୟାପ୍ତ ଆଇନ୍ ବଳରେ କଲିକତାରେ ନିଲାମ ହେବାରୁ ସେଥିର ସୁଯୋଗ ନେଇ ପ୍ରଚୁର ଭୂସଂପଦ ସେମାନେ ଅଳ୍ପ ମୂଲ୍ୟରେ କ୍ରୟ କଲେ । ଓଡ଼ିଆଙ୍କୁ ବଙ୍ଗ ଭାଷାରେ ଶିକ୍ଷା ଦେବାର ବ୍ୟବସ୍ଥା କରାଗଲା । କାରଣ ସେମାନେ ପ୍ରଚାର କଲେ ଯେ ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ, ତାହା ବଙ୍ଗଳାର ଏକ 'ଉପଭାଷା' ମାତ୍ର । ପୁରୀ, କଟକ ଓ ବାଲେଶ୍ୱରରେ ଏଥିର ପ୍ରତିବାଦ ହେଲା, ଯେତେବେଳେ କେତେକ ଚିନ୍ତାଶୀଳ ଓଡ଼ିଆ ସେଥିର ଦୀର୍ଘ ପ୍ରସାରୀ ପରିଣାମ ବୁଝିବାକୁ ସମର୍ଥ ହେଲେ ।

ଓଡ଼ିଆଙ୍କ ଜୀବନ ଧାରଣ ଉପରେ ପ୍ରକୃତିର ଶେଷ ପ୍ରହାର ପଡ଼ିଲା ୧୮୬୮ ସାଲର ଭୟଙ୍କର ଦୁର୍ଭିକ୍ଷ । ତାହା "ନଅଙ୍କ ଦୁର୍ଭିକ୍ଷ" ନାମରେ ଅଖ୍ୟାତ ହୁଏ । ସେଥିରେ ଓଡ଼ିଶାରୁ ପ୍ରାୟ ଏକତୃତୀୟାଂଶ ଜନତା ଶୂନ୍ୟ ହୋଇଗଲେ । ସରକାରଙ୍କ ଅବହେଳା ଓ ଭୁଲ ଧାରଣା ହେତୁ ଲୋକଙ୍କୁ ଖାଦ୍ୟ ସାମଗ୍ରୀ ଯୋଗାଇ ଦିଆ ଗଲାନାହିଁ । ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଏହା ଏକ ଆନ୍ଦୋଳନ ସୃଷ୍ଟି କଲା । ଇଂରାଜମାନଙ୍କ ମଧ୍ୟରେ କେତେକ ସହୃଦୟ ଓ ସାଧୁ ଲୋକ ଥିଲେ । ସେମାନେ ଓଡ଼ିଶାରେ ସେହି ଦୁର୍ବିପାକ ଶୋଚନୀୟ ଅବସ୍ଥାର ପ୍ରତିକ୍ରିୟା ଦାବୀ କଲେ ।

୧୮୭୭ ସାଲରେ ଗଞ୍ଜାମର District Manual ଲେଖିବାକୁ ଯାଇ ମାଲ୍ଟବି (Maltby) ଓଡ଼ିଆଜାତି ସଂପର୍କରେ ଏଥି ପୂର୍ବେ (୧୮୦୦) ଗଞ୍ଜାମ କଲେକ୍ଟର ମି. ବ୍ରାଉନ୍ (Mr. Brown) ଲେଖିଥିବା ଏକ ରିପୋର୍ଟ ଉଦ୍ଧାର କରିଥିଲେ, ଯଥା:-

Once a most flourishing and delightful of Country reduced to nearly the last ebb of a depopulated and frightful waste Capable of recovery however from the brink of utter dilapi dation and ruin. and likly by a wise and honourable system of government to rise superior to its apparent destiny.

ଅର୍ଥାତ୍ ଯେଉଁ ଅଞ୍ଚଳ ଦିନେ ଅତି ସୁନ୍ଦର ଓ ସୌଭାଗ୍ୟ ମଣ୍ଡିତ ହୋଇଥିଲା, ଏବେ ତାହା ଅତି ଶୋଚନୀୟ ଭାବେ ଦୁର୍ଦ୍ଦଶାର ଶେଷ ସୀମାରେ ପହଞ୍ଚି ଗଲାଣି, ଯେଉଁଠୁ ତାକୁ ଉଦ୍ଧାର କରିବା ଏବେ ମଧ୍ୟ ସମ୍ଭବ । ଯେଣୁ ମହାମାନ୍ୟ ସରକାର ଯଦି ତାକୁ ତାର ମୌଳିକ ଉତ୍ଥାନ ପାଇଁ ବ୍ୟବସ୍ଥା କରନ୍ତି ତେବେ ଏ ଅଞ୍ଚଳଟି ପୁଣି ତାର ପୂର୍ବ ଅବସ୍ଥା ଫେରି ପାଇବ ।

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଯେଉଁ ଆତଙ୍କ ସୃଷ୍ଟି ହୋଇଥିଲା ଏବଂ ଓଡ଼ିଆ ଭାଷାକୁ ପ୍ରତିବାଦରୁ ବିଲୁପ୍ତ କରିବା ଚେଷ୍ଟା ଚାଲିଥିଲା, ସେଥିରେ ଇଂରାଜୀ ସରକାରଙ୍କ କେତେକ ଉଚ୍ଚ କର୍ମଚାରୀ ସହାନୁଭୂତି ଜ୍ଞାପନ ନକରି ରହି ପାରିଲେ ନାହିଁ । ସେମାନଙ୍କ ସାହାଯ୍ୟରେ ସର୍ବ ପ୍ରଥମେ ଓଡ଼ିଶାର ଏକପାଟେ ଗଞ୍ଜାମ ଓ ଅନ୍ୟପାଟେ ବାଲେଶ୍ୱରରେ ଓଡ଼ିଆ ଭାଷାର ସୁରକ୍ଷା ନିମନ୍ତେ ଆନ୍ଦୋଳନ ସୃଷ୍ଟି ହେଲା ।

୧୮୬୮ ସାଲର ନ-ଅଙ୍କ ଦୁର୍ଭିକ୍ଷ ପରେ ସାର ଷ୍ଟାଫୋର୍ଡ ନର୍ଥକୋଟ (Sir Stafford North Cote) ସରକାରଙ୍କଠାରେ ଏକ ପ୍ରସ୍ତାବ ଉପସ୍ଥାପିତ କରି ଜଣାଇଲେ ଯେ ବଙ୍ଗ ପ୍ରଦେଶରୁ ସ୍ୱତନ୍ତ୍ର ଓଡ଼ିଶା ଓ ଆସାମକୁ ଅଲଗା କରିଦେବା ଆବଶ୍ୟକ । ଏଥିରେ ବିବ୍ରତ ହୋଇ ବଙ୍ଗାଳୀମାନେ ଓଡ଼ିଆକୁ ବଙ୍ଗଳାର ଏକ 'ଉପଭାଷା' ବୋଲି ସାବ୍ୟସ୍ତ କରିବାକୁ ଚେଷ୍ଟା କଲେ । ତେଣୁ ବାଲେଶ୍ୱରରୁ ସର୍ବ ପ୍ରଥମେ ରାଜା ବୈକୁଣ୍ଠନାଥ ଦେ ଓ ଗୌରୀଶଙ୍କର ରାୟ ସେଥିରେ ପ୍ରତିବାଦ କରିବା ଫଳରେ ସେଠାରେ ଖ୍ରୀଷ୍ଟିଆନ ମିସିନାରୀଙ୍କ ଉଦ୍ୟମରେ ଏକ ଛାପାଖାନା ପ୍ରତିଷ୍ଠିତ ହେଲା । ଓଡ଼ିଶାର ସ୍ୱନାମଧନ୍ୟ ସାହିତ୍ୟିକ ଓ କବି ଫକିର ମୋହନ ସେନାପତି, ମଧୁସୂଦନ ରାଓ, ରାଧାନାଥ ରାୟ, ରାମଶଙ୍କର ରାୟ ପ୍ରଭୃତି ଉଚ୍ଚକୋଟୀର ଓଡ଼ିଆ ଗଦ୍ୟ ଓ ପଦ୍ୟ ସାହିତ୍ୟ ପ୍ରକାଶ କରିଥିଲେ । ସେଥିରୁ ସ୍ପଷ୍ଟ ପ୍ରମାଣିତ ହେଲା ଯେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଓ ଗୌରବ କ୍ଷୁର୍ଣ୍ଣ କରିବା ସମ୍ଭବ ନୁହେଁ ।

ଗଞ୍ଜାମରେ ମଧ୍ୟ ଭାଷା-ଆନ୍ଦୋଳନ ବହୁକାଳ ପୂର୍ବରୁ ସୃଷ୍ଟି ହୋଇଥିଲା । ଗଞ୍ଜାମରେ ମହାକବି ଉପେନ୍ଦ୍ରଭଞ୍ଜ, କବି ସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ ପଟ୍ଟନାୟକ, ରଘୁନାଥ ପରୀକ୍ଷା ପ୍ରଭୃତିଙ୍କ କାବ୍ୟ କବିତାର ପ୍ରସାର ପରେ ପାରଳାଖେମୁଣ୍ଡିରେ ରାଜଭ୍ରାତା ପଦ୍ମନାଭ ଦେବ ଓ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଉଦ୍ୟମରେ ଗଦ୍ୟ ସାହିତ୍ୟର ବିକାଶ ସମଗ୍ର ଓଡ଼ିଶାରେ ଏକ ଅଭିନବ ଜାଗରଣ ସୃଷ୍ଟି କଲା । ପାରଳାଖେମୁଣ୍ଡିରେ "ଉତ୍କଳ-ହିତୈଷିଣୀ-ସମାଜ" ପ୍ରତିଷ୍ଠା ହେତୁ ସାହିତ୍ୟ ଓ ରାଜନୀତି କ୍ଷେତ୍ରରେ ଗଞ୍ଜାମର ଚିନ୍ତାଶୀଳ ଲୋକେ ଓଡ଼ିଆ ଭାଷାର ସୁରକ୍ଷା ସଙ୍ଗେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଗୁଡ଼ିକ ଏକତ୍ରିତ କରି ଓଡ଼ିଆଜାତିର ଜାଗରଣ ପନ୍ଥା ପରିଷ୍କାର କରିବା ସକାଶେ ଆନ୍ଦୋଳନ ସୃଷ୍ଟି କଲେ । ସେଥିରେ ଗଞ୍ଜାମର ଜମିଦାର ଓ ଶିକ୍ଷିତ ସଂପ୍ରଦାୟ ଉତ୍ସାହ ସହକାରେ ଲାଗି ପଡ଼ିଲେ । ଏହା ଫଳରେ ଓଡ଼ିଶାର କମିସନର ମି: କୁକ୍ (Mr. Cook) ୧୮୯୪-୯୫ରେ ତାଙ୍କର ବାର୍ଷିକ ରିପୋର୍ଟରେ ଲେଖିଲେ ଯେ, ଓଡ଼ିଶା ଡ଼ିଭିଜନରେ ଗଞ୍ଜାମ ଓ ସମ୍ବଲପୁର ଯୋଗକରି ସେଥିରେ ପରିସର ବଢ଼ାଇବା ଉଚିତ । ତା'ହେଲେ ପ୍ରଶାସନିକ କ୍ଷେତ୍ରରେ ତାହା ଏକ ଭାଷା ଭାଷୀ ଅଞ୍ଚଳ ହୋଇ ରହିବ ।

ଏହା ପରେ କଟକରେ ଓ ଗଞ୍ଜାମରେ ଉତ୍କଳସଭା ନାମରେ ଏକ ଅନୁଷ୍ଠାନ ଗଠନ କରାଗଲା । ୧୮୯୭ ସାଲରେ କଟକର ସ୍ୱନାମଧନ୍ୟ ଜାତୀୟ ପ୍ରେମୀ ମଧୁସୂଦନ ଦାସ (ମିଷ୍ଟର ଦାସ) ସେହି ସଭା ପକ୍ଷରୁ ଲଣ୍ଡନ ଯାତ୍ରା କଲେ ଓ ସେଠାରେ ସେକ୍ରେଟାରି ଅଫ୍ ଷ୍ଟେଟ୍ ଲର୍ଡ ଜର୍ଜ ହେମିଲଟନ୍ ( Lord George Hamilton ) ଙ୍କୁ ସାକ୍ଷାତ କରି ମି: କୁକ୍‌ଙ୍କ ସୁପାରିଶ ପ୍ରତି ତାଙ୍କ ଦୃଷ୍ଟି ଆକର୍ଷଣ କଲେ ଓ କହିଲେ ଯେ, ଓଡ଼ିଆ ଭାଷୀ ଅଞ୍ଚଳ ଗୁଡ଼ିକ ବିଭିନ୍ନ ପ୍ରଦେଶରୁ ଏକତ୍ରିତ କରି ଓଡ଼ିଆ ଜାତିର ଏକତା ସମ୍ପାଦନ କରିବା ବ୍ରିଟିସ୍ ସର୍କାରଙ୍କ ପକ୍ଷରେ ଏକ ନ୍ୟାୟୋଚିତ କାର୍ଯ୍ୟ ହେବ ଏବଂ ଓଡ଼ିଆଜାତି ଚିରକାଳ ମହାମାନ୍ୟ ସର୍କାରଙ୍କଠାରେ କୃତଜ୍ଞ ହୋଇ ରହିବେ ।

ମି: କୁକ୍‌ଙ୍କ ବାର୍ଷିକ ରିପୋର୍ଟରେ ଓଡ଼ିଶା ସଙ୍ଗେ ସମ୍ବଲପୁରର ମିଶ୍ରଣ ପ୍ରସ୍ତାବକୁ ଭିତ୍ତି କରି ସେଠାରେ ଓଡ଼ିଆ ନେତାମାନେ ଏକ ଦୀର୍ଘ ସ୍ମାରକ ପତ୍ର ମଧ୍ୟ ଭାରତର କମିଶନର ସାର ଏଣ୍ଡ୍ରୁ ଫ୍ରେଜର (Sir Andrew Fraser ) ଙ୍କ ଠାରେ ଦାଖଲ କଲେ । ତାଙ୍କ ଅନୁରୋଧ ଓଡ଼ିଆ ସମସ୍ୟା ସହାନୁଭୂତିର ସହ ସେ ଗ୍ରହଣ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । କେବଳ ପ୍ରତିଶ୍ରୁତି ନୁହେଁ, ସେ ଅବିଳମ୍ବେ ଭାଇସ୍‌ରାୟ ଲର୍ଡ କର୍ଜନ୍ (Lord Curzon) ଙ୍କ ଠାକୁ ତାଙ୍କ ସୁପାରିଶ ପଠାଇ ପ୍ରସ୍ତାବ କରିଥିଲେ ଯେ "ଓଡ଼ିଶାକୁ ଏକ ମୁଖ୍ୟ କମିଶନରଙ୍କ ପ୍ରଦେଶ ( A Chief Commissioner's Province)ରେ ପରିଣତ କରିବା ଆବଶ୍ୟକ ।

୧୯୦୨ରେ ଲର୍ଡ କାର୍ଜନ୍ ଓଡ଼ିଶା ଗସ୍ତରେ ଆସିଥିଲେ । ତାଙ୍କ ଆଗମନର ସୁଯୋଗ ନେଇ ଓଡ଼ିଶାର ନେତୃଶ୍ରେଣୀୟ ଶିକ୍ଷିତ ବ୍ୟକ୍ତି ଓ କେତେକ ରାଜା-ମହାରାଜା ମିଶି ତାଙ୍କୁ ବିପୁଳ ଅଭ୍ୟର୍ଥନା ଜ୍ଞାପନ କଲେ ଏବଂ ଓଡ଼ିଶା ଦେଶ ମିଶ୍ରଣ କରି ତାହା ଏକ ଶାସନାଧୀନ କରିବାକୁ ପ୍ରାର୍ଥନା ସହ ଏକ ସ୍ମାରକପତ୍ର ସମର୍ପଣ କଲେ । ଓଡ଼ିଶାର ଅଙ୍ଗଛେଦ ଜନିତ ଜାତୀୟ ପତନ ହୋଇଥିବା ହୃଦୟଙ୍ଗମ କରି ଭାରତର ଭାଇସ୍‌ରାୟ ସହାନୁଭୂତି ଦେଖାଇ ଫେରିଯାଇ ସେକ୍ରେଟାରୀ ଅଫ ଷ୍ଟେଟ୍ ଲର୍ଡ ଜି. ହେମିଲଟନ୍‌ଙ୍କୁ ୧୯୦୨ ଏପ୍ରିଲ ୩୦ ତାରିଖ ଦିନ ଗୋଟିଏ ଦୀର୍ଘ ପତ୍ରରେ ପ୍ରଶ୍ନ କରିଥିଲେ "ବଙ୍ଗଳା ପ୍ରଦେଶଟି ଅସ୍ୱାଭାବିକ ଭାବେ ବଢାଇ ଦିଆ ଯାଇଛି..........ଓଡ଼ିଶାର ଶାସନ କଲିକତାଠାରୁ ପରିଚାଳିତ ହେବା ଉଚିତ କି ?"

ସେବର୍ଷ ବ୍ରହ୍ମପୁରଠାରେ ଗୋଟିଏ ବିରାଟ ସଭା ଗଞ୍ଜାମର ସର୍ବପ୍ରଥମ ଗ୍ରାଜୁଏଟ୍ ଓ ସାହିତ୍ୟିକ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ସେଥିରେ ଓଡ଼ିଶାର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଯୋଗ ଦେଇଥିଲେ । ମାନ୍ଦ୍ରାଜ ସରକାରଙ୍କ ପକ୍ଷରୁ ଗଞ୍ଜାମ ଓ ବିଶାଖାପାଟଣା ଜିଲ୍ଲାର ସ୍କୁଲ ମାନଙ୍କରେ ପ୍ରାଥମିକ ସ୍ତରରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ଓଡ଼ିଆ ଭାଷାର ପ୍ରଚଳନ କରିବା, ସେ ଅଞ୍ଚଳର କୋର୍ଟ-କଚେରୀ ତଥା ଅନ୍ୟାନ୍ୟ ପ୍ରଶାସନିକ କ୍ଷେତ୍ରରେ ଓଡ଼ିଆ ଭାଷା ବ୍ୟବହାର କରିବାକୁ ସୁବିଧା ମିଳିବା ଏବଂ ଅନ୍ୟ ଭାଷାଭାଷୀଙ୍କ ପରି ନିଯୁକ୍ତି କ୍ଷେତ୍ରରେ ମଧ୍ୟ ଓଡ଼ିଆଙ୍କୁ ଗ୍ରହଣ କରିବା ସକାଶେ ସେହି ସଭାରେ ପ୍ରସ୍ତାବଗୁଡ଼ିକ ଗୃହୀତ ହୋଇଥିଲା ।

ସେଠାରେ ଖଲିକୋଟର ରାଜା ହରିହର ମର୍ଦ୍ଦରାଜଙ୍କ ପ୍ରସ୍ତାବ କ୍ରମେ ସେ ବର୍ଷ ତାଙ୍କ ସୁରମ୍ୟ ରମାପ୍ରାସାଦରେ କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ନେଇ ଏକ ଆଲୋଚନା ସଭା ଅନୁଷ୍ଠିତ ହେଲା । ସେଥିରେ ଗଞ୍ଜାମର ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସମେତ କଟକରୁ ମଧୁବାବୁଙ୍କ ଗ୍ରହଣରେ କେତେକ ଜାତୀୟ ପ୍ରେମୀ ନେତା, ଜମିଦାର ଓ ତାଙ୍କ ପ୍ରତିନିଧି ଗଡ଼ଜାତ ଅଞ୍ଚଳରୁ ନୀଳମଣି ବିଦ୍ୟାରତ୍ନ ଏବଂ ସମ୍ବଲପୁରର କେତେକ ସଭ୍ୟ ଯୋଗ ଦେଇଥିଲେ । ମଧୁବାବୁଙ୍କ ପ୍ରସ୍ତାବକ୍ରମେ ପ୍ରାକୃତିକ ଓଡ଼ିଶାର ସମସ୍ତ ଅଞ୍ଚଳରୁ ସଭ୍ୟ ସଂଗ୍ରହ କରି ଉତ୍କଳ-ସମ୍ମିଳନୀ' ଏକ ସ୍ଥାୟୀ ଅନୁଷ୍ଠାନ ଗଢ଼ିବା ଓ ସେଥିରେ ବାର୍ଷିକ ଅଧିବେଶନ ବିଭିନ୍ନ ଓଡ଼ିଆ ଭାଷୀ ଅଞ୍ଚଳରେ ଅନୁଷ୍ଠିତ ହେବା ଓ ସେଥିରେ ଓଡ଼ିଆଙ୍କ ଅଭାବ ଅସୁବିଧା ପ୍ରସଙ୍ଗ ବିଚାର କରି ପ୍ରାଦେଶିକ ସରକାରଙ୍କ ପକ୍ଷରୁ ପ୍ରତିକାର ଦାବୀ କରିବା ଏବଂ ସର୍ବୋପରି ଓଡ଼ିଶା ଦେଶ ମିଶ୍ରଣ ପାଇଁ କେନ୍ଦ୍ର ସରକାରଙ୍କ ଠାରେ ଦାବୀ ଉପସ୍ଥାପିତ କରିବା ସେହି ଆଲୋଚନାର ମୁଖ୍ୟ ବିଷୟ ହୋଇଥିଲା ।

ଏଥିର ପ୍ରାୟ ୫ ମାସ ପରେ ମଧୁବାବୁଙ୍କ ଉଦ୍ୟମରେ କଟକଠାରେ ତା ୬-୪-୧୯୦୩ ରେ ଗୋଟିଏ ସଭା ଅନୁଷ୍ଠିତ ହେଲା ସେଥିରେ ସ୍ଥିର କରାଗଲା ଯେ, ଗଞ୍ଜାମ, ବିଶାଖାପାଟଣା ଜିଲ୍ଲାର ମାଳ ଅଞ୍ଚଳ (ଜୟପୁର ଜମିଦାରୀ, ସମ୍ବଲପୁର, ଛୋଟନାଗପୁର ଓ ମେଦିନୀପୁର ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକ ଓଡ଼ିଶା ଡିଭିଜନ୍ (ପୁରୀ, କଟକ ଓ ବାଲେଶ୍ୱର ଜିଲ୍ଲାକୁ ମିଶାଇ ଦେଇ ଏକ ମୁଖ୍ୟ କମିଶନ୍ ଶାସନାଧୀନ କରି ରଖିବା ଆବଶ୍ୟକ । ଓଡ଼ିଶା-ଡିଭିଜନକୁ ବଙ୍ଗଳା ସଙ୍ଗେ ନ ମିଶାଇ ତାହା ମଧ୍ୟ ପ୍ରଦେଶ (Central Province) ସଙ୍ଗେ ସାମିଲ୍ କରିବା ଉଚିତ ବୋଲି ବାବୁ ଗୋକୁଳାନନ୍ଦ ଚଉଧୁରୀ ଯେଉଁ ଦାବୀ ଉପସ୍ଥାପିତ କରିଥିଲେ ତାହା ଖ୍ରୀଷ୍ଟିୟାନ୍ ମିଶିନରୀ ରେଭରେଣ୍ଡ୍ ଜର୍ଜ ହୋଲେଲ୍ସ୍ (Rev. George Howells) ସମର୍ଥନ କରିଥିଲେ । ତେଣୁ ତାହା ଏକ ବିବାଦୀୟ ପର୍ଯ୍ୟାୟରେ ପରିଣତ ହେଲା ।

ଲର୍ଡ କାର୍ଜନ୍‌ଙ୍କ ସରକାର ବଙ୍ଗଳା ପ୍ରଦେଶକୁ ଖର୍ବ କରି ସେଥିରୁ ଆସାମ ଓ ପୂର୍ବ ବଙ୍ଗକୁ ବିଚ୍ଛିନ୍ନ କରିବାକୁ ମସୁଧା କରିଥାନ୍ତି । ବଙ୍ଗଳା ପ୍ରଦେଶରୁ ସେଥିର ପୂର୍ବାଞ୍ଚଳ କାଟିନେବା ହେତୁ ସେଥିର ଯେଉଁ ଭୌଗୋଳିକ ଖର୍ବତା ସୃଷ୍ଟି ହେବ, ସେଥିର ପରିପୂରକ ସ୍ୱରୂପ ସମ୍ମିଳିତ ଓଡ଼ିଶା ଡିଭିଜନ୍ ଅନ୍ତର୍ଭୁକ୍ତ କରିବା ଉଚିତ ବୋଲି ଲର୍ଡ କାର୍ଜନଙ୍କର ଯେଉଁ ସଂଶୋଧିତ ପ୍ରକଳ୍ପଟି ହୋଇଥିଲା, ତାହା ହୋମ୍ ସେକ୍ରେଟେରୀ ଏଚ୍. ଏଚ୍. ରିସ୍‌ଲେ (H. H. Risley)ଙ୍କ ତା ୩-୧୨-୧୯୦୩ ପତ୍ରରେ ପ୍ରକଟିତ ହେଲା । ଲର୍ଡ କାର୍ଜନ ଓଡ଼ିଆଙ୍କ ଦୁଃଖର ଏକମାତ୍ର ପୂଜ୍ୟ ବ୍ୟକ୍ତି ବୋଲି ଅଧିକାଂଶ ଓଡ଼ିଆଙ୍କ ମୁଖରୁ ଶୁଣାଗଲା । "The Oriya Movement" ପୁସ୍ତକର ରଚୟିତା ଲେଖିଛନ୍ତି :—

"—..All honour to George Nathaniel Earl Curzon of keddleston ths great British statesman for his benevolent proposal. The Oriya community had now found a saviour whose name she will remember for ever with feelings of extreme greatfulness."

ଗଞ୍ଜାମର ଓଡ଼ିଆ-ସଭା ପକ୍ଷରୁ ଲର୍ଡ କାର୍ଜନଙ୍କୁ ୧୯୦୨ ସାଲରେ ଏକ ସୁଦୀର୍ଘ ସ୍ମାରକ ପତ୍ର ଦିଆଯାଇଥିଲା । ଓଡ଼ିଶାର ଐତିହାସିକ ବିବରଣୀ ସଙ୍ଗେ ମହାନ୍ ଓଡ଼ିଆ ଜାତିକୁ କିପରି ଛିନ୍ନ ଭିନ୍ନ କରି ତାକୁ ପଦଦଳିତ କରାଯାଇଛି, ଏବଂ ବିଭିନ୍ନ ପ୍ରଦେଶରେ ଓଡ଼ିଆମାନେ କିପରି ଲାଞ୍ଛିତ ହୋଇ ଦୁଃଖ ଯନ୍ତ୍ରଣାରେ ପଡ଼ିଛନ୍ତି, ସେଥିର ଏକ ସୁନ୍ଦର ଚିତ୍ର ସେଥିରେ ବର୍ଣ୍ଣିତ ହୋଇଥିଲା । ତେଣୁ ସେମାନଙ୍କୁ ଏକତ୍ରିତ କରି ତାଙ୍କ ପ୍ରାଚୀନ ଗୌରବ ଉଦ୍ଧାର କରିବା ଆବଶ୍ୟକ । ସଭ୍ୟତା ସମ୍ପନ୍ନ ଓ ନ୍ୟାୟ ପରାୟଣ ଇଂରାଜୀ ସର୍କାର ଏଥିର ସମୁଚିତ ପ୍ରତିକାର କରିବା ସମ୍ଭବ ବୋଲି ଓଡ଼ିଆ ଜାତି ଆଶା କରନ୍ତି ।

ବଙ୍ଗଭଙ୍ଗ ଆନ୍ଦୋଳନ କେବଳ ବଙ୍ଗାଳୀଙ୍କ ମଧ୍ୟରେ ସୀମିତ ନହୋଇ ତାହା ଭାରତର ଜାତୀୟ କଂଗ୍ରେସରେ ମଧ୍ୟ ଆଲୋଡ଼ନ ସୃଷ୍ଟି କଲା । କାରଣ ସେତେବେଳେ କଂଗ୍ରେସରେ ଅଧିକାଂଶ ଉଚ୍ଚସ୍ତର ନେତା ରୂପେ ବଙ୍ଗୀୟ ନେତାମାନେ ରହିଥିଲେ ।

ଲର୍ଡ କାର୍ଜନଙ୍କଠାରୁ ସହାନୁଭୂତି ପାଇଲା ପରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ମଧୁବାବୁଙ୍କ ଉଦ୍ୟମରେ କଟକରେ ମୟୂରଭଞ୍ଜ ମହାରାଜା ପୂର୍ଣ୍ଣଚନ୍ଦ୍ର ଦେବଙ୍କ ସଭାପତିତ୍ୱରେ ଡିସେମ୍ବର ୧୯୦୩ରେ ଅନୁଷ୍ଠିତ ହେଲା । ସେଥିରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ସଂଖ୍ୟାରେ ଓଡ଼ିଆ ସଭ୍ୟମାନେ ଯୋଗ ଦେଇଥିଲେ । ଗଡ଼ଜାତ ରାଜାମାନଙ୍କ ମଧ୍ୟରୁ ତାଳଚେର, କେଓଁଝର, ଆଠଗଡ଼ ଓ ଢେଙ୍କାନାଳର ପ୍ରଜାମାନେ ମଧ୍ୟ ସେଥିରେ ଅଂଶ ଗ୍ରହଣ କରିଥିଲେ । ବାସ୍ତବରେ ସେହି ଅଧିବେଶନ ଥିଲା ସମଗ୍ର ଓଡ଼ିଆ ଜାତିର ଏକ ମହାମିଳନର ପୀଠ । କେନ୍ଦୁଝରର ମହାରାଜା ସେଥିର ପ୍ରଥମ ପ୍ରସ୍ତାବଟି ଆଗତ କରିବାକୁ ଯାଇ ସେ ଲର୍ଡ କାର୍ଜନଙ୍କ ସ୍ତୁତିଗାନ କରି ବିଚ୍ଛିନ୍ନ ଓଡ଼ିଆମାନଙ୍କୁ ଏକ ଶାସନାଧୀନ କରିବା ପାଇଁ ଅନୁରୋଧ କରିଥିଲେ । ସେହି ପ୍ରସ୍ତାବ ହିଁ ପରବର୍ତ୍ତୀ ଅଧିବେଶନମାନଙ୍କରେ ୧୯୮୪ ସାଲ ପର୍ଯ୍ୟନ୍ତ ଉତ୍କଳ-ସମ୍ମିଳନୀ ପକ୍ଷରୁ ଆବୃତ୍ତି କରାଯାଉଥିଲା ।

ସେ ବର୍ଷ 'ବଙ୍ଗଭଙ୍ଗ' ବିରୁଦ୍ଧରେ ଭାରତର ଜାତୀୟ କଂଗ୍ରେସ ପକ୍ଷରୁ ମାନ୍ଦ୍ରାଜଠାରେ ଲାଲ ମୋହନ ଘୋଷଙ୍କ ଅଧ୍ୟକ୍ଷତାରେ ଗୋଟିଏ ସ୍ୱତନ୍ତ୍ର ଅଧିବେଶନ ହେଲା । ସେଥିର 'ବିଷୟ ନିର୍ବାଚନ କମିଟି' ( Subject Committee )ରେ ବ୍ରହ୍ମପୁରର ସଭ୍ୟ ଜି : ରାଘବ ରାଓ ପ୍ରସ୍ତାବ କଲେଯେ, ଗଞ୍ଜାମରେ ଓଡ଼ିଆ ଓ ତେଲୁଗୁମାନେ ରହିଥିବା ଦୃଷ୍ଟିରୁ ତାହା ଓଡ଼ିଶାରେ ସଂଯୁକ୍ତ କରି ତେଲୁଗୁମାନଙ୍କ ସ୍ୱାର୍ଥରେ ବ୍ୟାଘାତ ସୃଷ୍ଟି କରିବା ଆଦୌ ଉଚିତ ନୁହେଁ । 'ବଙ୍ଗଭଙ୍ଗ' ବିରୁଦ୍ଧରେ ଯେଉଁ ପ୍ରସ୍ତାବ ଆଗତ ହେବ ସେଥିରେ ଓଡ଼ିଆଭାଷୀ ଅଞ୍ଚଳକୁ ଓଡ଼ିଶା ଡିଭିଜନରେ ଅନ୍ତର୍ଭୁକ୍ତ କରିବା ବିରୁଦ୍ଧ ପ୍ରସ୍ତାବ ଯୋଡ଼ିବା ଏକ ଅବାନ୍ତର ବିଷୟ ବୋଲି ତାମିଲ୍ ସଭ୍ୟ ଭି. କ୍ରିଷ୍ଣସ୍ୱାମୀ ଆୟାର ଆକ୍ଷେପ କରିଥିଲେ । କିନ୍ତୁ ସେହି କମିଟିରେ ଅଧିକାଂଶ ତେଲୁଗୁ ସଭ୍ୟ ଯୋଗ ଦେଇଥିବାରୁ ତାମିଲ ସଭ୍ୟଙ୍କ ସଂଶୋଧନ ପ୍ରସ୍ତାବଟି ଗୃହୀତ ହେଲା ନାହିଁ । ତଦବଧି କଂଗ୍ରେସ ପକ୍ଷରୁ ଓଡ଼ିଶାରେ ମାନ୍ଦ୍ରାଜରୁ କୌଣସି ଅଞ୍ଚଳ ମିଶାଇବା ବିରୁଦ୍ଧ ମତ ଦୃଢ଼ ହୋଇ ରହିଲା ।

ବଙ୍ଗର Chamber of Commerce ( ବ୍ୟବସାୟୀ ସଂଘର ସେକ୍ରେଟାରୀ ଡବ୍ଲୁ. ପରସନ ( (W. Parsons) ତା ୧୯-୩-୧୯୦୪ରେ ବଙ୍ଗଳା ସରକାରଙ୍କୁ ଗୋଟିଏ ପତ୍ର ଲେଖି ଜଣାଇଲେ ଯେ, ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକ ମାନ୍ଦ୍ରାଜ, ମଧ୍ୟ ପ୍ରଦେଶରୁ ଉଠାଇ

*Vide the Oriya Movement, p-29.

ଅର୍ଥ ତାହା ସ୍ୱତନ୍ତ୍ର ଓଡ଼ିଶା-ଡିଭିଜନ୍‌ରେ ସାମିଲକରି ବଙ୍ଗ ପ୍ରଦେଶ ଅଧୀନରେ ରଖିବା ନିତାନ୍ତ ଆବଶ୍ୟକ । ସେଥି ସଙ୍ଗେ ସମ୍ବଲପୁର ଅଞ୍ଚଳର ସମସ୍ତ ଗଡ଼ଜାତ ରାଜ୍ୟଗୁଡ଼ିକ ମଧ୍ୟ ସାମିଲ କରାଯିବା ଉଚିତ । ବଙ୍ଗଳା ବ୍ୟବସାୟୀ ସଂଘ ପକ୍ଷରୁ ସରକାରଙ୍କୁ ଜଣାଇ ଦିଆଗଲା ଯେ, ଏହି ଅଞ୍ଚଳର ପରିବର୍ତ୍ତନରେ ସେଠାର ବାଣିଜ୍ୟ-କ୍ଷେତ୍ରରେ କୌଣସି ଅସୁବିଧା ସୃଷ୍ଟି ହେବ ନାହିଁ । ବରଂ ସେଥିରେ ଅଧିକ ବିକାଶ ସମ୍ଭବ ହୋଇ ପାରିବ ।

ମଧ୍ୟ ପ୍ରଦେଶର ମୁଖ୍ୟ କମିଶନର ((Chief Commissioner) ମଧ୍ୟ ଏହି ପ୍ରସ୍ତାବକୁ ସ୍ୱାଗତ କରିଥିଲେ । କିନ୍ତୁ ମାଡ୍ରାଜ ପ୍ରଦେଶର ତେଲୁଗୁମାନେ ମ୍ୟୁନସିପାଲଟି, ଜିଲ୍ଲା ବୋର୍ଡ ତଥା ସରକାରଙ୍କ ଦପ୍ତର ଗୁଡ଼ିକରେ ସଂଖ୍ୟାଧିକ ହୋଇଥିବାରୁ ସେମାନେ ପ୍ରବଳ ଭାବରେ ଓଡ଼ିଶାରେ ଗଞ୍ଜାମ ଓ ବିଶାଖାପାଟଣା ମାନ (ଜୟପୁର)ର ମିଶ୍ରଣ ବିରୁଦ୍ଧରେ ଆନ୍ଦୋଳନ ସୃଷ୍ଟି କଲେ । ଭାଗିବୁଗା (ପରାସା) ଠାରୁ ପେଣ୍ଡାଣ ଯୋଗୁରୁ ଓ ମାଲ୍ଲାୟମସ୍ୱାମି ସୁବୁଦ୍ଧି ନାମକ ଦୁଇଜଣ ମାଡ୍ରାଜ ସରକାର ଓ ଭାଇସ୍‌ରାୟଙ୍କୁ ସ୍ମାରକ ପତ୍ରମାନ ପଠାଇ ଓଡ଼ିଶାରେ ମିଶ୍ରଣ ବିରୁଦ୍ଧରେ ତେଲୁଗୁମାନଙ୍କ ମତ ପ୍ରକାଶ କଲେ । ସେ ପକ୍ଷରେ ଓଡ଼ିଆମାନେ ମଧ୍ୟ ତା୮-୧-୧୯୦୪ରେ ଗୋଟିଏ ସ୍ମାରକ ପତ୍ରରେ ଛଅହଜାର-ଛଅଶହ ଲୋକଙ୍କ ସ୍ୱାକ୍ଷର ଥାଇ ଓଡ଼ିଶାରେ ମିଶଣ ସପକ୍ଷମତ ସରକାରଙ୍କଠାରେ ଉପସ୍ଥାପିତ କରିଥିଲେ । ଗଞ୍ଜାମର 'ପ୍ରଜାବନ୍ଧୁ' ପତ୍ରିକାର ତା-୨୩-୬-୧୯୦୩ର ସଂଖ୍ୟାରେ ଏ ସମ୍ବନ୍ଧରେ ଲେଖା ବାହାରି ତେଲୁଗୁମାନଙ୍କର କେତେକ ମିଥ୍ୟା ଅଭିଯୋଗ ଖଣ୍ଡନ କରାଯାଇଥିଲା ।

୧୯୦୩ ସାଲରୁ ଆରମ୍ଭକରି ୧୯୧୪ସାଲ ମଧ୍ୟରେ "ଉତ୍କଳ ସମ୍ମିଳନୀ"ର ୯ଟି ଅଧିବେଶନ ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇଥିଲା । ଏହି କାଳ ମଧ୍ୟରେ ମଧ୍ୟପ୍ରଦେଶର ସମ୍ବଲପୁରକୁ ଓଡ଼ିଶା ଡିଭିଜନ୍‌ରେ ସଂଯୁକ୍ତ କରି ତାହା ବିହାର ପ୍ରଦେଶର ଅନ୍ତର୍ଭୁକ୍ତ କରାଯାଇଥାଏ । ମାଡ୍ରାଜର ଓଡ଼ିଆ-ଭାଷୀ ଅଞ୍ଚଳର ମିଶଣ ବିରୁଦ୍ଧରେ ତେଲୁଗୁ ଏବଂ ମାଡ୍ରାଜ ସରକାରଙ୍କ ଆପତ୍ତି ହେତୁ ସେଥିର ମୀମାଂସା କିଛି ହୋଇ ନଥାଏ । ସେତିକିବେଳେ ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ରାଜନୀତି କ୍ଷେତ୍ରରେ ପଦାର୍ପଣ ଓଡ଼ିଆଙ୍କ ବହୁ ଦିନର ଆଶା ଆଚ୍ଛନ୍ନ କରିଥିବା କୁହେଳିକା ମଧ୍ୟରେ ଆଲୋକରଶ୍ମି ରୂପେ ପ୍ରତିଭାତ ହେଲା । ତାଙ୍କର ଗୁରୁ ସ୍ୱରୂପ ଓଡ଼ିଶାର କୁଳବୃଦ୍ଧ ମଧୁସୂଦନ ଦାସ ପୁରୀଠାରେ ଅନୁଷ୍ଠିତ ଉତ୍କଳ-ସମ୍ମିଳନୀର ନବମ ଅଧିବେଶନର ସଭାପତି ରୂପେ ଯେଉଁ ଦୀର୍ଘ ମର୍ମସ୍ପର୍ଶୀ ଭାଷଣ ଦେଇ ଓଡ଼ିଆମାନଙ୍କ ଜାତୀୟ ଏକତା ପାଇଁ ଉଦ୍‌ବୋଧିତ କରିଥିଲେ, ତାହା ବାସ୍ତବରେ ଯୁବକ ଶ୍ରୀ କୃଷ୍ଣଚନ୍ଦ୍ର-ଗଜପତିଙ୍କୁ ଜାତୀୟସେବା ପାଇଁ ଅନୁପ୍ରାଣିତ କରିଥିଲା । ବାସ୍ତବରେ ମଧୁସୂଦନ ଦାସ ଓ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ହେଉଛନ୍ତି ଓଡ଼ିଆ ଜାତିର ଦୁଇଟି ଚିର ସ୍ମରଣୀୟ ନେତା, ଯେ କି ଏ ମୃତ ଜାତିର ଶରୀରରେ ଜୀବନ ସଞ୍ଚାର କରିଥିଲେ । ତାଙ୍କପରି ଓଡ଼ିଶାର ଏକତା ଏବଂ ଓଡ଼ିଆ ଜାତିର ଅଭ୍ୟୁତ୍ଥାନ ପାଇଁ ପଣ୍ଡିତ ଗୋପବନ୍ଧୁଙ୍କ ଭୂମିକା ଆମ ଇତିହାସରେ ଲିପିବଦ୍ଧ ହୋଇ ରହିବ । ସେହି ମହାନ୍ ତ୍ୟାଗୀ ଓ ଦେଶପ୍ରେମୀମାନଙ୍କ କର୍ମକ୍ଷେତ୍ର ଅଲଗା ହୋଇଥିଲେ ସୁଦ୍ଧା ଓଡ଼ିଶା ଏବଂ ଓଡ଼ିଆଙ୍କ ଉନ୍ନତି ପଥରେ ସେମାନେ ହିଁ ଅଗ୍ରଣୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ମଧ୍ୟରୁ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ କାର୍ଯ୍ୟାବଳୀର ଜଣେ ପ୍ରତ୍ୟକ୍ଷ-ଦର୍ଶୀ ଓ ସହଚର ରୂପେ ଏ ଲେଖକ ଯାହା ଜାଣେ ସେଥିରୁ କିଛି ସଂକ୍ଷେପରେ ବିବୃତ କରିବି ।

## ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି

ପାରଳାଖେମୁଣ୍ଡି ରାଜ ପରିବାରରେ ୧୮୯୨ ଖ୍ରୀଷ୍ଟାବ୍ଦ ବୈଶାଖ ଅମାବାସ୍ୟା ଦିନ ଶ୍ରୀକୃଷ୍ଣ ଚନ୍ଦ୍ରଙ୍କର ଜନ୍ମ । ତାଙ୍କ ପିତା ଗୌର ଚନ୍ଦ୍ର ଗଜପତି ଥିଲେ ଗଞ୍ଜାମର ଜଣେ ଉଚ୍ଚ ଗଙ୍ଗବଂଶୀୟ ଜମିଦାର । ପିଲାଦିନୁ ବାରବର୍ଷ ଯାଏ ସେ ପାରଳା ରାଜ ପ୍ରାସାଦରେ ରହି ପ୍ରାଥମିକ ଶିକ୍ଷା ଲାଭ କରିଥିଲେ । କିନ୍ତୁ ୧୯୦୪ ମସିହାରେ ପିତାଙ୍କ ମୃତ୍ୟୁ ପରେ ତାଙ୍କ ଏଷ୍ଟେଟ୍ କୋର୍ଟ ଅଫ୍ ୱାର୍ଡ଼ ( Court of Word ) ଅଧୀନରେ ପରିଚାଳିତ ହେଲା । ସେତେବେଳେ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଉଚ୍ଚଶିକ୍ଷା ପାଇଁ ମାଡ୍ରାଜର ନ୍ୟୁଇଙ୍ଗଟନ୍ କଲେଜରେ ତାଙ୍କ ନାମ ଲେଖା ହେଲା । ରାଜକୁମାରଙ୍କ ପାଇଁ ତାହା ଏକ ଆବାସିକ କଲେଜ ରୂପେ ଦକ୍ଷିଣ ଭାରତରେ ସ୍ଥାପିତ ହୋଇଥିଲା । ଗଞ୍ଜାମ ଓ ବିଶାଖାପାଟଣା ଜିଲ୍ଲାର କେତେକ ଓଡ଼ିଆ ଜମିଦାରଙ୍କ ସନ୍ତାନ ସେଠାରେ ଏକତ୍ର ରହି ବିଦ୍ୟାଭ୍ୟାସ କରୁଥିଲେ । ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଟ୍ୟୁଟର ରୂପେ ଦୁଇଜଣ ଇଂରାଜୀ ଅଧ୍ୟାପକ ନିଯୁକ୍ତ ହୋଇଥିଲେ । ଶ୍ରୀକୃଷ୍ଣଚନ୍ଦ୍ର ୨୧ ବର୍ଷ ବୟସରେ ପଦାର୍ପଣକରି ସାବାଳକତ୍ୱ ଲାଭ କଲାପରେ ୧୯୧୩ ମସିହାରେ ପାରଳାକୁ ଫେରିଆସି ଏଷ୍ଟେଟ୍‌ର ଅଧିକାର ପାଇଲେ । ଏଥିର ଅଳ୍ପକାଳପରେ ବିହାରର ଖରସୁଆଁ ରାଜକୁମାରୀଙ୍କ ସଙ୍ଗେ ତାଙ୍କର ବିବାହ ସଂପନ୍ନ ହେଲା ।

ପିଲାଦିନୁ ତାଙ୍କର ବଂ [illegible]ବ ସଙ୍ଗେ ଉତ୍କଳ ଦେଶ ତଥା ଓଡ଼ିଆ ଜାତିର ଉନ୍ନତି ପାଇଁ ପ୍ରବଳ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ସେତେବେଳେ ମଧୁବାବୁଙ୍କ ଉଦ୍ୟମରେ ଓଡ଼ିଶା ଦେଶ ମିଶ୍ରଣ ସକାଶେ ଉତ୍କଳ-ସମ୍ମିଳନୀ ସଂଗଠିତ ହୋଇଥାଏ ; ଲର୍ଡ କର୍ଜନଙ୍କ ସହାନୁଭୂତି ଓ ଓଡ଼ିଆଙ୍କ ବିରୁଦ୍ଧରେ ମାଡ୍ରାଜରେ ପ୍ରବଳ ଉତ୍ତେଜନା ସୃଷ୍ଟି ହୋଇଥିବା ସେ ଅନୁଧ୍ୟାନ କରୁଥିଲେ । ଏଥିର ନିରାକରଣ ପାଇଁ ସେ ଓ ତାଙ୍କ ସାଥି ଖଲିକୋଟ ରାଜକୁମାର ରାମଚନ୍ଦ୍ର ଦେବ ଦିହେଁ ମିଶି ଅଧିକାଂଶ ସମୟରେ ବିସ୍ତର ପରାମର୍ଶ କରୁଥାନ୍ତି । କିପରି ଓଡ଼ିଆ ଜାତି ତାର ପ୍ରାଚୀନ ଗୌରବ ଫେରି ପାଇବ ।

୧୯୧୩ ସାଲରେ ପୁରୀରେ ମଧୁବାବୁଙ୍କ ସଭାପତି ଭାଷଣଟି ପାଠକରି ଶ୍ରୀ କୃଷ୍ଣଚନ୍ଦ୍ରଙ୍କ ମନରେ ଜନନୀ ଜନ୍ମଭୂମିର ସେବା ସଙ୍ଗେ ଜାତୀୟ ପ୍ରେରଣା ଜାଗ୍ରତ ହେଲା । ବିବାହ ପରେ ସେ ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର' ଦଶମ ଅଧିବେଶନ ତାଙ୍କ ନିଜ ଦାୟିତ୍ୱରେ କରାଇବାକୁ ସ୍ଥିର' କରି ତାଙ୍କ ମନ କଥା ମଧୁବାବୁଙ୍କୁ ପତ୍ରରେ ଜଣାଇଲେ । ମଧୁବାବୁ ମଧ୍ୟ ଚାହୁଁଥିଲେ ଦକ୍ଷିଣ-ଓଡ଼ିଶାରେ ଯେପରି ଏକ ଜାତୀୟ ସମାରୋହ ହେବ । ତେଣୁ ସେ ନିଜେ ଉତ୍ସାହିତ ହୋଇ ସମ୍ମିଳନୀର ସମସ୍ତ ଆୟୋଜନ ସଂବନ୍ଧରେ ପରାମର୍ଶ କରିବାକୁ ପାରଳାଖେମୁଣ୍ଡିକୁ ଯାଇ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଆତିଥ୍ୟ ଗ୍ରହଣ କଲେ । ସେମାନେ ଦୁହେଁ ପରାମର୍ଶ କରି ସ୍ଥିର କଲେଯେ, ରାଜା କୃଷ୍ଣଚନ୍ଦ୍ରଙ୍କ ଦୀକ୍ଷାଗୁରୁ ପୁରୀର ଶ୍ରୀ ରାଧାକାନ୍ତ ମଠର ମହନ୍ତ ଶ୍ରୀ ରାଧାକୃଷ୍ଣ ଦାସ ଗୋସ୍ୱାମୀ ଅଭ୍ୟର୍ଥନା ସଭାର ସଭାପତି ଓ ରାଜାଙ୍କ ମାମୁଁ ଜୟପୁରର ଶ୍ରୀ ବିକ୍ରମଦେବ ବର୍ମା (ପରେ ଜୟପୁରର ମହାରାଜା) ସମ୍ମିଳନୀର ସଭାପତି ରୂପେ ନିମନ୍ତ୍ରିତ ହେବେ । ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ତାଙ୍କ ଷ୍ଟେଟ୍ କର୍ମଚାରୀ, କଲେଜର ଶିକ୍ଷକ ଓ ଛାତ୍ରମାନଙ୍କ ସଙ୍ଗେ ଉତ୍କଳ ହିତୈଷିଣୀ-ସମାଜ'ର ସଭ୍ୟମାନଙ୍କୁ ଲଗାଇ ସମ୍ମିଳନୀର ସମସ୍ତ ଆୟୋଜନ ଅଳ୍ପକାଳ ମଧ୍ୟରେ ସଂପନ୍ନ କଲେ । ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନରେ ପାରଳାଖେମୁଣ୍ଡିରେ ବହୁ ସଂଖ୍ୟାରେ ପ୍ରାକୃତିକ ଓଡ଼ିଶାରୁ ନେତୃସ୍ଥାନୀୟ ଲୋକେ ଏବଂ ରାଜା ଓ ଜମିଦାରମାନେ ରାଜା ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । ମିଷ୍ଟର ଦାସ, ଗୋପବନ୍ଧୁ ଦାସ, ଫକିର ମୋହନ ସେନାପତି, ଶଶୀ ଭୂଷଣ ରଥ, କନିକା ରାଜା, ମଧୁପୁର ରାଜା, ଖଲିକୋଟ, ଧରାକୋଟ, ବଡ଼ଖେମୁଣ୍ଡି, ମଂଜୁଷା, ଚିକିଟି ପ୍ରଭୃତି ଗଞ୍ଜାମର ରାଜା ଓ ଜମିଦାରମାନେ ଯଥା ବିହିତ ସମ୍ମାନିତ ହୋଇ ରାଜାଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । ସୁଦୂର ସମ୍ବଲପୁର, ଖରସୁଆଁ, ଷଢ଼େଇକଳା ମୟୂରଭଞ୍ଜ ବାମଣ୍ଡା, ପ୍ରଭୃତି ଗଡ଼ଜାତ ଅଞ୍ଚଳରୁ ମଧ୍ୟ ପ୍ରତିନିଧିମାନେ ସେଥିରେ ଯୋଗ ଦେଇଥିଲେ । ସେ ସମସ୍ତଙ୍କ ଉପଯୁକ୍ତ ତତ୍ତ୍ୱ କରିବା ଭାର ନିଜେ ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ଓ ତାଙ୍କ ଏଷ୍ଟେଟ୍‌ର ମେନେଜର ତଥା କଲେଜର ଛାତ୍ର ଓ ଅଧ୍ୟାପକମାନେ ବହନ କରିଥିଲେ ।

ସମ୍ମିଳନୀ ଆରମ୍ଭ ପୂର୍ବରୁ ବିଷୟ-ନିର୍ବାଚନ କମିଟି ( Subject Committee) ବୈଠକରେ ମୂଳ ଓଡ଼ିଶାରେ ସମସ୍ତ ବିଚ୍ଛିନ୍ନ ଓଡ଼ିଆ ଭାଷୀ ଅଞ୍ଚଳକୁ ଏକତ୍ରିତ କରି ସ୍ୱତନ୍ତ୍ର ଡିଭିଜନରେ ପରିଣତ କରିବା ଓ ତାହା ବିହାର ପ୍ରଦେଶରେ ସ୍ଥାପିତ କରିବା ପ୍ରସଙ୍ଗ ଉତ୍ଥାପିତ ହେଲା । ରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ତାହା ସଂଶୋଧନ କରି "ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ" ଦାବୀ କରିବା ପ୍ରସ୍ତାବ ଆଗତ କଲେ । ମଧୁସୂଦନ ଦାସ ତାହା ସମର୍ଥନ ନକରି କହିଲେ—"ବ୍ୟୟ ବହୁଳ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ବ୍ରିଟିଶ୍ ସରକାର ସମ୍ମତ ହେବେ ନାହିଁ । ତେଣୁ ସେହି

ପ୍ରତ୍ୟାଶା ପ୍ରସ୍ତାବଟି ଆବୃତ୍ତି କରିବା ଆବଶ୍ୟକ । ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ସେହି ଯୁକ୍ତି ଖଣ୍ଡନ କରି କହିଲେ "ବିଶ୍ୱଯୁଦ୍ଧ ହେତୁ ବ୍ରିଟିଶ ସରକାର ଆମମାନଙ୍କର ଏବେ ସାହାଯ୍ୟ ପ୍ରାର୍ଥୀ ହୋଇ ଅଛନ୍ତି । ୟୁରୋପରେ ଜର୍ମାନ୍ ଏବଂ ଏସିଆ ମହାଦେଶରେ ଜାପାନ ପରି ବଳିଷ୍ଠ ଶତ୍ରୁମାନଙ୍କ ସଙ୍ଗେ ଲଢିବାକୁ ହେଲେ ଭାରତର ସହଯୋଗ ଓ ସାହାଯ୍ୟ ତାଙ୍କର ନିତାନ୍ତ ଆବଶ୍ୟକ । ଏଣୁ ଆମକୁ ଅସନ୍ତୁଷ୍ଟ କରିବାକୁ ସେ ସାହସ କରିବେ ନାହିଁ । ବିଶେଷତଃ କଂଗ୍ରେସପରି ଏକ ବଳିଷ୍ଠ ଅନୁଷ୍ଠାନ ପକ୍ଷରୁ ସେମାନେ କିଛି ବିଶେଷ ବିଦ୍ରୋହ ନପାଇଲେ ସୁଦ୍ଧା ସେମାନଙ୍କ ଆନ୍ତରିକ ସହଯୋଗ ପାଇବାକୁ ସରକାର ସନ୍ଦୀହାନ ହୋଇ ପଡ଼ିଲେଣି । ଏତିକିବେଳେ ଆମେ ଯଦି ସ୍ୱତନ୍ତ୍ର ପ୍ରଦେଶ ପାଇଁ ଦାବୀ ଉପସ୍ଥାପିତ କରିବା ତା' ହେଲେ ଭବିଷ୍ୟତରେ ଶାସନ-ସଂସ୍କାରବେଳେ ଏ କଥା ନିଶ୍ଚୟ ବିଚାରକୁ ଯିବ ।"

ମହାରାଜାଙ୍କ ଯୁକ୍ତି ଅଧିକାଂଶ ସଭ୍ୟଙ୍କର ମନକୁ ଆକୃଷ୍ଟ କଲା । ଶେଷରେ ମଧୁବାବୁ ମଧ୍ୟ ସେଥିରେ ରାଜି ହୋଇଗଲେ । ତଦବଧି ସ୍ୱତନ୍ତ୍ର 'ଓଡ଼ିଶା ପ୍ରଦେଶ-ଗଠନ' ପ୍ରସ୍ତାବ ସମ୍ମିଳନୀର ଏକ ମୁଖ୍ୟ ଅଙ୍ଗ ହୋଇ ରହିଲା ।

ରାଜା କୃଷ୍ଣଚନ୍ଦ୍ର ଯୌବନରେ ଦୃଢ ପ୍ରତିଜ୍ଞ ଓ ବାସ୍ତବବାଦୀ ହୋଇଥିଲେ । ତାଙ୍କ ପିତାଙ୍କ ସଞ୍ଚିତ ପ୍ରାୟ ଏକକୋଟି ଟଙ୍କା ରେଙ୍ଗୁନ୍ ମ୍ୟୁନିସିପାଲଟି ବେଙ୍କ୍‌ରୁ ସେ ପାଇଲା ପରେ ସେଥିର ଅଧିକାଂଶ ଲୋକହିତ କାର୍ଯ୍ୟରେ ବ୍ୟୟ କରିଥିଲେ । କେବଳ ସେତିକି ନୁହେଁ ଶିକ୍ଷାର ମାନ ବୃଦ୍ଧି ନିମନ୍ତେ ଏବଂ ସାହିତ୍ୟ ଓ ସଂସ୍କୃତିର ଅଭିବୃଦ୍ଧି ସକାଶେ ଅଜସ୍ର ଧନବ୍ୟୟ କରିବାକୁ ସେ କେବେ କୁଣ୍ଠିତ ହେଉ ନଥିଲେ । ଅସହାୟ-ଗରୀବଙ୍କୁ ସାହାଯ୍ୟ କରିବା ଏକ ମହତ୍ ଗୁଣ ତାଙ୍କଠାରେ ଦେଖା ଦେଇଥିଲା । ନିଜର ବିଳାସ ଓ ଅଯଥା ଦୁରାଭ୍ୟାସ ତାଙ୍କୁ ସ୍ପର୍ଶ କରିନଥିଲା । ଧର୍ମନିଷ୍ଠ ଓ କର୍ମନିଷ୍ଠ ଭାବେ ସେ ତାଙ୍କ ଦୀର୍ଘ ଜୀବନ କଟାଇ ଥିଲେ । ଅଳ୍ପ ବୟସରେ ପତ୍ନୀଙ୍କ ବିୟୋଗ ହୋଇଥିଲେ ସୁଦ୍ଧା ସେ ଦ୍ୱିତୀୟବାର ବିବାହ କରିବା ପ୍ରଲୋଭନ ତ୍ୟାଗ କରିଥିଲେ । ଏ ସମସ୍ତ ସତ୍ତ୍ୱେ ଐତିହାସିକ ଗଙ୍ଗ-ଗଜପତି ରାଜ ବଂଶରେ ଗର୍ବ ଓ ସାହସ ତାଙ୍କୁ ଅନୁପ୍ରାଣିତ କରିଥିଲା । ସେ ଯେପରି ଶାସନ କ୍ଷେତ୍ରରେ ପାରଦର୍ଶିତା ଅର୍ଜନ କରିଥିଲେ, ସେପରି ରାଜନୀତି ଓ ଅର୍ଥନୀତିରେ ମଧ୍ୟ ବଳିଷ୍ଠ ପ୍ରେରଣା ତାଙ୍କ କାର୍ଯ୍ୟାବଳୀରୁ ପ୍ରକଟିତ ହୋଇଥିଲା । ଦ୍ୱିତୀୟ ମହାଯୁଦ୍ଧ ବେଳେ ରାଜ୍ୟରେ ପ୍ରବଳ ଅଭାବରୁ ଲୋକଙ୍କୁ ବିପୁଳ ସାହାଯ୍ୟ କରିଥିବା ଘଟଣା ଅଦ୍ୟାପି ଆମ ସ୍ମୃତିପଟରୁ ଲିଭି ନାହିଁ । ତାଙ୍କର ସେହି କର୍ମନିଷ୍ଠା ଓ ଦେଶପ୍ରାଣତା ହେତୁ ବ୍ରିଟିଶ ସରକାରଙ୍କ 'ରୟଲ ଏଗ୍ରିକଲଚର କମିଶନ' (Royal Agriculture Commissioner)ରେ ଜଣେ ସଭ୍ୟ ରୂପେ ମନୋନୀତ ହୋଇ କୃଷି ଓ ଗୋ-ପାଳନ କ୍ଷେତ୍ରରେ ଓଡ଼ିଶାର ଯଥେଷ୍ଟ ଉପକାର କରି ପାରିଥିଲେ । ତାଙ୍କରି ଉଦ୍ୟମରେ ବିଦ୍ୟାଧରପୁର କୃଷି ଗବେଷଣା କେନ୍ଦ୍ର କଟକରେ ସ୍ଥାପିତ ହୋଇଥିଲା ।

୧୯୩୦ ମସିହାରେ ତତ୍କାଳୀନ ବିହାର-ଓଡ଼ିଶା ସରକାରଙ୍କ ପକ୍ଷରୁ ଓଡ଼ିଆଙ୍କ ପ୍ରତିନିଧି ରୂପେ ନିର୍ବାଚିତ ହୋଇ "ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ" ପାଇଁ ପ୍ରଥମ ଗୋଲ ଟେବୁଲ ବୈଠକରେ ସେ ଯେଉଁ ପ୍ରସ୍ତାବ ଉତ୍ଥାପନ କରି ଭାଷଣ ଦେଇଥିଲେ, ତାହା ସେହି କନ୍‌ଫରେନ୍ସରେ ନିର୍ବିବାଦ ସମର୍ଥନ ଲାଭ କଲା । ସେହି ଐତିହାସିକ ଭାଷଣ ଫଳରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ବ୍ରିଟିଶ ସରକାରଙ୍କ ପକ୍ଷରୁ ସିଦ୍ଧାନ୍ତ ଗୃହୀତ ହେଲା ।

୧୯୩୧ ମସିହାରେ ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ କମିଟିରେ ଓଡ଼ିଆଙ୍କ ପକ୍ଷରୁ ଜଣେ ସହାୟକ ସଭ୍ୟ ରୂପେ ନିଯୁକ୍ତ ହୋଇ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳଗୁଡ଼ିକ ମିଶ୍ରଣ ପାଇଁ ସେ ଯେଉଁ କଠୋର ପରିଶ୍ରମ କରିଥିଲେ ତାହା ବର୍ଣ୍ଣନା କଲେ ପ୍ରବନ୍ଧର କଳେବର ଯଥେଷ୍ଟ ବଢ଼ିଯିବ ।

ତା ୧-୪-୧୯୩୬ ମସିହାରେ ଓଡ଼ିଶା ପ୍ରଦେଶ ଗଠିତ ହୋଇ ସେଥିରେ ପ୍ରଥମ ଗଭର୍ଣ୍ଣର ରୂପେ ସାର ଜନ୍ ଅଷ୍ଟିନ୍ ହାବାକ୍ ( Sir John Austen Hubback ) ନିଯୁକ୍ତ ହେଲେ । ଠିକ୍ ଏକବର୍ଷ ପରେ ତା ୧-୪-୧୯୩୭ ମସିହାରେ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଓଡ଼ିଶାର ପ୍ରଧାନ ମନ୍ତ୍ରୀ ରୂପେ ମନୋନୀତ ହୋଇ ପ୍ରାୟ ଅଢ଼େଇ ମାସ ମାତ୍ର ଶାସନ ପରିଚାଳନା କରିଥିଲେ । ବିଧାନ ସଭାପାଇଁ ସାଧାରଣ ନିର୍ବାଚନ କ୍ଷେତ୍ରରେ କଂଗ୍ରେସ ଦଳ ପକ୍ଷରୁ ଅଧିକାଂଶ ସଭ୍ୟ ନିର୍ବାଚିତ ହେବାରୁ ସେ ଇସ୍ତଫା ଦେଇ ପାରଳାଖେମୁଣ୍ଡିକୁ ଫେରିଗଲେ । ସେତେବେଳେ ତାଙ୍କ ଅନୁପସ୍ଥିତିରେ ଇଷ୍ଟେଟରେ କେତେକ ଅବ୍ୟବସ୍ଥା ସୃଷ୍ଟି ହୋଇଥିଲା । ତେଣୁ ସେଥିର ନିରାକରଣ କରିବାକୁ ଯାଇ ସେ ବ୍ରହ୍ମପୁରର ଜଣେ ବଳିଷ୍ଠ ଅବସରପ୍ରାପ୍ତ ଡେପୁଟି କଲେକ୍ଟର ଅନନ୍ତରାମ ଭଞ୍ଜଙ୍କୁ ଇଷ୍ଟେଟ ଦେୱାନ କାର୍ଯ୍ୟରେ ନିଯୁକ୍ତି କଲେ । ଏଷ୍ଟେଟ୍‌ର ବହୁ ଉନ୍ନତିକର କାର୍ଯ୍ୟରେ ନିଜେ ପ୍ରକଳ୍ପମାନ କରି କୃଷି ଓ ବାଣିଜ୍ୟର ଅଧିକ ଉନ୍ନତି ସାଧନ କରିପାରିଥିଲେ ।

ତା ୧୯-୭-୧୯୩୭ ରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ କଂଗ୍ରେସ ଦଳ ପକ୍ଷରୁ ବିଶ୍ୱନାଥ ଦାସ ନିର୍ବାଚିତ ହେଲେ । କିନ୍ତୁ ତା ୬-୧୧-୧୯୩୯ରେ ଭାରତର ଜାତୀୟ କଂଗ୍ରେସ ପକ୍ଷରୁ ଅସହଯୋଗ ଆନ୍ଦୋଳନ ସୃଷ୍ଟି ହେବାରୁ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀଦଳ ତା ୬-୧୧-୧୯୩୯ ମସିହାରେ ଇସ୍ତଫା ଦେଇ ଶାସନ କ୍ଷେତ୍ରରୁ ଅଲଗା ହୋଇ ରହିଲେ । ଏଠାରେ କହିବା ଆବଶ୍ୟକ ଯେ, ମହାରାଜାଙ୍କ ଜାତୀୟ ମମତା ଏବଂ ଓଡ଼ିଶାକୁ ପଡ଼ୋଶୀ ପ୍ରଦେଶର ବିଦ୍ୱେଷୀ କଂଗ୍ରେସ ନାମରେ ଉଚ୍ଚସ୍ତରର ନେତାମାନଙ୍କ ପ୍ରସାରିତ ଜାଲରୁ ସୁରକ୍ଷିତ କରିବା ପାଇଁ ଏକ ସ୍ୱତନ୍ତ୍ର ରାଜନୈତିକ ଦଳ "ନେଶନାଲ ପାର୍ଟି" ଗଠିତ ହେଲା । ସେଥିରେ ଉତ୍କଳ କଂଗ୍ରେସର କେତେକ ମୁଖ୍ୟ କର୍ମୀ ଯୋଗ ଦେବା ଆଶଙ୍କା କରି ମାଦ୍ରାଜର ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଓ ପି. ସୀତାରାମାୟା, ବିହାର-ଓଡ଼ିଶାର ରାଜେନ୍ଦ୍ରପ୍ରସାଦ ଏବଂ ବଙ୍ଗଳାର ସୁଭାଷ ଚନ୍ଦ୍ର ବୋଷ ଓ ସେନଗୁପ୍ତ ପ୍ରମୁଖ ନେତାମାନେ ଉତ୍କଳ କଂଗ୍ରେସର କେତେକ କର୍ମୀଙ୍କୁ ଉପଦେଶ ଦେଲେ ଯେ, ନେଶନାଲ ପାର୍ଟିକୁ ପରାହତ କରିବାକୁ ହେଲେ ଯେଉଁ ପାରଳା ରାଜାଙ୍କୁ ଓଡ଼ିଆମାନେ ଗଭୀରଭାବେ ଶ୍ରଦ୍ଧା ଓ ସମ୍ମାନିତ କରନ୍ତି, ପ୍ରଥମେ ତାଙ୍କରି ଚରିତ୍ରନାଶ କରିବା ଆବଶ୍ୟକ । ଏହା ଫଳରେ କେତେକ କୁତ୍ସା ରଚନାତ ମହାରାଜାଙ୍କ ବିରୁଦ୍ଧରେ ପତ୍ର ପତ୍ରିକାମାନଙ୍କରେ ପ୍ରକାଶିତ ହେଲା । ତାଙ୍କ ବିରୁଦ୍ଧରେ କୁହାଗଲା ଯେ, ସେ ଜଣେ ଜମିଦାର, ପ୍ରଜାମାନଙ୍କର ହିତ ଦୃଷ୍ଟିରୁ କାର୍ଯ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ସେ 'ମହାରାଜା' ପଦବୀ ମଣ୍ଡିତ ହୋଇ ପ୍ରାଚୀନ ଗଙ୍ଗ-ଗଜପତି ରାଜାମାନଙ୍କ ପରି ସମ୍ମାନ ପାଇବାକୁ ଲାଳାୟିତ, ବିଦେଶୀ ଶାସକମାନଙ୍କ ସଙ୍ଗେ ହାତ ମିଳାଇ ସେ ଭାରତରେ ଜାତୀୟ କଂଗ୍ରେସର ପ୍ରସାର ଓ କାର୍ଯ୍ୟପନ୍ଥାରେ ବ୍ୟାଘାତ ଘଟାଇବାକୁ ଯତ୍ନ କରୁଛନ୍ତି । ରାଜା ସିଂହାସନ ପରି ଓଡ଼ିଶାର ପ୍ରଧାନ ମନ୍ତ୍ରୀ ଗାଦିରେ ବସି ବ୍ରିଟିଶ ଜାତିର ଆନୁଗତ୍ୟ ସେ ସ୍ୱୀକାର କରନ୍ତି ଇତ୍ୟାଦି ଇତ୍ୟାଦି । ଏପରି ଅଭିଯୋଗଗୁଡ଼ିକ ବହୁ ସଭା ସମିତିରେ ପ୍ରକାଶ ହେବା ଓ ପତ୍ରିକା ମାଧ୍ୟମରେ ପ୍ରଚାରିତ ହେବା ଦେଖି ମହାରାଜାଙ୍କ ମନରେ ଘୋର ବିଷାଦର ଛାୟା ଘୋଟିଗଲା । ସେ ଯାହା ନୁହନ୍ତି ବା ସ୍ୱପ୍ନରେ ସୁଦ୍ଧା ସେ ଯାହା ଭାବି ନ ଥିଲେ, ସେପରି ଦୋଷ ଦେଇ ତାଙ୍କୁ ସମାଜରେ କଳଙ୍କିତ କରାଯାଇଥିବା ଅନୁଭବ କରି ସେ ହତୋତ୍ସାହିତ ହେଲେ । କିନ୍ତୁ ଓଡ଼ିଶାର ବହୁ ମାନ୍ୟଗଣ୍ୟ କଂଗ୍ରେସ ନେତାଙ୍କ ଅନୁରୋଧ କ୍ରମେ ଓଡ଼ିଶାର ରାଜନୀତି କ୍ଷେତ୍ରରେ ସେ ଦ୍ୱିତୀୟବାର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଗ୍ରହଣ କରିବାକୁ ସ୍ୱୀକୃତ ହୋଇଥିଲେ ।

ଯେଉଁ କଂଗ୍ରେସ ସଭ୍ୟମାନେ ଓଡ଼ିଶାର ମଙ୍ଗଳ ନିମନ୍ତେ ମହାରାଜାଙ୍କୁ ଶାସନଭାର ଗ୍ରହଣ କରିବାକୁ ଅନୁରୋଧ କରିଥିଲେ ସେମାନେ ହେଉଛନ୍ତି, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଦିବାକର ପଟ୍ଟନାୟକ, ଯଦୁମଣି ମଙ୍ଗରାଜ, ଡ଼କ୍ଟର ଅଟଳ ବିହାରି ଆଚାର୍ଯ୍ୟ, ପ୍ୟାରୀ ଶଙ୍କର ରାୟ, ଜଗନ୍ନାଥ ଦାସ, ଲୋକନାଥ ମିଶ୍ର, ସରଳା ଦେବୀ ପ୍ରଭୃତି ।

ତା ୩-୧୧-୧୯୪୧ ମସିହାରେ ନେସ୍‌ନାଲ୍ ପାର୍ଟି ଓ କଂଗ୍ରେସର ବିଧାନସଭା ସଭ୍ୟମାନଙ୍କ ମଧ୍ୟରେ ମସୁଧା ହୋଇ 'ମିଶ୍ର-ମନ୍ତ୍ରୀମଣ୍ଡଳ' (Coalition Ministry) ଓଡ଼ିଶାରେ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ଗଠିତ ହେଲା । ପଣ୍ଡିତ ଗୋଦାବରୀଶ ମିଶ୍ର ସେହି ମନ୍ତ୍ରୀମଣ୍ଡଳରେ ମୁଖ୍ୟମନ୍ତ୍ରୀଙ୍କ ସଙ୍ଗେ ଦ୍ୱିତୀୟ ମୁଖ୍ୟ ହୋଇ ରହିଲେ । ଏହି ମନ୍ତ୍ରୀମଣ୍ଡଳ ଗଠିତ ହେବା ସୂଚନା ପାଇ

ଜାତୀୟ କଂଗ୍ରେସର ରାଜେନ୍ଦ୍ର ପ୍ରସାଦ, ସୁଭାଷ ବୋଷ, ପଟ୍ଟାଭି ସୀତା ରାମୟାଙ୍କ କୌଶଳ କ୍ରମେ ପଣ୍ଡିତ ନୀଳକଣ୍ଠ ଦାସ ଉତ୍କଳ କଂଗ୍ରେସର ଅଧ୍ୟକ୍ଷ ପଦରୁ ଇସ୍ତଫା ଦେଲେ ଏବଂ ତାଙ୍କ ସ୍ଥାନରେ ହରେକୃଷ୍ଣ ମହତାବ୍ ନିଯୁକ୍ତ ହେଲେ ।

ପଣ୍ଡିତ ନୀଳକଣ୍ଠ କାହିଁକି ଉତ୍କଳ ପ୍ରାଦେଶ କଂଗ୍ରେସ କମିଟିର ସଭାପତି ପଦରୁ ଇସ୍ତଫା ଦେବାକୁ ବାଧ୍ୟ ହୋଇଥିଲେ, ସେ ବିଷୟରେ ବହୁତ ଅଜ୍ଞାତ ରହସ୍ୟ ଏ ପର୍ଯ୍ୟନ୍ତ ପ୍ରକାଶ ପାଇନାହିଁ । ସେ କିପରି ସିଂହଭୂମିଠାରେ କାମ କରିବାକୁ ଉତ୍କଳ କଂଗ୍ରେସ ପକ୍ଷରୁ ୧୯୩୧ ସାଲରେ ଯାଇ ନିରାଶାରେ ସେଠାରୁ ଫେରି ଆସିଥିଲେ, ତାହା "ଦୈନିକ ଆଶା" ପତ୍ରିକାର ତା ୧-୬-୧୯୩୧ ସଂଖ୍ୟାରେ ସେ ପ୍ରକାଶ କରିଥିବା ଗୋଟିଏ ଦୀର୍ଘ ପତ୍ରର ନିମ୍ନୋକ୍ତ ଅଂଶରୁ ପ୍ରମାଣିତ ହେବ :—

"ସର୍ବତ୍ର ବିଜୁଳି ପ୍ରଚାର ଚାଲିଛି, ଉତ୍କଳର ପ୍ରଚାରସ୍ଥଳେ ପ୍ରଚାର ହେଉ—ସିଂହଭୂମି ବିହାର ଏହା ଶୀଘ୍ର ନିଷ୍ପତ୍ତି ହେଉ । ସୁଭାଷ, ରାଜେନ୍ଦ୍ର ପ୍ରସାଦ, ସେନଗୁପ୍ତ ଏମାନଙ୍କଠାରେ ଦାବୀ କରାଯାଉ," ଉପରୋକ୍ତ ଶିରୋନାମାରେ ସେ ଲେଖିଛନ୍ତି ; " ........ ଆଜି ଏ କଥା କହିବାର ଦରକାର ପଡ଼ିଛି କାହିଁକି ? କଂଗ୍ରେସ ମୋତେ ସିଂହଭୂମିରେ କାମ କରିବାକୁ ଦେଇଛନ୍ତି । ସର୍ବଦଳ ସମ୍ମିଳନୀରେ ମଧ୍ୟ ସେହି ଭୂମିରେ କାର୍ଯ୍ୟ କରିଅଛି । ମୁଁ ଯାଇ ସେ ଜିଲ୍ଲାରେ କଂଗ୍ରେସ କାମ କଲାବେଳେ ସେହି ଜିଲ୍ଲାରେ ଥିବା କେତେକ ବଙ୍ଗାଳି ଓକିଲ ପ୍ରଭୃତିଙ୍କ ଠାରୁ ଶୁଣିଲି, ପୁରୀ କଂଗ୍ରେସ ପାଇଁ ଦେବାକୁ ଆମର କିଛି ଆପତ୍ତି ନାହିଁ, ଯଦି ତାହା କରିବାରେ ସିଂହଭୂମି ଉତ୍କଳର ଅଂଶ ବୋଲି ସୂଚନା ଥାଏ, ତେବେ ଆମେମାନେ ପୁରୀ କଂଗ୍ରେସରେ ଯୋଗ ଦେବାର ବିରୋଧୀ" ଏତିକି ନୁହେଁ, ସେମାନେ କହିଲେ, ସିଂହଭୂମି ଏବେ ବି ବିହାରରେ ରହିବା ପାଇଁ ଆମେ ଚାହିଁବୁ । ତାହା ହେଲେ ପରେ ବଙ୍ଗ ସୀମାକଥା ଉଠିଲେ ବେଳେ ଏ ଖଣ୍ଡକୁ ବଙ୍ଗଳାକୁ ଝିଙ୍କି ନେବାକୁ ସୁବିଧା ହେବ । କାରଣ ବିହାରର ବସ୍ତୁତଃ ଏ ଭୂମିରେ ଦାବୀ କରିବାର କିଛି ନାହିଁ । କିନ୍ତୁ ଏହି ସିଂହଭୂମି ଥରେ ଓଡ଼ିଶାକୁ ଗଲେ ଆଉ ବଙ୍ଗଳାର ଦାବୀ ଉଠାଇବାର ସହଜ ହେବନାହିଁ । ** ସେମାନେ କହିଲେ, "ଆପଣମାନେ ନେତୃ ଶ୍ରେଣୀର ଲୋକ । ଆପଣ ସୁଭାଷ, ସେନଗୁପ୍ତ, ରାଜେନ୍ଦ୍ର ପ୍ରସାଦଙ୍କ ସଙ୍ଗେ ବିଚାର କରି ଯାହା ଠିକ୍ କରିବେ ଆମେ ତାହା ମାନିବାକୁ ବାଧ୍ୟ ହେବୁ ।"

ମୁଁ ସେଠାରୁ ଗୋଟିଏ ଷ୍ଟେଟମେଣ୍ଟ ଲେଖି କଲିକତା ଓ ପାଟଣାର ପ୍ରଧାନ ପ୍ରଧାନ କାଗଜକୁ ପଠାଇଦେଲି । ମନେ କଲି ଏହି ଉପାୟରେ ସୁଭାଷ, ସେନଗୁପ୍ତ, ଓ ରାଜେନ୍ଦ୍ର ପ୍ରସାଦଙ୍କ ଦଳରେ ପ୍ରାରମ୍ଭିକ ମତାମତ ସୃଷ୍ଟି ପଡ଼ିବ । ମୁଁ ଯାହା ଲେଖିଥିଲି ତାର ସାରମର୍ମ ଟିକିଏ ଶୁଣନ୍ତୁ —

ସିଂହଭୂମି ବିହାର ପାଖ ଅଧରେ ନାହିଁ । ବିହାରୀମାନେ ମାସି ମୈଥିଳୀ ପ୍ରଭୃତି ନିଜ ନିଜର ମାତୃଭାଷାକୁ ଚଳରୁ ପକାଇ ଦେଇ ଏବେ ହିନ୍ଦିକୁ ଦେଶଭାଷା, ଅର୍ଥାତ୍ ସ୍କୁଲ କଚେରୀର ଭାଷା ରୂପେ ଧରିଛନ୍ତି । ଛୋଟନାଗପୁର ତଥା ସିଂହଭୂମିରେ ମଧ୍ୟ ତାହାହିଁ ହୋଇଯାଇଛି । ହିନ୍ଦୁସ୍ଥାନୀ ଯେତେବେଳେ ଭାରତର ରାଷ୍ଟ୍ରଭାଷା ହେଉଛି, ସେତେବେଳେ ଓଡ଼ିଶାରେ ମଧ୍ୟ ହିନ୍ଦି ଚଳିବା ଉଚିତ । ବିହାର ଏହି ହିନ୍ଦି ବଳରେ ଆଜି ସିଂହଭୂମିକୁ ଦାବୀ କରୁଛି । ଇଥାର ଅର୍ଥ କିଛିନାହିଁ । ସମସ୍ତ ଉତ୍ତର ଛୋଟନାଗପୁର ଛେଡ଼ି ସିଂହଭୂମି ପର୍ଯ୍ୟନ୍ତ ଗିଳିଦେବାକୁ ବିହାର କେବେ ସକ୍ଷମ ହେବନାହିଁ । ବିହାରର ଏ ପଣ୍ଡ ପରିଶ୍ରମ କେବଳ ଅସଙ୍ଗତ ନୁହେଁ, ଘୋର ଅଦୂର ଦର୍ଶିତାର ଫଳ ..............

୧୯୩୧-୩୨ ମସିହାରେ ଯେଉଁ ଆନ୍ଦୋଳନ ଗାନ୍ଧୀ ଭିତ୍ତିରେ ହୋଇ ସର୍ବଦଳୀୟ କଂଗ୍ରେସ ପକ୍ଷରୁ ସମାଲୋଚିତ ହୋଇଥିଲା ତାର ଫଳ ସ୍ୱରୂପ ପଣ୍ଡିତ ନୀଳକଣ୍ଠଙ୍କୁ ଉତ୍କଳ କଂଗ୍ରେସରୁ ଉଠାଇ ଦେଇ ତାଙ୍କ ସ୍ଥାନରେ ହରେକୃଷ୍ଣ ମହତାବଙ୍କୁ କାହିଁକି ବସାଇ ଦିଆଗଲା ଏବଂ ୧୯୪୬ ମସିହା ଏପ୍ରିଲରେ ସେ କଂଗ୍ରେସ ପକ୍ଷରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ନିର୍ବାଚିତ ହେଲେ, ସେ କଥା ସ୍ପଷ୍ଟ ଜଣାପଡ଼େ ।

ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର ମନ୍ତ୍ରୀ-ମଣ୍ଡଳ ଭାଙ୍ଗିଗଲା ଯେତେବେଳେ ମାର୍ଚ୍ଚ ୧୯୪୬ରେ ସାର ଷ୍ଟାଫୋର୍ଡ କ୍ରିପ୍ସ୍ ( Sir Stafford Cripps)ଙ୍କ ସଙ୍ଗେ ବ୍ରିଟିସ ପାର୍ଲାମେଣ୍ଟର ଦୁଇଜଣ କେବିନେଟ୍ ପାହ୍ୟା ମନ୍ତ୍ରୀ ଭାରତକୁ ଆସି ଭାରତ ସ୍ୱାଧୀନତା ହସ୍ତାନ୍ତରର ମସୁଧା ଚଳାଇଲେ । ସେତେବେଳେ କଂଗ୍ରେସ୍‌ର ସଭ୍ୟମାନଙ୍କ ମନରେ ବିଶ୍ୱାସ ଜନ୍ମିଲା ଯେ, ଭାରତର ଶାସନ ଭାର ତାଙ୍କ ଉପରେ ନ୍ୟସ୍ତ ହେବା ସୁନିଶ୍ଚିତ । ଏଣୁ ପ୍ରତ୍ୟେକ ପ୍ରଦେଶର କଂଗ୍ରେସ ସଂଗଠନ ମଜବୁତ କରିବା ଓ ସ୍ୱାଧୀନ-ଭାରତର ନେତାମାନଙ୍କ ମଧ୍ୟରୁ କିଏ କେଉଁ ପାହ୍ୟା ପାଇବେ, ସେ କଥାରେ ଚହଳ ସୃଷ୍ଟି ହେଲା । ଓଡ଼ିଶା ବିଧାନ ସଭାରେ ଯେଉଁ କଂଗ୍ରେସ ସଭ୍ୟଙ୍କ ଚେଷ୍ଟାରେ ମିଶ୍ରିତ ମନ୍ତ୍ରୀ-ମଣ୍ଡଳ ଗଠିତ ହୋଇଥିଲା ସେମାନେ ଅନ୍ତର୍ବିବାଦରେ ଲିପ୍ତ ହେଲେ । ଏ ପରିସ୍ଥିତିରେ ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ଦେଖିଲେ ଯେ, ମହାଭାରତୀୟ ଚିନ୍ତାରେ ଅନୁପ୍ରାଣିତ କଂଗ୍ରେସ୍ ନେତାମାନେ ନବଗଠିତ ଓଡ଼ିଶା ପ୍ରଦେଶର ସ୍ୱାର୍ଥ ପ୍ରତି ଆଉ ଧ୍ୟାନ ଦେଉ ନାହାନ୍ତି । ଏଣୁ ନିଜ ଇଚ୍ଛାରେ ସେ ରାଜନୀତି କ୍ଷେତ୍ରରୁ ବିଦାୟ ନେବାକୁ ସ୍ଥିର କରି ତା ୩୦-୬-୧୯୪୪ରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ । ତତ୍କାଳୀନ ଓଡ଼ିଶାର ଗଭର୍ଣ୍ଣର ସାର ୱିଲିୟମ୍ ହାଥର୍ନ୍ ଲୁଇସ୍ ( Sir William Hawthorne Lewis )ଙ୍କୁ ଓଡ଼ିଶାର ଶାସନ ଭାର ଅର୍ପଣ କରି ମହାରାଜା ରାଜନୀତି କ୍ଷେତ୍ରରୁ ଚିର ବିଦାୟ ନେଲେ । ତା୨୫-୫-୧୯୭୪ରେ ୮୨ ବର୍ଷ ବୟସରେ ତାଙ୍କର ଦେହାନ୍ତ ହେଲା । ତାଙ୍କ ଜୀବନର ଶେଷ ୩୦ ବର୍ଷରେ ସେ ରାଜନୀତି କ୍ଷେତ୍ରରୁ ବିଦାୟ ନେଇଥିଲେ ସୁଦ୍ଧା ଓଡ଼ିଶାର ତଥା ଓଡ଼ିଆ ଜାତିର ମଙ୍ଗଳ କାମନାହିଁ ଥିଲା ତାଙ୍କର ଜପମାଳା ।

---

ଚିନ୍ତକରଗେଲନ୍,
ପାରଳାଖେମୁଣ୍ଡି,
ଗଞ୍ଜାମ ।

---

ଓଡ଼ିଶା ହେଉଛି ବହୁ ସଂସ୍କୃତିର ମିଳନ ସ୍ଥଳ । ଯେଉଁମାନେ ଓଡ଼ିଶାକୁ ଆସିଛନ୍ତି, ସେମାନେ ତାହା ମଧ୍ୟରେ ଲୀନ ହୋଇ ଯାଇଛନ୍ତି । ବିଶାଳତା ଓ ଆତ୍ମ ବିଶ୍ୱାସ ହେଉଛି, ପ୍ରଗତିର ଧର୍ମ । ହୀନ ମନ୍ୟତା ଓ ସଂକୀର୍ଣ୍ଣତା ହେଉଚି ପତନର ଧର୍ମ ।

**ଜାନକୀ ବଲ୍ଲଭ ପଟ୍ଟନାୟକ**

# ଉତ୍କଳ ସମ୍ମିଳନୀ : ଏକ ବିହଙ୍ଗାବଲୋକନ

ଡଃ ହରିହର କାନୁନଗୋ

ଓଡ଼ିଆମାନଙ୍କର ସର୍ବପ୍ରଧାନ ଜାତୀୟ ଅନୁଷ୍ଠାନ ଥିଲା ଉତ୍କଳ ସମ୍ମିଳନୀ । ଏହା କୌଣସି ବ୍ୟକ୍ତି ବିଶେଷଙ୍କର ସଭା, କି କୌଣସି ସଂପ୍ରଦାୟମାନଙ୍କର ସମ୍ମିଳନ କିମ୍ବା କୌଣସି ସାହିତ୍ୟ ସଭା ମଧ୍ୟ ନଥିଲା । ଏହାଥିଲା କେବଳ ଓଡ଼ିଆ ଜାତିର ମହାମିଳନର ସଭା । ଓଡ଼ିଆ ଜାତି, ଭାଷା, ସାହିତ୍ୟ, ସଂସ୍କୃତି, ଧର୍ମ ଓ ଦର୍ଶନକୁ ଯେ କୌଣସି ସ୍ଥାନରେ ଥାଇ ମାତୃପ୍ରାଣ ଭଳି ଭଲ ପାଉଥିବା ଓଡ଼ିଆମାନଙ୍କର ସମ୍ମିଳନକୁ କୁହାଯାଉଥିଲା ପ୍ରକୃତ ଉତ୍କଳ ସମ୍ମିଳନୀ । ଏହି ଐତିହାସିକ ଓଡ଼ିଆ ଜାତିର ଅସ୍ତିତ୍ୱରକ୍ଷାକରିବା ସଙ୍ଗେସଙ୍ଗେ ପୂର୍ବ ଗୌରବ, ପ୍ରାଚୀନ କୀର୍ତ୍ତି ପରଂପରାର ପ୍ରେରଣାରେ କିପରି ଅନ୍ୟ ଭାରତୀୟ ଜାତିମାନଙ୍କ ସମକକ୍ଷ ହୋଇ ମହାଭାରତୀୟ ଜାତୀୟତା ସୃଷ୍ଟି ଓ ସଂରକ୍ଷଣରେ ସାହାଯ୍ୟ କରିପାରିବ, ତାହାର ବ୍ୟବସ୍ଥା କରିବା ନିମନ୍ତେ ହିଁ ଉତ୍କଳ ସମ୍ମିଳନୀର ହୋଇଥିଲା ଉତ୍ପତ୍ତି । ପ୍ରତ୍ୟେକ ଓଡ଼ିଆ ଥିଲେ ଏହି ସମ୍ମିଳନୀର ଜଣେ ଜଣେ ସଭ୍ୟ ଏବଂ ସମସ୍ତଙ୍କୁ ଜାତୀୟ ବନ୍ଧନରେ ଆବଦ୍ଧ କରି ରଖିବା ଥିଲା ଏହାର ଉଦ୍ଦେଶ୍ୟ । ଫଳରେ ରାଜନୈତିକ ଚକ୍ରରେ ଉତ୍କଳ ପ୍ରଦେଶ ବିଚ୍ଛିନ୍ନ ହେଲେ ସୁଦ୍ଧା ଏହା ଖଣ୍ଡ ବିଖଣ୍ଡିତ ଓଡ଼ିଆମାନଙ୍କର ନୈସର୍ଗିକ ଜାତୀୟ ମିଳନର ଆକାଙ୍କ୍ଷା ଜାଗ୍ରତ କରିପାରିଥିଲା । ସ୍ୱର୍ଗୀୟ ମହାରାଜା ବୈକୁଣ୍ଠ ନାଥ ଦେ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରି ବଙ୍ଗଳା, ମଧ୍ୟପ୍ରଦେଶ କିମ୍ବା ମାନ୍ଦ୍ରାଜ ସଙ୍ଗେ ରଖିବା କିମ୍ବା ଏକ ସ୍ୱତନ୍ତ୍ର ଶାସନ କରିବା ନିମନ୍ତେ ତତ୍କାଳୀନ ସରକାରଙ୍କୁ ଜଣାଇଥିବା ପ୍ରସଙ୍ଗ ରିଜିଲ୍ ସାହେବଙ୍କ ୧୯୦୩ ମସିହାର ବଙ୍ଗ ବିଚ୍ଛେଦ ନିର୍ଦ୍ଧାରଣ ପତ୍ରରୁ ଜଣାପଡ଼େ । ପ୍ରାତଃସ୍ମରଣୀୟ ଗଞ୍ଜାମ ଜିଲାସ୍ଥ ପାରଳାଖେମୁଣ୍ଡି ରାଜକୁମାର ପଦ୍ମନାଭ ଗଜପତି ନାରାୟଣ ଦେଓ, ବଳରାମ ମହାରଣା ଓ ନରସିଂହ ଦାସ ପ୍ରଭୃତି ଜାତୀୟବାଦୀ ନେତାମାନେ ଏହି ମହାନ୍ ମିଳନ ନିମନ୍ତେ ଆପ୍ରାଣ ଉଦ୍ୟମ କରି ଶେଷରେ ଇହଧାମ ତ୍ୟାଗ କରିଛନ୍ତି । କୁଳବୃଦ୍ଧ ମଧୁସୂଦନ ଏହିମାନଙ୍କର ମହତ୍ ପ୍ରେରଣାକୁ କାର୍ଯ୍ୟକାରୀ କରିବା ପାଇଁ ପ୍ରାଣସ୍ପର୍ଶୀ ସଙ୍ଗୀତରେ ଓଡ଼ିଆମାନଙ୍କ ମିଳନର ଶୁଭ ଶଂଖ ଧ୍ୱନି ବଜାଇଛନ୍ତି । ପୁଣି କବିବର ରାଧାନାଥଙ୍କ କାବ୍ୟ ସୃଷ୍ଟିରେ ବିଚ୍ଛିନ୍ନ ଉତ୍କଳର ନଦନଦୀ ଗିରିକାନନ କନ୍ଦରର ବର୍ଣ୍ଣନା ଥିବା ସଙ୍ଗେସଙ୍ଗେ ଉତ୍କଳ ପ୍ରକୃତିର ଏକତ୍ୱ ମଧ୍ୟ ପ୍ରତିପାଦିତ ହୋଇଛି । ଏତଦ୍‌ବ୍ୟତୀତ କଟକର ଉତ୍କଳ ସଭା ଓ ଗଞ୍ଜାମ ଓଡ଼ିଆ ସମାଜ ଭଳି ବହୁ ପ୍ରାଚୀନ ଅନୁଷ୍ଠାନ ପ୍ରଭୃତି ଏହାପୂର୍ବରୁ ଉତ୍କଳୀୟଙ୍କର ମିଳନ ଆକାଙ୍କ୍ଷାର ସ୍ପଷ୍ଟ ପରିଚୟ ଦେଇଛି । ଏହିଭଳି ଯେଉଁ ଜାତୀୟତାର ମିଳନ ଆକାଙ୍କ୍ଷା ବିଭିନ୍ନ ସ୍ଥାନରେ ବିଭିନ୍ନ ଲୋକଙ୍କ ହୃଦୟରେ ଯେଉଁଭଳି କାର୍ଯ୍ୟ କରୁଥିଲା, ସେଗୁଡ଼ିକୁ କେନ୍ଦ୍ରୀଭୂତ କରି ଉତ୍କଳ ଗୌରବ ମଧୁବାବୁ ଆପଣାର ଶକ୍ତି ଓ ପ୍ରତିଭାର ବଳରେ ଏହି ଉତ୍କଳ ସମ୍ମିଳନୀ ମାଧ୍ୟମରେ ଖଣ୍ଡବିଖଣ୍ଡିତ ଓଡ଼ିଆ ଜାତିର ଏକତାକୁ ସୁଦୃଢ଼ କରି ପାରିଥିଲେ । ରାଜା ପ୍ରଜା, ଧନୀ ଦରିଦ୍ର, ଶିକ୍ଷିତ ଅଶିକ୍ଷିତ, ହିନ୍ଦୁ ମୁସଲମାନ ଖ୍ରୀଷ୍ଟିଆନ୍, ବ୍ରାହ୍ମଣ, ଶୂଦ୍ର ଇତ୍ୟାଦି ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତେ ସମାନ ଓ ପ୍ରତ୍ୟେକ ବ୍ୟକ୍ତିର ଏହି ସମ୍ମିଳନୀରେ ସମାନ ଅଧିକାର, ସମାନ ସ୍ୱାର୍ଥ ଓ ସମାନ ଦାୟିତ୍ୱ ତଥା ସମାନ କର୍ତ୍ତବ୍ୟ ରହିଛି । ଏହାହିଁ ଥିଲା ସେତେବେଳେ ଏକମାତ୍ର ଗଣଚେତନା । ତେଣୁ ଓଡ଼ିଆମାନଙ୍କର ଆତ୍ମମର୍ଯ୍ୟାଦା, ଆତ୍ମ ଅଧିକାର, ଜାତୀୟ ମମତା, ସ୍ୱାର୍ଥ ତ୍ୟାଗ ଓ ଆତ୍ମୋତ୍ସର୍ଗ ପ୍ରଭୃତି ଜାତୀୟ ଗୁଣର ବିକାଶ ଘଟାଇବା ଥିଲା ଏହି ସମ୍ମିଳନୀର ପ୍ରଧାନ ଉଦ୍ଦେଶ୍ୟ । ଅତଏବ ଏକମାତ୍ର ଗୁରୁତ୍ୱପୂର୍ଣ୍ଣ ଅବିଭକ୍ତ ଜାତୀୟ ଅନୁଷ୍ଠାନ ଏହି ଉତ୍କଳ ସମ୍ମିଳନୀର ସଂକ୍ଷିପ୍ତ ଇତିହାସ ଓ ସେଥିରେ ଗୃହୀତ ପ୍ରସ୍ତାବଗୁଡ଼ିକ ସଂପର୍କରେ ଏଠାରେ ଆଲୋଚନା କରିବା ଏହି ପ୍ରବନ୍ଧର ଅଭିମୁଖ୍ୟ ।

ଜାତୀୟ ଅନୁଷ୍ଠାନ ମାଧ୍ୟମରେ ଦେଶ ମିଶ୍ରଣର ସଫଳତା ସମ୍ଭବ ହୋଇ ପାରିବ ବୋଲି ଚିନ୍ତାକରି କୁଳବୃଦ୍ଧ ମଧୁସୂଦନଙ୍କ ଆହ୍ୱାନରେ ତାହାଙ୍କ ବାସଭବନରେ ଅନୁଷ୍ଠିତ ହେଲା ଏକ ଘରୋଇ ସଭା । ସେଦିନ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ମାନ୍ୟଗଣ୍ୟ ବ୍ୟକ୍ତି କଟକରେ ସମବେତ ହୋଇ ୧୯୦୩ ମସିହା ଡିସେମ୍ବର ମାସର ଉତ୍କଳ ସମ୍ମିଳନୀର ଆଭିମୁଖ୍ୟକୁ ପରିପୁଷ୍ଟ କରିବା ପାଇଁ ନିଷ୍ପତ୍ତି ନେଇଥିଲେ ।

ଓଡ଼ିଆ ଭାଷାର ଉନ୍ନତି ଓ ଓଡ଼ିଶା ମିଶ୍ରଣ ସମ୍ପର୍କୀୟ ପ୍ରକଳ୍ପ ମଧୁବାବୁଙ୍କ ପୌରୋହିତ୍ୟରେ କଟକଠାରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ପ୍ରାଥମିକ ସମାରୋହରେ ଉଜ୍ଜୀବିତ ହୋଇଥିଲେ ସୁଦ୍ଧା ତାହାର ଭିତ୍ତିଭୂମି ଥିଲା ଗଞ୍ଜାମ । ୧୯୦୧ ମସିହା ରମ୍ଭାଠାରେ ପ୍ରଥମେ ଖଲ୍ଲିକୋଟ ରାଜା ସାହେବ ହରିହର ମର୍ଦ୍ଦରାଜଙ୍କ ନେତୃତ୍ୱରେ ଏବଂ ଗଞ୍ଜାମର ପ୍ରଥମ ଗ୍ରାଜୁଏଟ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସଭାପତିତ୍ୱରେ ଯେଉଁ ସଭା ଅନୁଷ୍ଠିତ ହୋଇ ଓଡ଼ିଆ ଜାତିର ମୌଳିକ ସମସ୍ୟା ଉତ୍କଳର ଏକତ୍ରିକରଣ ଉଦ୍ୟମ ପୁଷ୍ଟତା ଲାଭକଲା । ତାହାହିଁ ୧୯୦୩ ମସିହାରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'କୁ ଜୀବନ୍ତ କରି ଗଢ଼ିଲା ।

୧୯୦୩ ମସିହାରେ ଦଳେ ଉତ୍ସାହୀ ଯୁବକ ଖଲ୍ଲିକୋଟ ରାଜା ସାହେବଙ୍କ ନେତୃତ୍ୱରେ ଏକତ୍ରିତ ହୋଇ 'ଗଞ୍ଜାମ ଓଡ଼ିଆ ଜାତୀୟ ସମିତି' ନାମରେ ଏକ ଅନୁଷ୍ଠାନ ଗଢ଼ିଥିଲେ । ସେହିବର୍ଷ ଗୁଡ୍‌ଫ୍ରାଇଡ଼େ ( Good Friday ) ଛୁଟିରେ ବ୍ରହ୍ମପୁରରେ ତାର ପ୍ରଥମ ଅଧିବେଶନ ହୋଇଥିଲା । ଏଥିରେ ଯୋଗ ଦେବା ପାଇଁ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳରୁ ବିଶିଷ୍ଟ ବ୍ୟକ୍ତିମାନେ ନିମନ୍ତ୍ରିତ ହୋଇ ଆସିଥିଲେ । ଏହି ଅଧିବେଶନରେ ସମସ୍ତ ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ପ୍ରତ୍ୟେକ ସମ୍ମିଳିତ ଭାବରେ ନିଜ ନିଜର ଇଚ୍ଛା ପ୍ରକାଶ କରିଥିଲେ । ଏହି ପ୍ରସଙ୍ଗରେ ଶ୍ରୀଯୁକ୍ତ ରାମକୃଷ୍ଣ ମିଶ୍ର କହିଥିଲେ "୧୯୦୩ ସାଲରେ ବ୍ରହ୍ମପୁରଠାରେ ଗଞ୍ଜାମ ଓଡ଼ିଆ ଜାତୀୟ ସମିତିର ପ୍ରଥମ ଅଧିବେଶନ ହୋଇଥିଲା । ଉକ୍ତ ଅଧିବେଶନରେ ଓଡ଼ିଆମାନଙ୍କର ଅଗ୍ରଜ ପୂଜନୀୟ ମଧୁସୂଦନ ଦାସ, ସି. ଆଇ. ଇ. ମହୋଦୟ ଯେଉଁ ବକ୍ତୃତା କରିଥିଲେ ଉକ୍ତ ବକ୍ତୃତାର ଏକ ସ୍ଥଳରେ ସେ ବାଷ୍ପ ଗଦ୍ ଗଦ୍ ସ୍ୱରରେ କହିଥିଲେ ଯେ, ଆମ୍ଭମାନଙ୍କ ପ୍ରିୟତମ ମାତୃଭୂମି ଉତ୍କଳ ଜନନୀଙ୍କର ଅଙ୍ଗ ଛିନ୍ନ ବିଚ୍ଛିନ୍ନ ହୋଇଛି ଏବଂ ତାହା ଜର୍ଜର ହୋଇଯାଇଛି । ସେତେବେଳେ ମୁଁ ବାଳକ ଥିଲି । ଏଥି ହେତୁରୁ ମାତୃଭୂମିର କିପ୍ରି କିପରି ଜର୍ଜର ହୋଇଛି ହୃଦୟଙ୍ଗମ କରି ପାରିଥିବେ । ନିଜର ଜ୍ଞାନ ଗୁମାନ ଚତୁରୀକୁ ବିଶ୍ୱାସକରି ଉକ୍ତ ମନ୍ତବ୍ୟକୁ ଜ୍ୟେଷ୍ଠ ଭ୍ରାତାଙ୍କର ବୃଦ୍ଧ ବୟୋଚିତ ପ୍ରଳାପ ଭାବିଥିଲି । କିନ୍ତୁ ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ସଭା ସମିତିରେ ଯୋଗଦେଇ ମାତୃଭୂମିର ଅବସ୍ଥା ଯତ୍ କିଞ୍ଚିତ ଆଲୋଚନା କରିବାକୁ ସୁବିଧାପାଇ ଜାଣିଲି ଯେ, ଉକ୍ତ ମନ୍ତବ୍ୟରେ ନିଗୂଢ଼ ସତ୍ୟ ନିହିତ ଅଛି ଏବଂ ମୋର ଜ୍ଞାନଗୁମାନ ଚତୁରୀ ଥିଲା ବାଳକେ ଚପଳତା ମାତ୍ର" ।

(ଉତ୍କଳ ସମ୍ମିଳନୀ ସଭାର ନବମ ଅଧିବେଶନ, ପୁରୀ, ପୃ ୭୧-୭୨

ତାପରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଆରମ୍ଭ ହେଲା ୧୯୦୩ ମସିହା ଡ଼ିସେମ୍ବର ୩୦, ୩୧ରେ କଟକ ଉଦ୍‌ଗା ପଡ଼ିଆରେ । ମେଦିନୀପୁର, ସମ୍ବଲପୁର ଓ ଗଞ୍ଜାମ ପ୍ରଭୃତି ବିଭିନ୍ନ ଅଞ୍ଚଳରୁ ୩୩୫ ଜଣ ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ । ତାଳଚେର, କେନ୍ଦୁଝର, ଆଠଗଡ଼ ଓ ଢେଙ୍କାନାଳର ରାଜାମାନେ ମଧ୍ୟ ଏହି ସମ୍ମିଳନୀରେ ଉପସ୍ଥିତ ଥିଲେ । ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ସଭାପତିତ୍ୱରେ କେନ୍ଦୁଝରର ମହାରାଜା ଓଡ଼ିଆ ଭାଷାଭାଷୀ ସମସ୍ତ ଅଞ୍ଚଳର ଏକତ୍ରୀକରଣ ପାଇଁ ପ୍ରସ୍ତାବ ଆଣିଲେ ଏବଂ ଓଡ଼ିଆଙ୍କ ସପକ୍ଷରେ ଲର୍ଡ କର୍ଜନଙ୍କ ପ୍ରକାଶିତ ମନ୍ତବ୍ୟ ପାଇଁ ତାହାଙ୍କୁ ସଭାରେ ଧନ୍ୟବାଦ ଦିଆଯାଇଥିଲା । ଓଡ଼ିଆମାନଙ୍କ ପାଇଁ ଏକ ଜାତୀୟ ପଗଡ଼ି ସମ୍ମିଳନୀରେ ବ୍ୟବହୃତ ହୋଇଥିଲା । ସମ୍ବଲପୁର କୋର୍ଟ କଚେରୀରେ ଓଡ଼ିଆଭାଷା ପ୍ରଚଳନ କରାଯିବାରୁ ଆନନ୍ଦ ପ୍ରକାଶ ପାଇଥିଲା । ସାହିତ୍ୟ ଓ କୃଷିର ଉନ୍ନତି ତଥା ବିଦେଶକୁ ଓଡ଼ିଆ ଛାତ୍ର ପ୍ରେରଣ ସମ୍ବନ୍ଧରେ ପ୍ରସ୍ତାବମାନ ଗୃହୀତ ହୋଇଥିଲା । ସେହିବର୍ଷ ଓଡ଼ିଶାର ନାନାସ୍ଥାନରେ ସମ୍ମିଳନୀର ୩୮୧ଟି ଶାଖା ୧୫ଜଣ ଦରମାପ୍ରାପ୍ତ ପ୍ରଚାରକଙ୍କ ଦ୍ୱାରା ଗଢ଼ାଯାଇଥିଲା । ମଧୁବାବୁ ଥିଲେ ସେବର୍ଷ ତା'ର ସମ୍ପାଦକ ।

୧୯୦୪ ମସିହା ଡ଼ିସେମ୍ବର ୨୮, ୨୯ ତାରିଖରେ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ଧରାକୋଟରାଜା ଶ୍ରୀ ମଦନ ମୋହନ ସିଂହଦେଓଙ୍କ ସଭାପତିତ୍ୱରେ କଟକଠାରେ ଅନୁଷ୍ଠିତ ହେଲା । କେନ୍ଦୁଝରର ମହାରାଜା ଏହାର ଥିଲେ ସଭାପତି ( Chairman ) । ଦୁଇହଜାର ଦର୍ଶକଙ୍କ ମେଳରେ ସମ୍ମିଳନୀଟି ମୁଖରିତ ହୋଇ ଉଠିଥିଲା । ଓଡ଼ିଶାକୁ ସ୍ୱତନ୍ତ୍ର ଶାସନାଧୀନ କରିବାପାଇଁ ଲର୍ଡ କର୍ଜନଙ୍କ ପ୍ରସ୍ତାବକୁ ପୁଣିଥରେ ଧନ୍ୟବାଦ ଦିଆଯାଇଥିଲା ।

ଉତ୍କଳ ସମ୍ମିଳନୀର ତୃତୀୟ ଅଧିବେଶନ ବସିଲା ୧୯୦୬ ମସିହା ଅପ୍ରେଲ ମାସ ୧୩ ଓ ୧୪ ତାରିଖରେ । ପନ୍ଦର ହଜାର ଲୋକଙ୍କ ଉପସ୍ଥିତିରେ ତାଳଚେର ରାଜା କିଶୋରଚନ୍ଦ୍ର ବୀରବର ହରିଚନ୍ଦନଙ୍କ ସଭାପତିତ୍ୱରେ ବାଲେଶ୍ୱରଠାରେ ହେଲା ବିରାଟ ସାଧାରଣ ସଭା । ଓଡ଼ିଶାରେ ସମ୍ବଲପୁରର ମିଶ୍ରଣ ଖବର ଉପସ୍ଥିତ ଜନତାଙ୍କୁ ଖୁବ୍ ଆନନ୍ଦ ଦେଇଥିଲା ଏବଂ ଓଡ଼ିଶା ସହିତ ଗଞ୍ଜାମର ମିଶ୍ରଣ ପାଇଁ ପୁନର୍ବାର ପ୍ରସ୍ତାବ ଆଗତ କରାଯାଇ ଗୃହୀତ ହୋଇଥିଲା ।

ଉତ୍କଳ ସମ୍ମିଳନୀର ଚତୁର୍ଥ ଅଧିବେଶନ କନିକାରାଜାଙ୍କ ସଭାପତିତ୍ୱରେ ଉଦ୍‌ଘାଟିତ ହେଲା ୧୯୦୬ ଡ଼ିସେମ୍ବର ୨୬ ଓ ୨୭ ତାରିଖ ବ୍ରହ୍ମପୁରଠାରେ । ବଡ଼ଖେମୁଣ୍ଡିର ରାଜା ସାହେବ ଥିଲେ ଏହି ଅଭ୍ୟର୍ଥନା ସମିତିର ସଭାପତି । ଦୁଇ ହଜାର ଦର୍ଶକଙ୍କ ଆଗରେ ମାନ୍ଦ୍ରାଜ ଓଡ଼ିଆ ଅଞ୍ଚଳରେ ଓଡ଼ିଆ ଭାଷାରେ ଶିକ୍ଷାଦାନ କରାଯାଇଥିବା ଯୋଗୁ ସରକାରଙ୍କୁ ଧନ୍ୟବାଦ ଜ୍ଞାପନ କରାଯାଇଥିଲା । ସେକ୍ରେଟାରୀ ଶ୍ରୀଯୁକ୍ତ ନରସିଂହ ଦାସଙ୍କ ପରିଚାଳନାରେ ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ସଫଳ ହେଲା ।

୧୯୦୮ ମସିହା ଏପ୍ରିଲ ମାସ ୧୮ ଓ ୧୯ ତାରିଖରେ ପୁରୀଠାରେ ଆରମ୍ଭ ହେଲା ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନ । ଏହି ଅଧିବେଶନର ସଭାପତି ଥିଲେ ସୁରଙ୍ଗୀର ରାଜା ସାହେବ । ପୁଣି ପାରିକୁଦ ରାଜା ଶ୍ରୀ ଗୌରଚନ୍ଦ୍ର

ମାନସିଂହ ହରିଚନ୍ଦନ ମର୍ଦ୍ଦରାଜ ଭ୍ରମରବର ରାୟ ଥିଲେ ଏହି ସମ୍ମିଳନୀର ସଭାପତି । ପାଞ୍ଚ ହଜାର ଦର୍ଶକଙ୍କ ଉପସ୍ଥିତିରେ ଶ୍ରୀବତ୍ସ ପଣ୍ଡା ଓ ବଡ଼ଖେମୁଣ୍ଡି ରାଜା ନାରୀଶିକ୍ଷା ପାଇଁ ଦାନ କରିଥିବା ଟ୧୬୦୦ ଙ୍କା ବିଷୟରେ ଆଲୋଚନା ହୋଇଥିଲା । ଲଣ୍ଡନରେ ମଧୁବାବୁ ବିଭିନ୍ନ କାର୍ଯ୍ୟରେ ଓଡ଼ିଶାପାଇଁ ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିଥିବାରୁ ସଭାରେ ତାହାଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରାଯାଇଥିଲା । ଜଗବନ୍ଧୁ ସିଂହ ଥିଲେ ଏହାର ସମ୍ପାଦକ ।

ସେହିବର୍ଷ ଏହି ସମ୍ମିଳନୀର ଷଷ୍ଠ ଅଧିବେଶନ ଡିସେମ୍ବର ମାସରେ ଆଠଗଡ଼ ରାଜାଙ୍କ ସଭାପତିତ୍ୱରେ କଟକଠାରେ ବସି ଶିକ୍ଷା ଓ ଉତ୍କଳ ସମ୍ମିଳନୀ ପାଇଁ ଦୁଇଟି ପାଣ୍ଠି ସୃଷ୍ଟି ହେଲା ।

୧୯୧୦ ମସିହା ଡିସେମ୍ବର ୩୦ ଓ ୩୧ ତାରିଖରେ କଟକଠାରେ ଉତ୍କଳ ସମ୍ମିଳନୀର ସପ୍ତମ ଅଧିବେଶନ ବସିଲା । ରାଜା ବୈକୁଣ୍ଠନାଥ ଦେଙ୍କ ସଭାପତିତ୍ୱରେ ଦେଶ ମିଶ୍ରଣ ପ୍ରସ୍ତାବ ସମ୍ପର୍କରେ ହୋଇଥିବା ଦାବୀ ବଳବତ୍ତର ହେଲା ମଧୁପୁରର ରାଜା ଥିଲେ ଏହି ସମ୍ମିଳନୀର ସଭାପତି ।

୧୯୧୨ ମସିହା ଅପ୍ରେଲ ୬ ଓ ୭ ତାରିଖରେ ବ୍ରହ୍ମପୁରରେ ହୋଇଥିବା ଉତ୍କଳ ସମ୍ମିଳନୀର ଅଷ୍ଟମ ଅଧିବେଶନରେ ସଭାପତି ସୁରଙ୍ଗୀ ରାଜା ଓଡ଼ିଆମାନଙ୍କ ଦାବୀ ବିଷୟରେ ଆଠଶହ ଦର୍ଶକଙ୍କୁ ସଚେତନ କରାଇବାକୁ ଲାଗିଲେ । ମଞ୍ଜୁଷାର ଯୁବରାଜ ଶ୍ରୀନିବାସ ରାଜମଣୀ ଏହି ସମ୍ମିଳନୀର ସଭାପତି ଓ ଚିକିଟି ରାଜା ରାଧାମୋହନ ରାଜେନ୍ଦ୍ରଦେବ ହେଲେ ସମ୍ପାଦକ । ରସୁଲକୋଣ୍ଡାରେ ହାଇସ୍କୁଲଟିଏ କରିବା ପାଇଁ ସେଠାରେ ପ୍ରସ୍ତାବ କରାଯାଇଥିଲା ।

୧୯୧୩ ମସିହା ଡିସେମ୍ବର ୨୮ ଓ ୨୯ ତାରିଖରେ ପୁରୀଠାରେ ମଧୁବାବୁଙ୍କ ସଭାପତିତ୍ୱରେ ହେଲା ଉତ୍କଳ ସମ୍ମିଳନୀର ନବମ ଅଧିବେଶନ । ପୁରୀ ଏମାରମଠର ମହନ୍ତ ଥିଲେ ଏହାର ସଭାପତି । ଗଞ୍ଜାମ ଓଡ଼ିଆମାନଙ୍କ ସମସ୍ୟାର ସମାଧାନ ଦାବୀ ବିଷୟରେ ଆଲୋଚନା ପାଇଁ ଗଞ୍ଜାମର ବିଭିନ୍ନ ଅଞ୍ଚଳରୁ କେବଳ ୪୦୦୦ ପ୍ରତିନିଧି ଯୋଗ ଦେଇଥିଲେ । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଉଦ୍ୟମରେ ସତ୍ୟବାଦୀଠାରେ ଗୁରୁକୁଳାଶ୍ରମ ପଦ୍ଧତିରେ ନିର୍ମିତ ସତ୍ୟବାଦୀ ବନ ବିଦ୍ୟାଳୟ (୧୯୦୯)ର କର୍ମକର୍ତ୍ତାମାନଙ୍କୁ ଏହି ସଭାରେ ଉତ୍ସାହିତ କରାଯାଇଥିଲା । କାରଣ ଓଡ଼ିଶାର ବିକଳାଙ୍ଗ ଅବସ୍ଥାର ଦୂରୀକରଣ, ଓଡ଼ିଆ ଭାଷା ଓ ସଂସ୍କୃତିର ଉନ୍ନତି ତଥା ଓଡ଼ିଆଙ୍କୁ ଦୁଃସ୍ଥ ଅବସ୍ଥାରୁ ଉଦ୍ଧାର କରିବା ଥିଲା ଏହି ଜାତୀୟ ବିଦ୍ୟାଳୟର ଲକ୍ଷ୍ୟ ।

୧୯୧୪ ମସିହା ଡିସେମ୍ବର ୨୬, ୨୭ ତାରିଖରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ବସିଲା ପାରଳାଖେମୁଣ୍ଡିଠାରେ । ସମ୍ମିଳନୀର ସଭାପତି ଥିଲେ କୃଷ୍ଣଚନ୍ଦ୍ରଗଜପତିଙ୍କ ମାମୁଁ ଜୟପୁର ରାଜା ବିକ୍ରମଦେବ ବର୍ମା । ପଣ୍ଡିତ ଗୋପବନ୍ଧୁ ଦାସ ଓ ଶଶୀଭୂଷଣ ରଥ ଏହି ସମ୍ମିଳନୀରେ ଯୋଗଦେଇ ଓଡ଼ିଆ ଆନ୍ଦୋଳନ ବିଷୟରେ ସୂଚନା ଦେଲେ । ପାରଳା ମହାରାଜା ଓଡ଼ିଆ ଭାଷାଭାଷୀ ସମସ୍ତ ଅଞ୍ଚଳକୁ ମିଶାଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଆବଶ୍ୟକ ବୋଲି ପ୍ରସ୍ତାବ ଦେଲେ । କାରଣ ଅନ୍ୟ ପଡ଼ୋଶୀମାନଙ୍କ ପ୍ରଭାବରୁ ମୁକ୍ତ ହୋଇ ଓଡ଼ିଆ ନିଜେନିଜର ଗୃହ ସଜାଇବାକୁ ସମର୍ଥ ହେବା ଉଚିତ୍ । ମିଃ ଦାସ ଏପ୍ରସ୍ତାବରେ ଏକମତ ନହୋଇ କହିଲେ ଯେ ଇଂରେଜ ସରକାର ବହୁଅର୍ଥ ବ୍ୟୟକରି ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଆଦୌ ଆଗ୍ରହ ପ୍ରକାଶ କରିବେ ନାହିଁ । ଫଳରେ ଏହି ପ୍ରସ୍ତାବଟି ନିଷ୍ଫଳ ହୋଇଯିବ । କିନ୍ତୁ ପାରଳା ମହାରାଜା ଏକଥାର ଉତ୍ତର ଦେଇ କହିଲେ, "ପିଲା ଯଦି ମାକୁ ଅଳି କରେ ଓ ବହୁତ କିଛି ଖାଇବାକୁ ମାଗେ ମା'ତାର ସ୍ୱାସ୍ଥ୍ୟ ଦୃଷ୍ଟିରୁ ଅଳ୍ପ ହେଲେ ମଧ୍ୟ ଦେଇ ପିଲାକୁ ସନ୍ତୁଷ୍ଟ କରେ । ମଧୁବାବୁଙ୍କ ଅନିଚ୍ଛା ସତ୍ତ୍ୱେ ଏପ୍ରସ୍ତାବରେ ସମ୍ମତି ପ୍ରଦାନ କଲେ । ଏହି ସମ୍ମିଳନୀରେ ସିଂହଭୂମ, ଜୟପୁର ଓ ଫୁଲଝର ପ୍ରଭୃତିରେ ଓଡ଼ିଆ କଚେରୀ ଭାଷା ଓ ଜୟପୁରକୁ ସ୍ୱତନ୍ତ୍ର ଜିଲ୍ଲା କରିବା ପାଇଁ ଦାବୀ ହୋଇ-ଥିଲା । ପାଞ୍ଚ ହଜାର ଦର୍ଶକଙ୍କ ମଧ୍ୟରୁ ଦୁଇ ହଜାର ଦର୍ଶକ ବାହାରୁ ଆସି ଓଡ଼ିଆ ଜାତିର ଏକତା ରକ୍ଷା ପାଇଁ ସମ୍ମିଳନୀରେ ଏକତ୍ରିତ ହୋଇଥିଲେ । ରାଧାକାନ୍ତ ମଠ ମହନ୍ତ ଥିଲେ ସଭାପତି ( Chairman ) ଓ ନିତ୍ୟାନନ୍ଦ ପଟ୍ଟନାୟକ ଥିଲେ ଏହାର ସଂପାଦକ ( Secretary ) । ପାରଳାର ରାଜା ସାହେବ ଏହି ଉପଲକ୍ଷେ ସେତେବେଳେ ଦଶ ହଜାର ଟଙ୍କା ବ୍ୟୟ କରି ଅଧିବେଶନଟିକୁ ଚମତ୍କୃତ କରାଇବା ସଙ୍ଗେ ସଙ୍ଗେ ଓଡ଼ିଆ ଦାବୀର ପ୍ରକୃତ ଲକ୍ଷ୍ୟ ପୂରଣ ଦିଗରେ ସଚେଷ୍ଟ ହୋଇଥିଲେ ।

୧୯୧୫ ମସିହା ଡିସେମ୍ବର ୨୭ ଓ ୨୮ ତାରିଖରେ ସିଂହଭୂମର କେରା ରାଜାସାହେବ ଲକ୍ଷ୍ମୀନାରାୟଣ ସିଂହଦେଓଙ୍କ ସଭାପତିତ୍ୱରେ ଉତ୍କଳ ସମ୍ମିଳନୀର ଏକାଦଶ ଅଧିବେଶନ ସମ୍ବଲପୁରରେ ଅନୁଷ୍ଠିତ ହେଲା । ଓଡ଼ିଶା ପାଇଁ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ଦାବୀ ଏବଂ ଇମ୍ପେରିଆଲ କାଉନସିଲରେ ଜଣେ ଓଡ଼ିଆ ପ୍ରତିନିଧି ନେବାପାଇଁ ପ୍ରସ୍ତାବ କରାଗଲା ।

୧୯୧୬ ମସିହା ଡିସେମ୍ବର ୨୯,୩୦ ତାରିଖରେ ବାଲେଶ୍ୱର-ଠାରେ ଉତ୍କଳ ସମ୍ମିଳନୀର ଦ୍ୱାଦଶ ଅଧିବେଶନ ଅନୁଷ୍ଠିତ ହୋଇ-ଥିଲା । ଏହାର ସଭାପତି ଥିଲେ ମଞ୍ଜୁଷାର ରାଜା ସାହେବ ଶ୍ରୀନିବାସ ରାଜମଣି । ମାନ୍ଦ୍ରାଜ, ବଙ୍ଗର ଓଡ଼ିଆ ଅଞ୍ଚଳସବୁ ଓଡ଼ିଶାରେ ମିଶାଇବା, ସିଂହଭୂମି ଓ ମଧ୍ୟପ୍ରଦେଶରେ ଓଡ଼ିଆ ଭାଷା ପ୍ରଚଳନ ଏବଂ ବିଶାଖାପାଟଣାରେ କରଣମାନଙ୍କୁ ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷଙ୍କଦ୍ୱାରା ଓଡ଼ିଆ ବୋଲି ଗ୍ରହଣ କରିବା ପ୍ରଭୃତି ପ୍ରସ୍ତାବଗୁଡ଼ିକ ସଭରେ ଗୃହୀତ ହେଲା । ପୁଣି ଦେଶ ମିଶ୍ରଣ ସଂପର୍କରେ କାର୍ଯ୍ୟ କରିବା ଲାଗି Utkal Union Committee ଗଠନ କରାଗଲା । ସେହି କମିଟିରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବିଶିଷ୍ଟ ବ୍ୟକ୍ତି ରୂପେ ମଧୁସୂଦନ ଦାସ, ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ସୁଦାମ ଚରଣ ନାୟକ, ବ୍ରଜସୁନ୍ଦର ଦାସ, ହରିହର ପଣ୍ଡା, ଗୋପବନ୍ଧୁ ଦାସ ଏବଂ ଶୋଭାଚନ୍ଦ୍ର ସିଂହଦେଓ ପ୍ରଭୃତି ସାତଜଣଙ୍କୁ ସଭ୍ୟ ରୂପେ ଗ୍ରହଣ କରାଗଲା ।

ପୁଣି ତା'ପରବର୍ଷ ୧୯୧୭ ମାର୍ଚ୍ଚ ୩୦,୩୧ ତାରିଖରେ ଉତ୍କଳ ସମ୍ମିଳନୀର ତ୍ରୟୋଦଶ ଅଧିବେଶନ ବସିଲା କଟକ ଠାରେ ଫକୀର ମୋହନ ସେନାପତିଙ୍କ ଅଧ୍ୟକ୍ଷତାରେ । ଏହାର ସଭାପତି

ଥିଲେ କନିକାର ରାଜାସାହେବ । ଓଡ଼ିଶାରେ ଶିଳ୍ପର ପୁନରୁଦ୍ଧାର Imperial Council କୁ ଦୁଇଜଣ ଓଡ଼ିଆ ପ୍ରତିନିଧି ପ୍ରେରଣ, ପ୍ରାଦେଶିକ Executive Council କୁ ଜଣେ ଓଡ଼ିଆ ପ୍ରତିନିଧି ପଠାଯିବା ସମ୍ବନ୍ଧରେ ପ୍ରସ୍ତାବମାନ ଗ୍ରହଣ କରାଯାଇଥିଲା । ସମ୍ମିଳନୀର ମୁଖପତ୍ର ସ୍ୱରୂପ "The Oriya" ପତ୍ରିକା ଗ୍ରହଣ କରାଯାଇ ଓଡ଼ିଆ ଆନ୍ଦୋଳନର ବିଭିନ୍ନ ସମସ୍ୟା ସଂପର୍କରେ ଆଲୋକପାତ କରାଯାଇ ପାରିବ ବୋଲି ସ୍ଥିର ହେଲା । ସେ ସମୟରେ ଆଠଗଡ଼ ରାଜା ବସ୍ତ୍ରଶିଳ୍ପ ପାଇଁ ଦଶ ହଜାର ଟଙ୍କା ଦାନ କରିଥିଲେ । ଓଡ଼ିଆମାନଙ୍କର ଅର୍ଥନୈତିକ ବିକାଶପାଇଁ ଐକ୍ୟବଦ୍ଧ ହେବା ଥିଲା ଏହି ସମ୍ମିଳନୀର ଉଦ୍ଦେଶ୍ୟ । ସେତେବେଳେ ସିଂହଭୂମର କିଶୋର ଚନ୍ଦ୍ର ଦେବ ଓଡ଼ିଆଭାଷା ଓ ସଂସ୍କୃତିର ପୁନର୍ଜାଗରଣ କରିବା ପାଇଁ ଓଡ଼ିଆ ଭାଇମାନଙ୍କୁ ଆହ୍ୱାନ ଦେଇ ଗାଇଥିଲେ:-

"ଓଡ଼ିଆ ଆମ ମାତୃଭାଷା
ଓଡ଼ିଆ ଆମ ପ୍ରାଣ
ଓଡ଼ିଶା ଦେଶରେ ଜନ୍ମ ଆମର
ଓଡ଼ିଆର କରୁଟାଣ !

ଆସ ଆସଭାଇ ମନ ପ୍ରାଣଦେଇ
ରଖିବା ଓଡ଼ିଆ ମାନ,
କହିବା ଓଡ଼ିଆ ପଢ଼ିବା ଓଡ଼ିଆ
ଗାଇବା ଓଡ଼ିଆ ଗାନ ।"

( ସାପ୍ତାହିକ ଆଶା, ଅପ୍ରେଲ, ୧,୧୯୧୭ )

୧୯୧୭/୧୯୧୮ ସେପ୍ଟେମ୍ବର ୨୧, ୨୨ ତାରିଖରେ ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନ କଟକଠାରେ ମଧୁବାବୁଙ୍କ ସଭାପତିତ୍ୱରେ ବସିଲା । ଏହି ସମ୍ମିଳନୀରେ ମଣ୍ଟେଗୁ ଚେମସ୍ ଫୋର୍ଡ ରିପୋର୍ଟ ସଂକ୍ରାନ୍ତରେ ବିଚାର ହୋଇଥିଲା । ବ୍ରଜସୁନ୍ଦର ଦାସ ଥିଲେ ଏହାର ସଂପାଦକ ।

ତାପରେ ୧୯୧୯ ମସିହା ଅପ୍ରେଲମାସ ୧୯ ଓ ୨୦ ତାରିଖରେ ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସଭାପତିତ୍ୱରେ କଟକରେ ଅନୁଷ୍ଠିତ ହେଲା । ଅସଂଖ୍ୟ ଓଡ଼ିଆ ଦର୍ଶକଙ୍କ ଉପସ୍ଥିତିରେ ସମଗ୍ର ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଏହି ଅଧିବେଶନରେ ପ୍ରବଳ ଦାବୀ ହୋଇଥିଲା । ଏହି ଅଧିବେଶନର ସଭାପତିଙ୍କ ବକ୍ତୃତାର ଶେଷାଂଶରେ ପଣ୍ଡିତ ଗୋପବନ୍ଧୁ ଦାସ କହିଥିଲେ, "ଆମ୍ଭମାନଙ୍କ ସମ୍ମୁଖରେ ଅସଂଖ୍ୟ କାର୍ଯ୍ୟ ରହିଛି । ଜୀବନରେ ଯେ କୌଣସି କ୍ଷେତ୍ରକୁ ଦେଖିଲେ ତାହା ବିସ୍ତୃତ ପତିତ ପ୍ରାନ୍ତର ହୋଇ ପଡ଼ିଅଛି । ଜଙ୍ଗଲ ଶୋଧ କରିବାକୁ ହେବ, ଭୂମି ଚଷିବାକୁ ହେବ, ଖତ ଦେବାକୁ ହେବ, ପରେ ମଞ୍ଜି ବୁଣିବାକୁ ହେବ, ଏଥିରେ ପୁଣି କେତେ ବାଧା ବିପତ୍ତି ଅଛି, ସେସବୁ ସହିବାକୁ ହେବ । ପ୍ରାଣରେ ଧୈର୍ଯ୍ୟ ଏବଂ ବିଶ୍ୱାସ ରଖି କ୍ରମାଗତ ଚାଲିବାକୁ ହେବ ଏଥିରେ ବିଶ୍ରାମ ନାହିଁ, କର୍ମରେ ବିରାମ ନାହିଁ । ଜାତୀୟ କାର୍ଯ୍ୟ ପଥରେ ସାଧନା ସହଜ ନୁହେଁ । 'ଦୁର୍ଗମ ପଥ ଏ ଉଚ୍ଚନ ଭୟେ ଭାଙ୍ଗିଲେ ଯୋଗୀଜନ ।' କିନ୍ତୁ ଏହା ବୋଲି ଅବିଶ୍ୱାସ, ଅବସାଦ, ନିରାଶାରେ ବିକମ୍ପିତ ହେବାର ନୁହେଁ । ଭାଇ ! ବହୁଦୂରରେ ଏହି ଯେ ନୀଳଚକ୍ର ଉପରେ ଧ୍ୱଜା ଉଡ଼ୁଅଛି ତାହାର ଉପରେ ଲକ୍ଷ୍ୟ ରଖିବାକୁ ହେବ । ପଥ ଅନେକ ସ୍ଥଳେ ଦୁସ୍ତର ଓ ଦୁର୍ଗମ । ଗଲେ ପଛେ ଯାଉ ଜୀବ, ଯାହା ହେବ ଦେଖାଯିବ ।' ଏହି ପଣ କରିବାକୁ ହେବ । ଏ ଦୁସ୍ତର ଦୁର୍ଗମପଥରେ କେତେ କର୍ମୀଙ୍କୁ ଜୀବନ ଦେବାକୁ ହେବ । ବ୍ୟକ୍ତିବିଶେଷର ତ୍ୟାଗରେ ଜାତୀୟ ଶକ୍ତି ପ୍ରତିଷ୍ଠିତ ହେବ । ଏହାହିଁ ଆମ୍ଭମାନଙ୍କର ଆତ୍ମ ଲାଭର ଉପାୟ । ଭୟ ନାହିଁ । ନିରାଶା ନାହିଁ । ମାଭୈ ମାଭୈ ନାଦରେ ଉତ୍କଳ ଜନନୀ ଆମ୍ଭମାନଙ୍କୁ ଆଶୀର୍ବାଦ କରୁଛନ୍ତି ।" (ସତ୍ୟବାଦୀ, ୪-୮-୧୯, ୧୩୨୫-୨୬ ବିଛା-ମୀନ, ପୃଷ୍ଠା-୨୯୪-୩୩୭) ।

୧୯୨୦ ମସିହାରେ ଉତ୍କଳ ସମ୍ମିଳନୀର ପଞ୍ଚଦଶ ଅଧିବେଶନ ପୁରୀଠାରେ ଚନ୍ଦ୍ରଶେଖର ବେହେରାଙ୍କ ଅଧ୍ୟକ୍ଷତାରେ ବସି ଓଡ଼ିଆ ଆନ୍ଦୋଳନରେ ଏକତ୍ରୀକରଣ ପ୍ରସ୍ତାବ ପୁଣିଥରେ ଗୃହୀତ ହୋଇଥିଲା ।

୧୯୨୦ ମସିହା ଡିସେମ୍ବର ମାସରେ ଅନୁଷ୍ଠିତ ନିଖିଳ ଭାରତ ଜାତୀୟ କଂଗ୍ରେସ ନାଗପୁର ଅଧିବେଶନରେ ପଣ୍ଡିତ ଗୋପବନ୍ଧୁ ଦାସ ଯୋଗଦେଇ ଓଡ଼ିଆଙ୍କ ପ୍ରତି ସହାନୁଭୂତି ଏବଂ ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଗୁଡ଼ିକର ଏକତ୍ରୀକରଣ ଓ ଭାଷା ସୂତ୍ରରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ପ୍ରସ୍ତାବ ଆଗତକରି ମହାତ୍ମାଗାନ୍ଧୀଙ୍କ ଦ୍ୱାରା ତାହା ଗୃହୀତ କରାଇଥିଲେ । ସେଠାରୁ ଫେରି ଗୋପବନ୍ଧୁ ଦାସ ୧୯୨୧ ମସିହା ଡିସେମ୍ବର ୩୦ ତାରିଖରେ ସିଂହଭୂମ ଜିଲ୍ଲା ଚକ୍ରଧରପୁରରେ ଜଗବନ୍ଧୁ ସିଂହଙ୍କ ସଭାପତିତ୍ୱରେ ହୋଇଥିବା ଉତ୍କଳ ସମ୍ମିଳନୀର ଷୋଡ଼ଶ ଅଧିବେଶନରେ ଯୋଗଦେଲେ । ଏହି ବୈଠକରେ କଂଗ୍ରେସ ପ୍ରତିପତ୍ତି ବଢ଼ିଯିବାରୁ ଓଡ଼ିଶାର ଜାତୀୟ ଆନ୍ଦୋଳନକୁ ମହାନ୍ ଆନ୍ଦୋଳନ ସ୍ରୋତରେ ସାମିଲ୍ କରିବା ପାଇଁ ଓଡ଼ିଶାର ଗୋପବନ୍ଧୁ ପ୍ରମୁଖ ଅନ୍ୟାନ୍ୟ ନେତାମାନେ ଦୃଢ଼ମତ ପ୍ରଦାନ କଲେ । ଗୋପବନ୍ଧୁ ସେଠାରେ ଦୀର୍ଘ ଭାଷଣ ଦେଇ କହିଥିଲେ, "କଂଗ୍ରେସର ନୀତି ନିୟମ ସମୀକ୍ଷା କରିବାକୁ ଯେଉଁ ସବ୍‌କମିଟି ଗଢ଼ାଗଲା, ସେଥିରେ ଭାଷା ସୂତ୍ରରେ ପ୍ରଦେଶ ଗଠନ କରିବା ଆବଶ୍ୟକ ବୋଲି ସୁପାରିଶ କରାଯାଇଛି । ସୁତରାଂ ବର୍ତ୍ତମାନ ମହାତ୍ମାଗାନ୍ଧୀଙ୍କ ଭଳି କଂଗ୍ରେସର ନେତାମାନେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ସପକ୍ଷରେ ଯେଉଁ ମତ ପ୍ରଦାନ କରିବେ ତାହା ସର୍ବଭାରତୀୟ ଦାବୀରେ ପରିଣତ ହେବ । ଏଣୁ ଉତ୍କଳ ସମ୍ମିଳନୀ ପକ୍ଷରୁ ସରକାରଙ୍କ ପାଦତଳେ ଭିକ୍ଷା ମାଗିବା ପ୍ରବୃତ୍ତି ବର୍ତ୍ତମାନ ପରିହାର କରିବା ଉଚିତ୍ । ସେ କହିଥିଲେ ଯେ ଓଡ଼ିଶା ସଙ୍ଗେ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗଳା ଓ ବିହାର ମଧ୍ୟରେ ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକ ମିଶାଇ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ହେଉଛି କଂଗ୍ରେସ ସବ୍‌କମିଟିର ଉଦ୍ଦେଶ୍ୟ ।" ଗୋପବନ୍ଧୁଙ୍କ ପ୍ରସ୍ତାବ ଅନୁସାରେ 'ଉତ୍କଳ ସମ୍ମିଳନୀକୁ ଓଡ଼ିଶା କଂଗ୍ରେସରେ ପରିଣତ କରାଗଲା । ଫଳରେ ପୂର୍ବରୁ ଯୋଗ ଦେଉଥିବା ବ୍ରଜସୁନ୍ଦର ଦାସଙ୍କ ଭଳି ଜମିଦାର ଓ ରାଜାମାନେ ଏହି ସମ୍ମିଳନୀ ସହିତ ଆଉ ସଂପର୍କ ରଖିଲେ ନାହିଁ । ଏହାପରେ ଧାରାବାହିକ ଭାବରେ ମଧ୍ୟ ଏହି ଉତ୍କଳ ସମ୍ମିଳନୀ ଅନୁଷ୍ଠିତ ହୋଇପାରିଲା ନାହିଁ ।

୧୯୨୩ ମସିହାରେ ଉତ୍କଳ ସମ୍ମିଳନୀର ସପ୍ତଦଶ ଅଧିବେଶନ ବ୍ରହ୍ମପୁର ଠାରେ ବ୍ରଜବନ୍ଧୁ ଦାସଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । କଂଗ୍ରେସ ଓ ଅଣକଂଗ୍ରେସ ନେତାମାନଙ୍କୁ ମିଶାଇ ଓଡ଼ିଆ ଜାତିର

ଉନ୍ନତି ଦିଗରେ ପୂର୍ବଭଳି ଆନ୍ଦୋଳନ କରିବା ପାଇଁ ସାପ୍ତାହିକ 'ଆଶା' ସଂପାଦକ ଶଶୀଭୂଷଣ ରଥ ପ୍ରଭୃତି ନେତାମାନେ ଉଦ୍ୟମ ଆରମ୍ଭ କଲେ ।

୧୯୨୪ରେ ଉତ୍କଳ ସମ୍ମିଳନୀର ଅଷ୍ଟାଦଶ ଅଧିବେଶନ ବ୍ରହ୍ମପୁରଠାରେ ଚନ୍ଦ୍ରଶେଖର ବେହେରାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେବାପରେ ସେହିବର୍ଷ ସମ୍ମିଳନୀର ଉନବିଂଶ ଅଧିବେଶନ ଭୁବନାନନ୍ଦ ଦାସଙ୍କ ଅଧ୍ୟକ୍ଷତାରେ କଟକରେ ଅନୁଷ୍ଠିତ ହେଲା । ଏଥିରେ ଭାଷା ଭିତ୍ତିରେ ପ୍ରଦେଶ ଗଠନ ପ୍ରସ୍ତାବ ମାନ ସଫଳତାର ସହିତ ଗୃହୀତ ହେବାରେ ଲାଗିଲା ।

୧୯୨୯ ମସିହାରେ ଏହି ସମ୍ମିଳନୀ ବିଂଶତମ ଅଧିବେଶନ ରାୟ ବାହାଦୁର ଲକ୍ଷ୍ମୀଧର ମହାନ୍ତିଙ୍କ ସଭାପତିତ୍ୱରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ହେବାପରେ ୧୯୩୦ରେ ଉତ୍କଳ ସମ୍ମିଳନୀର ଏକ ବିଂଶତମ ଅଧିବେଶନ ସେହି ବ୍ରହ୍ମପୁରଠାରେ ଲୋକନାଥ ମିଶ୍ରଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ସାଇମନ୍ କମିଶନ ରିପୋର୍ଟ ବିରୁଦ୍ଧରେ ସମାଲୋଚନା କରାଯାଇ ପ୍ରସ୍ତାବମାନ ଗୃହୀତ ହୋଇଥିଲା ।

୧୯୩୧ ମସିହାରେ ଏହି ସମ୍ମିଳନୀର ଦ୍ୱାବିଂଶତମ ଅଧିବେଶନ ଦାମୋଦର ସାହୁଙ୍କ ସଭାପତିତ୍ୱରେ କଳତରଠାରେ ଅନୁଷ୍ଠିତ ହୋଇଥିଲା ।

୧୯୩୨ ମସିହା ଅଗଷ୍ଟ ମାସ ୨୧ ତାରିଖରେ ବ୍ରହ୍ମପୁରଠାରେ ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତିଙ୍କ ପୌରୋହିତ୍ୟରେ ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନ ବସି ବିଲାତର ଗୋଲ ଟେବୁଲ ବୈଠକରେ ଯୋଗଦେଇଥିବା ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଅଭିନନ୍ଦନ ସମ୍ମିଳନୀ ପକ୍ଷରୁ ଦିଆଯାଇଥିଲା । ଖଲ୍ଲିକୋଟର ରାଜାସାହେବ ଥିଲେ ଏହାର ଉଦ୍‌ଘାଟକ ଏବଂ ଶ୍ରୀଯୁକ୍ତ ରାମକୃଷ୍ଣ ଦେଓ ଥିଲେ ଅଭ୍ୟର୍ଥନା ସମିତିର ସଭାପତି ।

୧୯୩୩ ମସିହାରେ ମଧୁସୂଦନ ପାଣିଗ୍ରାହୀଙ୍କ ସଭାପତିତ୍ୱରେ ଉତ୍କଳ ସମ୍ମିଳନୀର ଆଉ ବିଶେଷ ଅଧିବେଶନ କଟକରେ ବସି ସୀମାନିର୍ଦ୍ଧାରଣ ତଥା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସମ୍ବନ୍ଧରେ ବହୁ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା କରାଯାଇ ଓଡ଼ିଆ ଜାତିର ନ୍ୟୁନତମ ଦାବୀ ପ୍ରସଙ୍ଗ ସ୍ଥିର ହୋଇଥିଲା ।

୧୯୩୪ ମସିହା ଫେବୃୟାରୀ ୧୧ ତାରିଖରେ କଟକରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀର ସ୍ୱତନ୍ତ୍ର ଅଧିବେଶନରେ ସବୁଦଳ ତଥା ସବୁଜାତି, ଧର୍ମ ଓ ବର୍ଣ୍ଣର ନେତାମାନେ ଏବଂ ପାରଳାଖେମୁଣ୍ଡିର ତେଲୁଗୁମାନେ ଅଂଶ ଗ୍ରହଣ କରି ଖଣ୍ଡିତ ଓଡ଼ିଆ ପ୍ରଦେଶ ଗଠନ ପାଇଁ ସରକାରଙ୍କର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ । ସେମାନଙ୍କ ମତ ଉପସ୍ଥାପନ କରାଯାଇ ନିମ୍ନଲିଖିତ ପ୍ରସ୍ତାବମାନ ଆଗତ କରାଯାଇଥିଲା—

This Confe:ence reiterates th minimum demand made by the Oriya delegation in London before the Orissa Sub-Committee of the Joint-Parliamentary Committee and is emphatic in its assertion that the nat'on as a whole refuses to accept the province and resolves to consistently oppose by all legitimate, Peacefui and Constitutional means the working of the province, if any of the areas of the Zemindary of Jeypore. northern and eastern parts of Parlakimedi Estate (Divisions II & IV and a part of Division I referred to in the census report of Mr. M.W.M. Yeatts, Superintendent of Census Madras, 1931). Parlakimedi Maliahs. Western parts of Mandasa Estate including the town, western part of the Jalantara Estate and the enrire zam nd ry of Bhudersinghi, be excluded from it." (A Special Session of the Utkal Union Conference, the February, 1934. Resolution No. 8).

ଏହି ଉତ୍କଳ ସମ୍ମିଳନୀ ଅୟମାରମ୍ଭ ସମୟରେ ଥିଲା ପ୍ରକୃତରେ ନିଃସ୍ୱାର୍ଥପର ସେବାମନୋଭାବ ସଂପନ୍ନ ଜାତୀୟ ଅନୁଷ୍ଠାନ । କିନ୍ତୁ ପରବର୍ତ୍ତୀ କାଳରେ ତାହା ନ୍ୟସ୍ତସ୍ୱାର୍ଥ ସିଦ୍ଧି ନିମନ୍ତେ ଏକ ବୃହତ୍ ରାଜନୈତିକ ଅନୁଷ୍ଠାନ ଭାବରେ ଗଢିଉଠିଥିଲା । ଉତ୍କଳୀୟମାନଙ୍କ ମନରେ ଗଣଚେତନା ସୃଷ୍ଟି କରିବା ମୂଳରେ ଏହି ସମ୍ମିଳନୀର ଭୂମିକା ବେଶ୍ ଉଲ୍ଲେଖନୀୟ । ଜାତୀୟବାଦୀ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ଯୁବକମାନେ ଏହି ସମ୍ମିଳନୀ ମାଧ୍ୟମରେ ବ୍ରିଟିଶ ସରକାରଙ୍କ ନିକଟରେ ଆପଣାର ନ୍ୟାଯ୍ୟଦାବୀ ଉପସ୍ଥାପିତ କରିବା ପାଇଁ ସୁଯୋଗ ପାଇପାରିଥିଲେ । ତେଣୁ ଓଡ଼ିଆମାନଙ୍କର ଏକତ୍ରୀକରଣ କ୍ଷେତ୍ରରେ ଏହି ସମ୍ମିଳନୀର ଭୂମିକା ବାସ୍ତବିକ ଗୁରୁତ୍ୱପୂର୍ଣ୍ଣ । ଏହି ସମ୍ମିଳନୀର ମୌଳିକ ଦାୟିତ୍ୱ ଥିଲା ସାମାଜିକ ଓ ସାଂସ୍କୃତିକ ସ୍ଥିତି, ଆତ୍ମନିର୍ଭରଶୀଳତା ତଥା ଭାଷାର ସୁରକ୍ଷା କରିବା । ଅତଏବ ବଳିଷ୍ଠ ରାଜନୈତିକ ଅନୁଷ୍ଠାନ ଭାବରେ 'ଉତ୍କଳ ସମ୍ମିଳନୀ' ହିଁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନରେ ମୁଖ୍ୟ ଭୂମିକା ନେଇଥିଲା ।

ଅଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ
ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ,
ପାରଳାଖେମୁଣ୍ଡି, ଗଞ୍ଜାମ ।

ଓଡ଼ିଶାର ଆୟତନ କ'ଣ ହୋଇଥାନ୍ତା, ସେ ବିଷୟରେ ଚିନ୍ତା ନ କରି, ଯେଉଁସବୁ ଗୁଣ ଓଡ଼ିଆ ଜାତିକୁ ଦିନେ ଭାରତରେ ଶୀର୍ଷ ଓ ଶ୍ରେଷ୍ଠ ଆସନ ଦେଇଥିଲା ; ଯେଉଁସବୁ ବୈଶିଷ୍ଟ୍ୟ ଏହାର ସ୍ୱତନ୍ତ୍ର ଜାତୀୟତାକୁ ପ୍ରତିଷ୍ଠିତ କରିଥିଲା ; ତାହାର ଆଲୋଚନା, ତାହାର ଉଦ୍‌ବୋଧନ ଓ ତାହାର ବିକାଶ ଆବଶ୍ୟକ । ଏହାର ସାଂସ୍କୃତିକ ବୈଶିଷ୍ଟ୍ୟ ଓ ପରମ୍ପରାକୁ ପୁଷ୍ଟ ଓ ବଳିଷ୍ଠ କରିବା ଆବଶ୍ୟକ ଯେପରିକି, ଓଡ଼ିଆ ଜାତି ଆଧୁନିକ ଭାରତୀୟ ମହାସଂଘରେ ଶ୍ରେଷ୍ଠ ଆସନ ଅଧିକାର କରି ପାରିବ ।

ଜାନକୀ ବଲ୍ଲଭ ପଟ୍ଟନାୟକ

# ସମବାୟ ଓ ସଂହତି

ଅଧ୍ୟାପକ ଶତ୍ରୁଘ୍ନ ନାଥ

ଅସୁମାରୀ କଥା ଓ କାହାଣୀ । ଜନଜୀବନର ଜୟଯାତ୍ରା ଯୁଗେ ଯୁଗେ ବିମଣ୍ଡିତ ହୋଇଛି । ଖାଲ ପୂରି ଉଠିଛି, ଢିପ ସମାନ ହୋଇଛି । ରାସ୍ତା ଲମ୍ବିଛି । ଯାତ୍ରା ସୁଗମ ହୋଇଛି । ଅନନ୍ତକାଳର ଅନ୍ତ କଳନା କରି ହେଉନାହିଁ । ଆଗକୁ ବି ଆଖି ପାଉନାହିଁ । ସରୁ ସୂତା ଖିଅଟିଏ ପରି ଅଦୃଶ୍ୟ ହୋଇଛି ସଂସ୍କୃତିର ସ୍ରୋତ । ଚିର ଉପାଶିତ ଲୋକ ମୁଖରେ, ଲୋକଚରିତ୍ରରେ ଓ କଥାକାହାଣୀରେ ।

ବହୁଦିନର ସେ କଥାଟି । ବୁଢ଼ା ଜଣକ ପୁଅମାନଙ୍କୁ ହକାରି ଡାକେଣି କାଠର ବିଡାଟିଏ ଦେଉଛନ୍ତି । ବିଡାରେ କାଠଖଣ୍ଡ ଭାଙ୍ଗୁ ନାହିଁ । କିନ୍ତୁ ବିଡା ହୁଗୁଳି ଅଲଗା ଅଲଗା କାଠଖଣ୍ଡ ଅନାୟାସରେ ଚଟ୍ଚାଟ୍ ଭାଙ୍ଗିଯାଉଛି । ପୁଅମାନଙ୍କ ବିସ୍ମୟ ଅସୀମ ଓ ଉପଲବ୍ଧି ହେଉଛି ''ଏକତା ହିଁ ବଳ'' । ଯୋଡାକୁ ଖୋଲା ପାରେ ନାହିଁ । ଯୌଥ ଜୀବନର ଶକ୍ତି ସୀମାହୀନ । ଏହି କାହାଣୀର ଶିକ୍ଷା ଅମୂଲ୍ୟ । ଜୀବନରେ ପାଶୋରି ହୁଏ ନାହିଁ । କଳି ଭୁଲି ପିଲାମାନେ ଭ୍ରାତୃତ୍ୱର ଜୀବନକୁ ଜୀବନବ୍ୟାପୀ କରି ନେଉଛନ୍ତି ।

ଏହା ତ ମନୁଷ୍ୟଜୀବନର କଥା । ସେ ବିବେକୀ ପ୍ରାଣୀ । କଥା ପଦଟିଏ ଓ ସାମାନ୍ୟ ଦୃଷ୍ଟାନ୍ତଟିଏ ତା'ର ଜୀବନରେ ଅଭୂତପୂର୍ବ ପରିବର୍ତ୍ତନ ଆଣିଦିଏ । ପିମ୍ପୁଡ଼ି, ମହୁମାଛି ଆଦି ପ୍ରାଣୀଙ୍କ ସଂଘବଦ୍ଧତା ଉଦାହରଣ ରୂପେ ସ୍ଥାନ ପାଇଛି । କେତେକ ପକ୍ଷୀଙ୍କ କଥା ଦେଖାଯାଉ । ଘର ଚଟିଆ ପଲଟିଏ । ଜିହ୍ୱାର ଲୋଭ କାହାକୁ କବଳିତ ନ କରିଛି ? ଗୋଟି ଗୋଟି ପରିବାର କଳିହୁଡାଙ୍କ ପାଲରେ ଧ୍ୱଂସ ପାଇଛି । ରାଜ୍ୟ ଓ ସାମ୍ରାଜ୍ୟ ଏଥିରୁ ରକ୍ଷା ପାଇ ନାହିଁ । ଆଜିର ବୈଜ୍ଞାନିକ ଯୁଗରେ ସୁଦ୍ଧା ଅସଂଯତ ଜିହ୍ୱା ରାସାୟନିକ ଯୁଦ୍ଧର କାରଣ ହୋଇପାରେ । ଦୁର୍ଲ୍ଲଭ ଶରୀର ମଧ୍ୟ ଘୁଣଖିଆ ହୋଇଯାଏ । ଅଣାୟତ୍ତ ଜିହ୍ୱା ମନୁଷ୍ୟକୁ ଶେଷରେ ଯମଦ୍ୱାର ଆଡକୁ ଟାଣିନିଏ । ଘରଚଟିଆଙ୍କ ଦଶା ସେଇଆ ହୋଇଛି । ସଲତାଯାକ ବାଣୁଆର ପାଲରେ । ଯେତେବେଳେ ଘୋର ବିପଦ ମାଡି ଆସିଛି, କଥାକାର ସେତେବେଳେ ବୁଢ଼ାଚଟିଆର ଯାଦୁ କରିଛନ୍ତି । ଆପଦ କାଳରେ ବୃଦ୍ଧସ୍ୟ ବଚନମ୍ ଗ୍ରାହ୍ୟଂ । ଠିକ୍ ସେହି ନ୍ୟାୟରେ ପଲେ ଚଟିଆ ବୃଦ୍ଧର କଥା ମାନି ଏକ ସଙ୍ଗରେ ଉଡିଛନ୍ତି ଓ ଜାଲ ସହିତ ଜୀବନ ରକ୍ଷା କରିଛନ୍ତି । ବାଣୁଆ ବିସ୍ମିତ, କାରଣ ସେ ପରାଜିତ । ଜୟ ଜୟକାର ହେଉଛି ''ସଂହତିର ଶକ୍ତି'' । ସଂହତ୍ୟେ ବ ଜୟତେ । ସବୁ ଯୁଗରେ ସଂହତିର ଆବଶ୍ୟକତା ରହିଛି ସମାଜର ସ୍ଥିତି ଓ ପ୍ରଗତି ପାଇଁ । ପୁନଶ୍ଚ ସଂହତି ପାଇଁ ଏକାତ୍ମତା ଓ ଏକନିଷ୍ଠ କାର୍ଯ୍ୟ । ସମସ୍ତଙ୍କର ଏକାନ୍ତ ସହଯୋଗ ।

ସଂହତିରୁ ଶକ୍ତି କିପରି ଆସେ ଏହା ଆମେ ନିଜେ କରି ଦେଖିପାରିବା । ଦିନେ ଯାହା ଶୈଶବର କ୍ରୀଡା ତାହାହିଁ କାଳକ୍ରମେ ଯୌବନର କରାମତି ଓ କରଣି ହୋଇ ରହିଛି । ନୂଆ ଲୁଗାର କାନିରୁ ସୂତାଖିଅ ଆପେ ବାହାରି ପଡେ । ସେ ଖିଅ ଟକ୍‌ଟାକ୍ ଛିଣ୍ଡିଯାଏ । କିନ୍ତୁ ବାମ ହାତର ବୁଢା ଓ କାଣି ଅଂଗୁଳି ମଧ୍ୟରେ ଖୁବ୍ ଯେତେ ଫରକ୍ କରିହେବ ସେତିକି କରି ରଖି ଡାହାଣ ହାତରେ ସୂତାଖିଅ ନେଇ ଦଶ ପରସ୍ତ ଖଣ୍ଡେ ଗୁଡାଇ ଦେଲେ ଆଉ ତାକୁ ଛିଣ୍ଡାଇବା ସହଜ ନୁହେଁ । ଏପରି ପିଲାଦିନର ଖେଳ । ଖିଅଟା ଦୁଇ ଅଂଗୁଳିରେ ଛିଡିଯାଏ । କିନ୍ତୁ ଦଶ ବା ସେଥିରୁ ଅଧିକ ପରସ୍ତ ସୂତା ଏକାଠି କରିଦେଲେ ତାହା ଦୁଇ ହାତରେ ଛିଡେ ନାହିଁ । ନଡା, ଲଇ ବା ଯେକୌଣସି ତୃଣରୁ ଅନେକ ଗୁଡିକୁ ଗୁଚ୍ଛ କରି ଦେଲେ ବା ବଳି ଦଉଡା କରିଦେଲେ ହାତୀ ପରି ବୃହଦାକାର ବନ୍ୟ ଜନ୍ତୁକୁ ବାନ୍ଧି ଦିଆଯାଇ ପାରିବ । ସେଥିପାଇଁ କୁହାଯାଏ, ''ତୃଣୈର୍ଗୁଣତ୍ୱମାପନ୍ନୈର୍ବଧ୍ୟନ୍ତେ ମତ୍ତଦନ୍ତିନଃ'' ଅନେକଗୁଡିଏ ତୃଣଗୁଚ୍ଛ ଏକତ୍ର କରି ରଜ୍ଜୁ ପ୍ରସ୍ତୁତ ହେଲେ ତଦ୍ଦ୍ୱାରା ମତ୍ତହସ୍ତୀକୁ ଆୟତ୍ତ କରିହେବ । ସଂହତି ଯେ ଶକ୍ତିଦାୟକ, ଏହାର ଅନ୍ୟ ଉଜ୍ଜ୍ୱଳ ଦୃଷ୍ଟାନ୍ତ କଅଣ ହୋଇପାରେ କି? ବସ୍ତୁତଃ ଏହାହିଁ ସତ୍ୟ ଯେ ଆମେ ସଂଘବଦ୍ଧ ହେଲେ ଆମର ଅଗ୍ରଗତି ସୁନିଶ୍ଚିତ । ପକ୍ଷାନ୍ତରରେ ଆମେ ବିଭାଜିତ ହୋଇଗଲେ ଆମ ପତନ ଅବଶ୍ୟମ୍ଭାବୀ । ଗୃହ ବିବାଦରୁ ପତନ ବା ଆଭ୍ୟନ୍ତରୀଣ ଐକ୍ୟ ଯୋଗୁଁ ଉତ୍‌ଥାନର ବହୁ ଉଦାହରଣରେ ଇତିହାସର ପୃଷ୍ଠା ସଜ୍ଜିତ ।

ଇତିହାସରୁ ଆମେ ଏହି ଅବସରରେ ଶିକ୍ଷା ନେବା । ସମ୍ରାଟ ଅଶୋକ, ନିଜ ରାଜୁତିର ଦଶମ ବର୍ଷ ଅର୍ଥାତ୍ ଖ୍ରୀଷ୍ଟପୂର୍ବ 260 ରୁ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ ଓ ଜୀବନ ବ୍ୟାପୀ ବୌଦ୍ଧ ହୋଇ ରହିଥିଲେ । କିନ୍ତୁ ସେ କଦାପି ନିଜ ପ୍ରଜାଗଣକୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରିବାର ପ୍ରୟାସ କରି ନାହାନ୍ତି । ପକ୍ଷାନ୍ତରରେ ସେ ଦ୍ୱାଦଶ ଶିଳାଲେଖରେ ଘୋଷଣା କରନ୍ତି । ଅନ୍ୟମାନଙ୍କ ଧର୍ମ ବିଶ୍ୱାସକୁ ସମ୍ମାନ ଦେବାର କଥା । ସେସବୁକୁ ସମ୍ମାନ ଦେବା ଦ୍ୱାରା ମନୁଷ୍ୟ ନିଜ ବିଶ୍ୱାସକୁ ଗୌରବ ଦିଅନ୍ତି ଓ ଏହା ସଂଗେ ସଂଗେ ଅନ୍ୟମାନଙ୍କ ବିଶ୍ୱାସର ସେବା ସେ କରନ୍ତି । ଏହାର ପ୍ରତିକୂଳାଚରଣ କରାଗଲେ ମନୁଷ୍ୟ ତାଂକ ନିଜ ବିଶ୍ୱାସର କ୍ଷତି କରନ୍ତି ଓ ଅନ୍ୟମାନଙ୍କ ଧର୍ମବିଶ୍ୱାସର ଅବମାନନା ମଧ୍ୟ କରନ୍ତି । କାରଣ ଯଦି କାହାର ନିଜ ବିଶ୍ୱାସ ପ୍ରତି ଭକ୍ତି ଥିବା ହେତୁରୁ ଓ ନିଜ ବିଶ୍ୱାସକୁ ସମ୍ମାନ ଦେବାପାଇଁ ସେ ନିଜ ବିଶ୍ୱାସର ଗୌରବଗାନ କରନ୍ତି ଓ ଅନ୍ୟ ବିଶ୍ୱାସକୁ ଘୃଣା କରନ୍ତି ତେବେ ସେ ନିଜ ବିଶ୍ୱାସର ଘୋର ଅନିଷ୍ଟ କରନ୍ତି । ତେଣୁ ସମବାୟ ଏକ ସାଧୁ । କାରଣ ସମବାୟ ମାଧ୍ୟମରେ ଅନ୍ୟମାନଙ୍କ ଆଚରିତ ଧର୍ମ ଧାରଣାକୁ ମନୁଷ୍ୟମାନେ ସମ୍ମାନ କରି ପାରିବେ ଓ ସେଥିରୁ ଶିକ୍ଷା ପାଇ ପାରିବେ । ସକଳ ଧର୍ମରେ ଆଶ୍ରିତ ବ୍ୟକ୍ତିଗଣ ପରସ୍ପରର ଧର୍ମମତକୁ ଜାଣିବା ପାଇଁ ଏବଂ ପୁଷ୍ଟ ଧର୍ମମତ ଅର୍ଜନ କରିବା ପାଇଁ ସମ୍ରାଟ ପ୍ରିୟଦର୍ଶୀ ଇଚ୍ଛା କରନ୍ତି । ଏହି ସବୁ ନିର୍ଦ୍ଦିଷ୍ଟ ବିଶ୍ୱାସରେ ଯେଉଁମାନେ ଅନୁରକ୍ତ ସେମାନଙ୍କୁ କହିଦେବା ଉଚିତ ଯେ ସମ୍ରାଟ ପ୍ରିୟଦର୍ଶୀ ବିଭିନ୍ନ ମତରେ ଆଶ୍ରିତ ଲୋକ-ମାନଙ୍କର ଧର୍ମ ଲାଗି ଅତ୍ୟାବଶ୍ୟକ ସଦ୍‌ଗୁଣର ବିକାଶ ପାଇଁ ଯେତେ ଗୁରୁତ୍ୱ ଦିଅନ୍ତି ସମ୍ମାନ ବା ଉପହାର ପାଇଁ ସେତେ ଦିଅନ୍ତି ନାହିଁ । '' ଅଶୋକ ସତ୍ୟ ଧର୍ମର ବିକାଶ ବା ସାରବୃଦ୍ଧି'' ପାଇଁ ଦୃଢ ପରିକର ଥିଲେ । ସମବାୟ ହେଉଛି ଅନ୍ୟର ମତ ଓ ବିଶ୍ୱାସ ପ୍ରତି ସମ୍ମାନ । ଏହାହିଁ ସହନଶୀଳତା । ମନୁଷ୍ୟ ହେଉଛି ଜଗତର ଶ୍ରେଷ୍ଠ ପ୍ରାଣୀ । ସେ ସାମାଜିକ ଓ ସହନଶୀଳ । ଏହା ଫଳରେ ସେ ନିଜର ତଥା ଅନ୍ୟମାନଙ୍କ ବିକାଶରେ ସହାୟକ ହୁଅନ୍ତି । ଏଥିପାଇଁ ବିଭିନ୍ନତା ମଧ୍ୟରେ ସେ ଅନ୍ୟମାନଙ୍କ ସହିତ ଏକତ୍ର ହୁଅନ୍ତି । ଏହାହିଁ ସମବାୟ ।

କେବଳ ଏତିକି ନୁହେଁ, ସମବାୟର ଉତ୍ସ ଆହୁରି ସୁଦୂର ଅତୀତର ଗହ୍ୱର ମଧ୍ୟରେ ରହିଛି ଶ୍ରୁତିଶାସ୍ତ୍ରାଦିର ଅମୀୟବାଣୀ ଏହାର ଜ୍ୱଳନ୍ତ ପ୍ରମାଣ । କେତୋଟି ଉଦାହରଣ ଭାବରେ ଅଥର୍ବ ବେଦର ଶ୍ଳୋକ (କାଣ୍ଡ 3, ସୂକ୍ତ 30, ମନ୍ତ୍ର 6) ଅନ୍ୟତମ ।

ସମାନୀ ପ୍ରପା ସହ ବୋଅନ୍ନଭାଗଃ
ସମାନେ ଯୋକ୍ତ୍ରେ ସହ ବୋ ଯୁନଜ୍ମି
ସମ୍ୟଂ ଚୋଽଗ୍ନିଂ ସପର୍ଯତାରା ନାଭିମିବାଭିତଃ

''ହେ ମନୁଷ୍ୟଗଣ ତୁମ୍ଭମାନଙ୍କ ଜଳପାନର ସ୍ଥଳ ସମାନ ହେଉ-ମୁଁ ତୁମ୍ଭମାନଙ୍କୁ ଗୋଟିଏ ଯୋତ ବା ଯୁଆଳୀରେ ବାନ୍ଧୁଅଛି । ତୁମ୍ଭେ ଏକାଠି ହୋଇ ପ୍ରକାଶମୟ ବା ତେଜୋମୟ ପରମେଶ୍ୱରଙ୍କର ଉପାସନା କର, ଠିକ୍ ଯେପରି ଗୋଟିଏ ଚକ୍ରର ସମସ୍ତ ଅର

ଗୋଟିଏ ମୂଳ କେନ୍ଦ୍ରରେ ଯୁକ୍ତହୋଇ ଗତି କରୁଥାଏ, ତୁମ୍ଭେମାନେ ସେହିପରି ଅନ୍ତିମ ଉଦ୍ଦେଶ୍ୟ ସାଧନ ଦିଗରେ ଏକତ୍ର ଗତି କର ।''

ଅନ୍ୟ ଏକ ସୂକ୍ତର ମୁଖ୍ୟ ବିଷୟ ହେଉଛି''ପରସ୍ପର ପ୍ରତି ପ୍ରୀତିପୂର୍ବକ ବ୍ୟବହାର କର-ଯେପରି ଗାଇ ତା'ର ନବଜାତ ବତ୍ସ ସହିତ ବ୍ୟବହାର କରେ ।''

ସମବାୟର ଏହି ମର୍ମ୍ମ ଓ ମୂଳ କଥାଟି ମଧ୍ୟ ସଂକ୍ଷୃତ ହୁଏ ଋଗ୍‌ବେଦ ଦଶମ ମଣ୍ଡଳ ।୨। ସୂକ୍ତ ୨ୟ, ୩ୟ ଓ ୪ର୍ଥ ମନ୍ତ୍ରରେ । ୨ୟ ମନ୍ତ୍ରଟି ହେଉଛି:

ସଂଗଚ୍ଛଧ୍ୱଂ ସଂବଦଧ୍ୱଂ ସବୋ ମନାଂସି ଜାନତାଂ
ଦେବା ଭାଗଂ ଯଥା ପୂର୍ବେ ସଂଜନାନା ଉପାସତେ ।

''ହେ ମନୁଷ୍ୟ ତୁମ୍ଭେମାନେ ସମସ୍ତେ ମିଳିମିଶି ଯାଅ । ମିଳିମିଶି ବାର୍ତ୍ତାଳାପ କର । ପରସ୍ପର ସହଯୋଗ ପୂର୍ବକ ଜ୍ଞାନ ପ୍ରାପ୍ତ କର । ପୂର୍ବ କଳ୍ପର ମନୁଷ୍ୟମାନେ ଏହି ରୂପେ ଜ୍ଞାନପ୍ରାପ୍ତ ହୋଇଥିଲେ ।''

ଏହି ଜ୍ଞାନ ହିଁ ଶକ୍ତି । ଶକ୍ତି ଅର୍ଜ୍ଜନ କଲେ ସେଥିରୁ ଅର୍ଥନୈତିକ, ସାମାଜିକ ଓ ସଂସ୍କୃତିକ ପ୍ରଗତି ହୁଏ । ସମଗ୍ର ମାନବର ଓ ମାନବ ସମାଜର ସର୍ବାଂଗୀନ ତଥା ସର୍ବୋତ୍ତମ ପ୍ରଗତି, କାରଣ ଏହି ଜ୍ଞାନଲାଭରେ ପରସ୍ପର ସହଯୋଗ ରହିଛି । ଜଣକ ପାଇଁ ଗଣର ଓ ଗଣ ପାଇଁ ଜଣର ତ୍ୟାଗ, ନିଷ୍ଠା ଓ ସାଧନାର ପରାକାଷ୍ଠା ପ୍ରୟୋଗ କରାଯାଇଛି । ଜଣ ଓ ଗଣ ଏକ ସ୍ୱାଭାବିକ ଗତିରେ ସଂଶ୍ଳିଷ୍ଟ ହୋଇଛନ୍ତି । ଏଥିପାଇଁ, ଏହି ମୁହୂର୍ତ୍ତର ଓ ଏହି ସ୍ୱାର୍ଥ ସାଧନର ସେତୁରୂପେ ଏହି ସଂଶ୍ଳିଷ୍ଟତାର ଅବତାରଣା କରାଯାଇନାହିଁ । ବରଂ ଏହା ଶାଶ୍ୱତ ଓ ଗତିଶୀଳ । ଏହା ଜୀବନବ୍ୟାପୀ ହୋଇଛି ଲକ୍ଷ୍ୟ ଓ ପ୍ରସ୍ତୁତିରେ । ହାତକୁ ହାତ ଛନ୍ଦିହୋଇ ହାଇମୁଠା ଟାଣ କରାଯାଇଛି । ଏହି ହସ୍ତବନ୍ଧନ ଅପୂର୍ବ, କାରଣ ଆକାର, ପ୍ରକାର, ପରିସର ଓ ଶକ୍ତିର ବିଭିନ୍ନତାର ଉପଯୋଗ କରାଯାଇ ମୁଠାର ଟାଣତ୍ ଅବଭୁତଭାବରେ ଶକ୍ତିଶାଳୀ ହୋଇପଡିଛି । ବହୁ ବିଭିନ୍ନତା ପରିସ୍ଫୁଟ ହୁଏ ବିଚ୍ଛିନ୍ନତା, ବିଭେଦ ଓ ଦୁର୍ବଳତାରୁ । କିନ୍ତୁ ଏହାହିଁ ଏହାର ଅପୂର୍ବତା, କାରଣ ବହୁ ବିଭିନ୍ନତାର ସମାବେଶ ସୃଷ୍ଟି କରେ ଐକ୍ୟ, ମୈତ୍ରୀ ଓ ପ୍ରୀତି । ଏହା ଅସୀମ ଶକ୍ତିର ଅଫୁରନ୍ତ ଉତ୍ସ ହୋଇ ରହେ । ବିଭିନ୍ନତାର ଭେଦ ଏଠାରେ ନାହିଁ, କିନ୍ତୁ ଅଛି ବିଭିନ୍ନତାରେ ଐକ୍ୟ । ପାରସ୍ପରିକ ସାହାଯ୍ୟ ଓ ସେବା ଫଳରେ ବ୍ୟକ୍ତିର ସ୍ୱକୀୟ ବିକାଶ ଘଟେ । ବିକାଶର ଧାରାରେ ଏହା ଏକ ଅଭିନବ ଦିଗନ୍ତ ଉନ୍ମୋଚନ କରେ । ଦାରିଦ୍ର୍ୟରୁ ପ୍ରାଚୁର୍ଯ୍ୟ ଆଡକୁ ଅଭିମୁଖତାର ସୋପାନ ହେଉଛି ସମବାୟ ଆନ୍ଦୋଳନ ।

ବର୍ତ୍ତମାନ ଆମ ଦୃଷ୍ଟି ନିକ୍ଷିପ୍ତ ହେଉ ଊନବିଂଶ ଶତାବ୍ଦୀ ପ୍ରତି । ୧୮୪୪ ମସିହାର କଥା । ବିଲାତର ଲାଂକାସାୟାର ବୟନ ଶିଳ୍ପ ପାଇଁ ପ୍ରସିଦ୍ଧି ଲାଭ କରିଛି । ଦଳେ ବୁଣାଳୀ The Rochdale society of Equitable Pioneers ପ୍ରତିଷ୍ଠା କରନ୍ତି । ଏହାକୁ ଆଧୁନିକ ସମବାୟର ପ୍ରଥମ ପଦକ୍ଷେପ ବୋଲି ଧରାଯାଏ । ସାଂପ୍ରତିକ ସମବାୟ ଆନ୍ଦୋଳନ ସମ୍ବନ୍ଧୀୟ ବିଷୟ ଓ ନୀତିଗୁଡ଼ିକ ସେଥିରୁ ଉଦ୍‌ଭୂତ ହୋଇଥିବାର ଜଣାଯାଏ । ଦେଶ ଓ କାଳର ବିଭିନ୍ନତା ହେତୁ ସମବାୟ ଅନୁଷ୍ଠାନର ରୂପରେଖ ଭିନ୍ନ ଭିନ୍ନ ହୋଇଥିଲେ ହେଁ ସେମାନଙ୍କ ମୌଳିକ ନୀତିଗୁଡ଼ିକ ରକଡେଲ ନୀତି ଦ୍ୱାରା ପ୍ରଭାବିତ ହୋଇଥିବାର ଜଣାଯାଏ । ଏହି ନୀତିଗୁଡ଼ିକ ହେଉଛି (୧) ସ୍ୱେଚ୍ଛାପ୍ରଣୋଦିତ ସଂଗଠନ । ସାମାଜିକ, ରାଜନୈତିକ କିମ୍ବା ଧାର୍ମିକ ବିଷୟର ଦୃଷ୍ଟିରୁ କୌଣସି ବିଭେଦ କାହାରି ପ୍ରତି ସଭ୍ୟ ହେବା ପାଇଁ ଲାଗୁ କରାଯିବ ନାହିଁ । ସଭ୍ୟ ଦାୟିତ୍ୱ ସମ୍ପନ୍ନ ହେବେ ଓ ଏହାର ସେବା କାମରେ ଲଗାଇ ପାରିବେ । (2) ଗଣତାନ୍ତ୍ରିକ ସଂଗଠନ । ଜଣେ ସଭ୍ୟ, ଗୋଟିଏ ଭୋଟ ନ୍ୟାୟରେ ପ୍ରାଥମିକ ସମିତିର ସଭ୍ୟମାନେ ଭୋଟ ଦେବାର ସମାନ ଅଧିକାର ଉପଭୋଗ କରନ୍ତି । ସେହି ଭାବରେ ନିଷ୍ପତ୍ତି ଗ୍ରହଣ କରନ୍ତି । ଗଣତାନ୍ତ୍ରିକ ପ୍ରକ୍ରିୟାର ଅନୁସରଣ କରାଯାଏ । (3) ପୁଞ୍ଜି ପାଇଁ ସୁଧର ସୀମିତ ହାର ଲାଭାଂଶ ଭାବରେ ଲାଗୁ କରାଯାଏ । (4) କୌଣସି ସମିତିର ବଳକା ବା ସଂଚିତ ଲାଭାଂଶର ଯୁକ୍ତିଯୁକ୍ତ ବଣ୍ଟନ ସେହି ସମିତିର ସଭ୍ୟମାନଙ୍କ ମଧ୍ୟରେ କରାଯାଏ । ଅନ୍ୟ ସଭ୍ୟମାନଙ୍କ ତୁଳନାରେ ଜଣେ ସଭ୍ୟ ମାରି ନେବାର ପ୍ରଶ୍ନ ନ ଥାଏ । (5) ସମବାୟର ଅର୍ଥନୈତିକ ଓ ଗଣତାନ୍ତ୍ରିକ ନୀତି ତଥା ପଦ୍ଧତି ବିଷୟରେ ସମବାୟ ସଂଗଠନଗୁଡ଼ିକର ସଭ୍ୟ, କର୍ମସ୍ୱଚୀ, କର୍ମୀ ଏବଂ ଜନସାଧାରଣଙ୍କୁ ଶିକ୍ଷା ଦେବା ପାଇଁ ବ୍ୟବସ୍ଥା କରିବେ । (୬) ସମବାୟ ସଂଗଠନଗୁଡ଼ିକ ମଧ୍ୟରେ ସହଯୋଗ । ସମବାୟ ସଂଗଠନ ଗୁଡ଼ିକ ସେମାନଙ୍କର ସଭ୍ୟ ତଥା ଗୋଷ୍ଠୀର ସ୍ୱାର୍ଥସେବା କରିବା ପାଇଁ ସ୍ଥାନୀୟ, ଜାତୀୟ ଓ ଆନ୍ତର୍ଜାତୀୟ

ସ୍ତରର ସମବାୟ ସଂଗଠନ ସହିତ ଯଥାର୍ଥ ଭାବରେ ସହଯୋଗ କରିବା ଆବଶ୍ୟକ ।

ଇନ୍ଦ୍ରଧନୁ ଚିହ୍ନିତ ସମବାୟ ଧ୍ୱଜା ଗଗନ ପବନରେ ଫରଫର ହୁଏ । ସମବାୟ ଜୀବନଯାପନ ପ୍ରଣାଳୀ ଏବଂ ଗଣତାନ୍ତ୍ରିକ ସମାଜବାଦର ପ୍ରତିଷ୍ଠା ଦିଗରେ ଏକ ପଦକ୍ଷେପ ଭାବରେ ଜାତୀୟ ଅର୍ଥନୀତିରେ ଗୋଟିଏ ଗତିଶୀଳ ସମବାୟ ବିଭାଗର ବିକାଶରେ ଭାରତୀୟମାନଙ୍କ ଆସ୍ଥା ସେଥିରୁ ପ୍ରକଟିତ ହୁଏ । ଜନଶ୍ରୁତିରୁ ଜଣାଯାଏ ଯେ ଇନ୍ଦ୍ରଧନୁ ହେଉଛି ଆଶାର ପ୍ରତୀକ ଏବଂ ଶାନ୍ତିର ଅଗ୍ରଦୂତ । ମନୁଷ୍ୟ ଉଲ୍ଲାସ ଓ ଆନନ୍ଦାନୁଭବ କରେ ଇନ୍ଦ୍ରଧନୁର ସଂଦର୍ଶନରେ । ସେ ମଧ୍ୟ ଚରମ ତଥା ସର୍ବବ୍ୟାପୀ ସମନ୍ୱୟ ଓ ସଂହତି ଅନୁଭବ କରେ । ଏହି ପତାକାର ପ୍ରଥମ ପରିକଳ୍ପନା କରନ୍ତି ଫ୍ରାନ୍ସର ସ୍ଲର୍ଲସ ଫୋରିଅର ( Charles Fourier ) ବିଭେଦରେ ଐକ୍ୟ ( Unity in diversity ) ର ଚିହ୍ନ ଭାବରେ । ଏହି ସାତଗୋଟି ରଂଗର ସୁସ୍ପଷ୍ଟ ଉପସ୍ଥାପନ ପାଇଁ ଗୋଟିଏ ଶ୍ୱେତ ପୃଷ୍ଠଭୂମି ସ୍ଥିର କରାଗଲା ଓ କୋଣକୁ ଗୋଟିଏ ତାରକାର ଚିହ୍ନ ରହିଲା । ଏହି ପତାକା ସମବାୟର ପ୍ରତୀକ, ପ୍ରକାଶକ ଓ ଦ୍ୟୋତକ । ଏକାତ୍ମତାର ପବିତ୍ରତାରେ ଏହା ଭୂଷିତ ହୁଏ । ସମସ୍ତ ସଂକୀର୍ଣ୍ଣତାକୁ ପରିହାର କରି ବିଭିନ୍ନ ଜାତି ଓ ଜାତୀୟତାର ପ୍ରତିନିଧିତ୍ୱ କରୁଥିଲେ ହେଁ ଏହି ପତାକା ସମସ୍ତଙ୍କୁ ଶାନ୍ତି, ସଂହତି ଓ ସହାବସ୍ଥାନରେ ଜୀବନଯାପନ କରିବାକୁ ଆହ୍ୱାନ ଦିଏ । ଏହାହିଁ ହେଉଛି ସହଯୋଗୀ ଜୀବନଯାପନ ପ୍ରଣାଳୀର ଅନ୍ତିମ ଆଦର୍ଶ ଓ ସ୍ୱର୍ଗତ ପ୍ରଧାନ ମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ଭାଷାରେ ଏହା ନ୍ୟାୟ, ସମତା ଓ ଶାନ୍ତି ଉପରେ ଆଧାରିତ ବିଶ୍ୱ ସମାଜର ପ୍ରତିଷ୍ଠା ଦିଗରେ ସାହାଯ୍ୟ କରିବ ।

ଅତଏବ ସମବାୟ ଆନ୍ଦୋଳନ ତଥା ଅନୁଷ୍ଠାନଗୁଡ଼ିକର ସୁପରିଚାଳନା କରାଇ ପାରିଲେ ଏହାର ଅନ୍ତର୍ନିହିତ ଆଦର୍ଶ ସ୍ୱତଃ ଆତ୍ମ ପ୍ରକାଶ କରିବ । ସମାଜର ତଳରୁ ଡାଳ ପର୍ଯ୍ୟନ୍ତ ସବୁ ଶ୍ରେଣୀରେ ଏହି ଆଦର୍ଶ ରୂପାୟିତ ହୋଇ ସମାଜରେ ସଂହତି ସୁଦୃଢ଼ ହେବ । ଦାରିଦ୍ର୍ୟ ଓ ନିରକ୍ଷରତା ଏତେଦୂର ଉତ୍କଟ ହୋଇଛି ଯେ ବିଚ୍ଛିନ୍ନତା ଓ ବିଭେଦର ଶକ୍ତି ସମାଜକୁ ଖଣ୍ଡିତ କରି ଆମ ଏକାତ୍ମତା ଓ ଅଖଣ୍ଡତାକୁ ଦୁର୍ବଳ କରି ପକାଉଛି । ଦାରିଦ୍ର୍ୟ ଓ ନିରକ୍ଷରତା ସହିତ ଜନସଂଖ୍ୟା ବିସ୍ଫୋରଣ ଆମ ସାମାଜିକ ବ୍ୟାଧି ହୋଇପଡ଼ିଛି । ଏଥି ସହିତ କୁସଂସ୍କାର, ଅନ୍ଧବିଶ୍ୱାସ, ଭାଗ୍ୟବାଦ, ହୀନମନ୍ୟତା ଓ ହତାଶପଣିଆ ଆମକୁ କୂପମଣ୍ଡୁକ କରି ରଖୁଛି । ସଂକୀର୍ଣ୍ଣତା ଆମ ଜୀବନକୁ ଶ୍ରୀହୀନ କରି ପକାଉଛି । ଆମେ ଉଦାରଚେତା ହୋଇ ବସୁଧୈବକୁଟୁମ୍ବକମ୍ ପୋଷଣ କରି ପାରୁନାହିଁ । ଦରିଦ୍ର ସଂଖ୍ୟାକର ଆମର ସମ୍ବଳ ହୋଇଛି । ଧନୀ ଓ ଦରିଦ୍ରର ବିଭାଜନ ଓ ବ୍ୟବଧାନ ସାମାଜିକ ଐକ୍ୟ ସାଧନରେ ଘୋର ଅନ୍ତରାୟ ହୋଇଛି ।

ଏପରି ସ୍ଥଳରେ ସମବାୟର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସାମାଜିକ ଓ ଅର୍ଥନୈତିକ ବିକାଶର ମାଧ୍ୟମ ଭାବରେ ସମବାୟକୁ ଗ୍ରହଣ କରାଯାଇଛି । ଆମ ଯୋଜନାବଦ୍ଧ ବିକାଶରେ ପ୍ରତ୍ୟେକ ଗ୍ରାମ ପାଇଁ ତିନୋଟି ମୌଳିକ ଅନୁଷ୍ଠାନର ପରିକଳ୍ପନା କରାଯାଇଛି, ଶିକ୍ଷାର ପ୍ରସାର ପାଇଁ ସ୍କୁଲ, ସ୍ଥାନୀୟ ପ୍ରଶାସନ ପାଇଁ ପଞ୍ଚାୟତ ଓ ଅର୍ଥନୈତିକ ବିକାଶ ପାଇଁ ସମବାୟ । ଏହି ତିନୋଟିର ସମବେତ ସକ୍ରିୟତା ସୃଷ୍ଟି କରିବ ଗ୍ରାମ ପୁନର୍ଗଠନ ଓ ଗୋଷ୍ଠୀ ଉନ୍ନୟନର ଭିତ୍ତିଭୂମି । ସମବାୟ ସମିତିରେ ଉକ୍ତ ନୀତିଗୁଡ଼ିକୁ ପ୍ରୟୋଗ କରାଗଲେ ଶୋଷଣରହିତ ସହଯୋଗୀ ଓ ସ୍ୱାବଲମ୍ବୀ ସମାଜ ରଚନାରେ ଏହା ସହାୟକ ହେବ । ସମସ୍ତ ସଭ୍ୟଙ୍କର ସହଯୋଗିତା ଫଳରେ ଗଣତାନ୍ତ୍ରିକ ପରିଚାଳନା, ଅର୍ଥନୈତିକ ବିକାଶ ଏବଂ ସାମାଜିକ ନ୍ୟାୟ ସମ୍ଭବ ହେବ । ପ୍ରତିଦ୍ୱନ୍ଦ୍ୱିତା ଯୋଗୁଁ ସଂଘର୍ଷ, ହିଂସା, ଅଶାନ୍ତି, ଆତଙ୍କ ବିବାଦ ଆଦି ଅସ୍ଥିରତା ସୃଷ୍ଟିକାରୀ ଶକ୍ତି ସେମାନଙ୍କ କୁତ୍ସିତ ମୁଣ୍ଡଟେକେ । କିନ୍ତୁ ସହଯୋଗ ଆଣିଦିଏ ଶାନ୍ତି, ସହାବସ୍ଥାନ, ପ୍ରଗତି ଓ ସନ୍ତୋଷ । ବିକେନ୍ଦ୍ରୀକରଣ ସହିତ ସ୍ଥାନୀୟ ଅଭିକ୍ରମ ଯୋଗୁଁ ସମୂହ ଓ ସାମାଜିକ କଲ୍ୟାଣ ସାଧିତ ହୋଇପାରିବ । ଭାରତୀୟ ସମାଜ ଗଣତନ୍ତ୍ର ଓ ସମାଜବାଦର ମୂଲ୍ୟବୋଧଗୁଡ଼ିକୁ ରୂପାୟିତ କରିବା ପାଇଁ ପ୍ରତିଶ୍ରୁତିବଦ୍ଧ । ସେପରି ସ୍ଥଳରେ କୃଷି, କୁଟୀରଶିଳ୍ପ, କ୍ଷୁଦ୍ର ସେଚନ( Minor irrigation ) ବଣ୍ଟନ, ଯୋଗାଣ, ଗ୍ରାମ୍ୟ-ବିଦ୍ୟୁତିକରଣ, ଗୃହଯୋଗାଣ ଆଦି ଅର୍ଥନୈତିକ ଜୀବନର ବିଭିନ୍ନ ଦିଗକୁ ପୁନର୍ଗଠିତ କରିବାରେ ସମବାୟ ସମିତି ମୁଖ୍ୟ ମାଧ୍ୟମ ହେବ । ଏହା ଫଳରେ ସାମାଜିକ ପରିବର୍ତ୍ତନ ଏପରି ରୀତିରେ ହେବ ଯଦ୍ୱାରା ସଂହତି ସମ୍ଭବ ହେବ ।

ଏହା ପ୍ରତ୍ୟକ୍ଷୀଭୂତ ଯେ ଚରମ ଅବହେଳା, ଅନାଦର, ଅସନ୍ତୋଷ ଓ ଅତ୍ୟାଚାର ବିଶେଷ କରି ସାମାଜିକ ଓ ଅର୍ଥନୈତିକ ଉତ୍କଟ ବୈଷମ୍ୟ ସହିତ ଜଡିତ ହେଲେ ଏହାର ଅନ୍ୟତମ ପ୍ରତିକ୍ରିୟା ହୋଇପାରେ । ଜନଜୀବନର ପ୍ରଗତି ପାଇଁ ଏହା ମଧ୍ୟ ସାଂଘାତିକ । ସ୍ୱାର୍ଥାନ୍ଧ ଓ କ୍ଷମତାଲୋଭୀ ରାଜନୀତି ଏହି ଉଗ୍ରବାଦର ମାତ୍ରାକୁ ଅତ୍ୟଧିକ କରିବା ଫଳେ ଫଳେ ବିଭ୍ରାନ୍ତ ଓ ଅପରିଣାମ-ଦର୍ଶୀ କରି ପକାଏ । ପ୍ରଶାସନ ଯଦି ଜନ ସମସ୍ୟା ସହିତ ସ୍ପର୍ଶକାତର ଓ ସମ୍ବେଦନଶୀଳ ନ ହୁଏ, ଏହାର ପରିଣତି ମଧ୍ୟ ଭୟାବହ ହୋଇପଡେ । ଯଦି ଲୋକଙ୍କର ଦୁଃଖଦୁର୍ଗତି ଦୂର କରି ସେମାନଙ୍କୁ ସାମାଜିକ ନ୍ୟାୟ ଦିଆଯାଏ ଓ ପ୍ରଶାସନକୁ ସୁପରିଚାଳିତ କରି ଦୁର୍ନୀତିର ମୂଳୋତ୍ପାଟନ କରାଯାଏ ତେବେ ନୈରାଶ୍ୟ ଜର୍ଜରିତ ଯୁବଶକ୍ତି ଆତଙ୍କବାଦର କବଳରୁ ମୁକ୍ତ ହୋଇ ପାରିବେ । ଏପରିକି ପଡୋଶୀ ରାଷ୍ଟ୍ର ବା ବିଶ୍ୱର ବୃହତ୍‌ଶକ୍ତିଙ୍କ ଦୁରଭିସନ୍ଧି ସେମାନଙ୍କୁ ଗ୍ରାସ କରି ପାରିବ ନାହିଁ । ଏ ଦିଗରେ ସମବାୟ ଯେ କେବଳ ସାମାଜିକ ଓ ଅର୍ଥନୈତିକ ବିକାଶର ମାଧ୍ୟମରୂପେ ଗୃହୀତ ତାହା ନୁହେଁ, ଏହା ମଧ୍ୟ ଜୀବନାଦର୍ଶ ଓ ଜୀବନଯାପନର ପ୍ରଣାଳୀ ଭାବରେ ଗଣତନ୍ତ୍ରର ପ୍ରତିଷ୍ଠା ପାଇଁ ଅତି ଶକ୍ତିଶାଳୀ ଅନ୍ୟତମ ସାଧନ ଅଟେ ।

ବିଭିନ୍ନତାରେ ବିଭୂଷିତ ଆମର ଏହି ଦେଶ ଭାରତବର୍ଷ । ଜାତି, ବର୍ଣ୍ଣ, ଧର୍ମ, ଭାଷା, ଗୋଷ୍ଠୀ, ସଂପ୍ରଦାୟ ଆଦିର ବିଭିନ୍ନତା ଏକ ନଜଳ ବୈଚିତ୍ର୍ୟ ଓ ବିଭବ ସୃଷ୍ଟି କରିଛି । ଦେଶର ଅଖଣ୍ଡତା, ଅଭିନ୍ନତା ଓ ଐକ୍ୟ ବିଶ୍ୱବକ୍ଷରେ ଆମ ପାଇଁ ଅନନ୍ୟ ଗୌରବର ଗାଥା ଗାଇଚି ରହିଛି । ସଂସ୍କୃତିର ସମୃଦ୍ଧି ଏହା ଫଳରେ ମାତ୍ରାତିରିକ୍ତ ହେଉଛି । ଆମ ମନ ଓ ମନୋଭାବ ଯଦି ଏହି ଦିଗରେ ପ୍ରବାହିତ ନ ହୁଏ ତେବେ ଏହା ବିଚ୍ଛିନ୍ନତାବାଦ, ସଂପ୍ରଦାୟିକତା ଓ ଗୋଷ୍ଠୀ ବା ବ୍ୟକ୍ତି କଡିମାରେ ପରିଣତ ହୋଇ ଜାତୀୟ ସଂହତିର ଘୋର ବିପର୍ଯ୍ୟୟ ସାଧନ କରିବ । ଅତଏବ ଜାତୀୟ ସଂହତିକୁ ସୁଦୃଢ କରିବା ପାଇଁ ସମବାୟ ହେଉଛି ଏକ ଆଦର୍ଶ ମାଧ୍ୟମ । ବିଭିନ୍ନ ଧର୍ମାବଲମ୍ବୀ ଲୋକଙ୍କର ଏଥିରେ ସ୍ୱାଧୀନ ପ୍ରବେଶାଧିକାର ରହିଛି । ତେଣୁ ସମବାୟ ସମିତି ଓ ସଂଗଠନ ହେଉଛି ଧର୍ମ ନିରପେକ୍ଷ ଓ ଧର୍ମ ନିରପେକ୍ଷ ରାଷ୍ଟ୍ରଗଠନରେ ଏହା ଏକାନ୍ତ ସହାୟକ । ଭିନ୍ନାୟତନ ପରି ଏହା କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମ ବା ଧର୍ମାବଲମ୍ବୀଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । କୃଷି, ଶିଳ୍ପ, କର୍ମଯୋଗାଣ, ଦ୍ରବ୍ୟାଦିର ବଣ୍ଟନ ଓ କିଣାବିକା, ପୁଞ୍ଜି ଲଗାଣ ସର୍ବୋପରି ମିଳିମିଶି ଚଳିବା ଓ ଉଦ୍ଦେଶ୍ୟ ସାଧନ କରିବାରେ ସମବାୟ ହେଉଛି ବଳିଷ୍ଠ ସାଧନ । ଧନୀ ଓ ଦରିଦ୍ର ନିର୍ବିଶେଷରେ ସମସ୍ତ ସଭ୍ୟ ସମାନ ଦାୟିତ୍ୱ ଓ ଅଂଶ ଗ୍ରହଣ କରନ୍ତି । କ୍ଷୁଦ୍ରଚାଷୀ, ନାମମାତ୍ର ଚାଷୀ, ଭୂମିହୀନ ବ୍ୟକ୍ତି, ଆଦିବାସୀ, ହରିଜନ, ଶ୍ରମିକ, ବଡଚାଷୀ ସମିତିର ସଭାରେ ଏକତ୍ର ବସନ୍ତି ଓ ସେମାନଙ୍କର ଆର୍ଥିକ ସମେତ ସର୍ବବିଧ ବିକାଶ ନିମନ୍ତେ ମିଳିତ ଭାବରେ ନିଷ୍ପତ୍ତି ନିଅନ୍ତି । ଏହି ନିଷ୍ପତ୍ତି ସମସ୍ତଙ୍କ ପ୍ରତି ସମାନ ଭାବରେ ଲାଗୁହୁଏ । କଥାରେ ଅଛି ମା ଓ ଝିଅ ମନ୍ଦିରକୁ ପ୍ରବେଶ କରନ୍ତି ଓ ଯେଉଁଠି ସୁଖ ମନାସନ୍ତି । ସମବାୟ ଆନ୍ଦୋଳନରେ ଏହାର ପ୍ରୟୋଗ ନାହିଁ । ଜାତି, ଧର୍ମ, ବର୍ଣ୍ଣ, ଭାଷା ଆଦି ନିର୍ବିଶେଷରେ ସମବାୟ ସମିତିର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଥାଏ । ସେହିପରି ଭାବରେ ଖାଉଟୀ, କୃଷକ, ବୁଣାକାର, ମତ୍ସ୍ୟଜୀବୀ, କଂସାରୀ ହସ୍ତଶିଳ୍ପୀ, ବେକାରୀ ଆଦି ସବୁ ଶ୍ରେଣୀର ଲୋକେ ଏହାର ଶ୍ରେଣୀଭୁକ୍ତ ହୋଇ ପାରିବେ । କାହା ପାଇଁ କୌଣସି ବାଛୁବିଚାର ନାହିଁ । ଏହି ଅବାଧ ପ୍ରବେଶ ସହିତ ସ୍ୱେଚ୍ଛାପ୍ରଣୋଦିତ ଦାୟିତ୍ୱବୋଧ ଓ କର୍ତ୍ତବ୍ୟ ସଂପାଦନ ।

''କେବଳ ମୋ ପାଇଁ ମୁଁ'' ଏହା ସମବାୟର ବିଚାରନୁହେଁ । ବିଜ୍ଞାନର ପ୍ରୟୋଗ ଫଳରେ ଭୋଗର ବାସନା ଏପରି ବଢୁଛି ଯେ ''ନିଜପାଇଁ ସବୁକିଛି'' ଆମର ଆଭିମୁଖ୍ୟ ହୋଇ ଯାଉଛି । ଏଥି ଫଳେ ସହରୀକରଣ ଓ ଶିଳ୍ପାୟନ ସମେତ ସୁଲଭ ଏବଂ ସହଜ ସମୃଦ୍ଧିକରଣ ଯୋଗୁଁ ସ୍ୱାର୍ଥାନ୍ଧତା ଅତି ମାତ୍ରାରେ ବଢିଯାଉଛି । ଏହା ସୃଷ୍ଟି କରିଛି ଏକ ପ୍ରକାର ଚରମ ବସ୍ତୁବାଦ ବ୍ୟକ୍ତିବାଦ । ଫଳରେ ସମାଜ ଦ୍ୱିଧା ବିଭକ୍ତ ହେଉଛି (1) ସର୍ବହରା ଓ (2) ସର୍ବସ୍ୱବାଦୀ । ଏ ପ୍ରକାର ସ୍ଥିତି ସମାଜରେ ତିକ୍ତତା, ହିଂସା ଓ ବିଦ୍ୱେଷ ସୃଷ୍ଟି କରେ । କିନ୍ତୁ ସମବାୟର ବ୍ୟାବହାରିକ କାର୍ଯ୍ୟକାରିତାର ଊର୍ଦ୍ଧ୍ୱରେ ରହିଛି ଏକ ଜନକଲ୍ୟାଣକାମୀ ସେବା ମନୋଭାବ ଯାହାର ସାମାଜିକ ପ୍ରୟୋଗ ସୁଦୂର ପ୍ରସାରୀ ହେଉଛି । ପୁଞ୍ଜିଲଗାଣ, ଲାଭାଂଶ ବଣ୍ଟନ, ଦାୟିତ୍ୱବୋଧ ଓ ସଚେତନ-ତାରେ ରହିଛି ସହଭାଗିତା ଓ ସମସଂଶ୍ଳିଷ୍ଟତା । ଉପରନ୍ତୁ ଚରମ ସ୍ୱାର୍ଥାନ୍ଧତା ହେଉଛି ଅଳୀକ ଓ ଅବାସ୍ତବ ଏହା ସମାଜ ବିଜ୍ଞାନର ସିଦ୍ଧାନ୍ତ ବିରୋଧୀ । ଏହା

ପରିବର୍ତ୍ତେ ସହଯୋଗିତା ସହଭାଗିତା ଓ ସମଭାଗିତା ସମାଜ ବିଜ୍ଞାନର ଅଧୁନାତମ ସିଦ୍ଧାନ୍ତ । ଏହାକୁ ଆଧାରିତ ହୋଇଥିବାରୁ ସମବାୟ ସଂହତି, ଶାନ୍ତି ଓ ପ୍ରୀତି ପାଇଁ ଅନୁକୂଳ ।

ସାରା ବିଶ୍ୱରେ ଦୁର୍ବଳତମ ଶ୍ରେଣୀର ଲୋକମାନଙ୍କ ଶୋଷଣ ଓ ଦୁର୍ବଳତାକୁ ଦୂର କରି ସେମାନଙ୍କ ମନରେ ଶକ୍ତି, ସ୍ୱାଶ୍ରୟିତା, ସ୍ୱାଭିମାନ ତଥା ମାନବପ୍ରେମ ସୃଷ୍ଟି କରିବା ହେଉଛି ସମବାୟର ଇତିହାସ । ସମ୍ବଳର ସ୍ୱଳ୍ପତା ଓ ସୀମିତ ସଭ୍ୟ ସଂଖ୍ୟାରୁ ସମବାୟର ସୂତ୍ରପାତ କରାଯାଏ । ଅର୍ଥର ପ୍ରାଚୁର୍ଯ୍ୟ ଯେପରି ଏକାନ୍ତ ଆବଶ୍ୟକ ନୁହେଁ, ଅର୍ଥର ଅଭାବ ସେହିପରି ଅଲଂଘନୀୟ ଉପାଦାନ ନୁହେଁ । ବରଂ ଅର୍ଥର ସ୍ୱଳ୍ପତା ମନରେ ଆହ୍ୱାନ ଆଣେ ଓ ବିନ୍ଦୁ ବିନ୍ଦୁ ଜଳ ଏକତ୍ର ହୋଇ ସିନ୍ଧୁ ସୃଷ୍ଟି କଲାପରି ସମ୍ବଳ ଓ ସଭ୍ୟଙ୍କର ସ୍ୱଳ୍ପତାକୁ ଘନୀଭୂତ କରି ସମବାୟ ଏକ ଆନ୍ଦୋଳନର ରୂପନିଏ । ଅର୍ଥ ନୁହେଁ, ପରାର୍ଥତା ଓ ପରମାର୍ଥତା ହେଉଛି ଉଦ୍ଦେଶ୍ୟ । ସମସ୍ତ ଅଭାବ ମଧ୍ୟରେ ଯେଉଁ ଶୁଦ୍ଧ ଭାବଟି ଅବ୍ୟକ୍ତ ପରି ଲାଗୁଥାଏ ତାକୁ ବ୍ୟକ୍ତ ଓ ବୃଦ୍ଧି କରିବା ହେଉଛି ଭାବନା । ରକ୍‌ଡେଲ ବନ୍ଧୁମାନେ ତାହାହିଁ କରିଛନ୍ତି । କାନେଡା ଏହା ପ୍ରମାଣ କରିଛି । ଡେନମାର୍କ ନରୱେ ପ୍ରଭୃତି ଦେଶଗୁଡିକ ଏହା ପ୍ରମାଣ କରିଛନ୍ତି । ରବୀନ୍ଦ୍ର ନାଥଙ୍କ ଶାନ୍ତିନିକେତନ ପ୍ରକଳ୍ପ(1922), ବରୋଦାର ଗ୍ରାମ୍ୟ ପୁନର୍ଗଠନ ପ୍ରକଳ୍ପ(1932), ମାନ୍ଦ୍ରାଜର ଫିର୍କା ବିକାଶ ଯୋଜନା(1946), ଉତ୍ତର ପ୍ରଦେଶର ଇଟାୱା ପାଇଲଟ ପ୍ରକଳ୍ପ(1948), ମହାତ୍ମାଗାନ୍ଧୀ ପରିକଳ୍ପିତ ସେବାଗ୍ରାମ(ୱାର୍ଦ୍ଧା) ଯୋଜନା ଆଦି ଭାରତରେ ସମବାୟ ଆନ୍ଦୋଳନର ଆଲୋକସ୍ତମ୍ଭ ହୋଇ ରହିଛି । 1904 ମସିହାରେ ଭାରତରେ ଏହି ଆନ୍ଦୋଳନର ଶୁଭାରମ୍ଭ କରାଯାଏ । 1952 ମସିହାରୁ ଗୋଷ୍ଠୀ ବିକାଶ କାର୍ଯ୍ୟକ୍ରମ ଓ 1971 ମସିହାରୁ କ୍ଷୁଦ୍ରଚାଷୀ ବିକାଶ ଏଜେନ୍‌ସି ପ୍ରକଳ୍ପ ଏହି ଆନ୍ଦୋଳନରେ ସାମିଲ ହୋଇ ଏହା ଏକ ସ୍ରୋତରେ ପରିଣତ ହୋଇଛି । ଅତଏବ ଏହା ଜଣାପଡିବ ଯେ ସମବାୟ ଦରିଦ୍ର ଜନସାଧାରଣଙ୍କ ଅର୍ଥନୈତିକ ଓ ମାନବିକ ବିକାଶ ପାଇଁ କ୍ଷେତ୍ର ପ୍ରସ୍ତୁତ କରେ । ଏହା ଫଳରେ ଅଯଥା ଅଶାନ୍ତି, ଅସନ୍ତୋଷ ଓ ହିଂସାର ସ୍ଥାନ ରହେ ନାହିଁ ।

ଆନ୍ଦୋଳନ ସାଧାରଣତଃ ଦାବୀ ପୂରଣ ପାଇଁ ଆୟୋଜନ କରାଯାଏ । ଏଥିଯୋଗୁଁ ତଥା ସମାଜର ଜୀବନରେ ଆଲୋଡନ ସୃଷ୍ଟି ହୁଏ । ଧାରଣା, ଧମକ, ଧକ୍କାର ଆଦିର ଆଶ୍ରୟ ନେଇ ଦାବୀ ହାସଲ କରାଯାଏ । ଅଳ୍ପ ସୁବିଧା ଥିବା କିମ୍ବା ବିଲକୁଲ୍ ସୁବିଧା ନ ଥିବା ଲୋକମାନେ ଅଧିକ ସୁବିଧା ଭୋଗୀ ଶ୍ରେଣୀ ଓ ଲୋକମାନଙ୍କ ଉପରେ ଚାପ ପକାଇ ନିଜ ଦାବୀ ସାବ୍ୟସ୍ତ କରନ୍ତି । କିନ୍ତୁ ସମବାୟ ଆନ୍ଦୋଳନ ହେଉଛି ଅର୍ଥନୈତିକ ଓ ସାମାଜିକ ଉନ୍ନତି ତଥା ପ୍ରଗତି ପାଇଁ ଏକ ଗଣ ଆନ୍ଦୋଳନ । ବେସରକାରୀ ଓ ଜନସାଧାରଣଙ୍କ ସହଯୋଗରେ ବିକାଶର ବନ୍ୟା ସମସ୍ତଙ୍କ ହୃଦୟକୁ ପ୍ଲାବିତ କରେ । ଜାତି, ଧର୍ମ, ବର୍ଣ୍ଣ, ଭାଷା ଆଦି ନିର୍ବିଶେଷରେ ସମସ୍ତେ ଏହି ଆନ୍ଦୋଳନଭୁକ୍ତ ହୋଇ ପାରିବେ ।

ଅଧ୍ୟୟନରତ ଛାତ୍ରଛାତ୍ରୀ, ଗୃହିଣୀ, ବୃଦ୍ଧ, ବୃଦ୍ଧା, ବେକାର, ଅକର୍ମଣ୍ୟ ଆଦି ସବୁ ଶ୍ରେଣୀର ଓ ସବୁ ବୟସର ଲୋକମାନଙ୍କ ପାଇଁ, ସେମାନଙ୍କ ଦ୍ୱାରା ଓ ସେମାନଙ୍କ ଆନ୍ଦୋଳନ ହେଉଛି ସମବାୟ । କାମଧନ୍ଦା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଚିରାଚରିତ ବୃତ୍ତି ଓ ବ୍ୟବସାୟରେ କର୍ମକୁଶଳତାର ବୃଦ୍ଧି କରାଯାଇ ଦାବୀ ଓ ଦାୟିତ୍ୱର ସମନ୍ୱୟ ସାଧନ କରାଯାଏ । ରାଜ୍ୟରୁ ରାଜ୍ୟାନ୍ତର ଏବଂ ଦେଶରୁ ଦେଶାନ୍ତର ସମବାୟର ପରିସର ପରିବ୍ୟାପ୍ତ ହୋଇ କ୍ରମେ ବିଶ୍ୱବ୍ୟାପୀ ହୁଏ । ଏହି ବ୍ୟାପକତା ହେତୁ ସମବାୟ ଏକ ଆନ୍ଦୋଳନରେ ପରିଣତ ହୁଏ । ତେଣୁ ଏଥିରେ ଉତ୍ତେଜନାର ବିସ୍ଫୋରଣ ନାହିଁ, କିମ୍ବା ଦାବୀର ଏକଗୁଁଟିଆ ପ୍ରତିପାଦନ ନାହିଁ । ଏଥିରେ ନିହିତ ଅଛି ନୀରବ ସାମାଜିକ ବିପ୍ଳବ । ଶୋଷଣ କରିବର୍ତ୍ତେ ସର୍ବ ଜନହିତାୟ ପାଇଁ କର୍ତ୍ତବ୍ୟ ସଂପାଦନ ।

ଆମ ଦେଶରେ, ବିଶେଷ କରି ବିକାଶଶୀଳ ରାଷ୍ଟ୍ରଗୁଡିକରେ ଅଭାବ, ଅସମତା, ଭୌତିକ ତଥା ମାନବିକ ସମ୍ଭାବନାର ବିନିଯୋଗରେ ଅବ୍ୟବସ୍ଥା ଲାଗି ରହିଛି । ଜନ ସଂଖ୍ୟାରେ ଦ୍ରୁତ ଅଭିବୃଦ୍ଧି ସମସ୍ତ ଯୋଜନାବଦ୍ଧ ବିକାଶର ଧାରାକୁ ପଣ୍ଡ କରି ଦେଉଛି । ଖଳ ପ୍ରକୃତିର ଲୋକଙ୍କ ବଳ ଓ ଚକ୍ରାନ୍ତ ଶତ୍ରୁ ହୋଇ ରହିଛି । ଶିକ୍ଷାର ପ୍ରସାର ଆଶାନୁରୂପ ନ ହେବା ଫଳରେ ଓ ଶିକ୍ଷାରେ ଗୁଣାତ୍ମକ ଦିଗ ପ୍ରତି ଧ୍ୟାନ ନ ରହିବା ହେତୁ ସେମାନଙ୍କର ଆତ୍ମବଳ ଅବସ୍ଥାନୁରୂପ ହୋଇ ପାରୁନାହିଁ । ତେଣୁ ଜନସାଧାରଣ ସହଜରେ ଶୋଷଣର ଶରବ୍ୟ ହେଉଛନ୍ତି ଓ ନିଜ ନିଜର ସମସ୍ୟାକୁ ପ୍ରକାଶ କରି ପାରୁନାହାନ୍ତି । ଲୋକସଂଖ୍ୟା ଓ ଏହାର ବୃଦ୍ଧି

ଗଣା ଯାଇ ପାରୁଥିଲେ ହେଁ ଲୋକଶକ୍ତି ନଗଣ୍ୟ ଓ ଅବ୍ୟକ୍ତ ହୋଇ ରହୁଛି । ଏହାକୁ ଠାବ କରାଯାଇ ପାରୁନାହିଁ । ଏଥିଯୋଗୁଁ ଜାତୀୟ ଜୀବନ କ୍ଷୀଣ ଓ ଅସ୍ପଷ୍ଟ ହେଉଛି । ଜାତୀୟ ପ୍ରତିଭାର ବିକାଶ ଘଟୁନାହିଁ । ସମବାୟ ଏ ଦିଗରେ ସହାୟକ ହେବାରେ ପ୍ରକୃଷ୍ଟ ମାଧ୍ୟମ କହିଲେ ଚଳେ । ଏହା ନ କରି ପାରିଲେ ସମବାୟକୁ ନିନ୍ଦିତ କରାଯିବ, ସତ କିନ୍ତୁ ଜାତୀୟ ଜୀବନ ଦୁର୍ବଳ ହେବ । ଗଣତନ୍ତ୍ର, ସମାଜବାଦ, ସମତା ଓ ଧର୍ମନିରପେକ୍ଷତା କେବଳ କଥାର ନଥା ହୋଇ ରହିବ । ଜାତୀୟ ସଂହତି ସେହିପରି ବାଟିକ ଅନ୍ଧକାରରେ ପରିଣତ ହେବ । ଅତଏବ ଏସବୁର ରୂପାୟନ ପାଇଁ ସମବାୟ ଆନ୍ଦୋଳନକୁ ସଫଳ କରିବା ଉଚିତ ।

ଆମ ଜାତୀୟ ଜୀବନର ଦୁର୍ବଳତାର ସୁଯୋଗ ନେଇ ଓ ଅନେକ ସମୟରେ ଆମ ଜାତୀୟ ପ୍ରଗତି ପ୍ରତି ଈର୍ଷା ପରବଶ ହୋଇ ବହିଃ ଶତ୍ରୁ ବିଚ୍ଛିନ୍ନତାବାଦୀ ଓ ବିଭେଦକାରୀ ଶକ୍ତିକୁ ପ୍ରୋତ୍ସାହିତ କରୁଛନ୍ତି । ଆର୍ଥିକ ସାହାଯ୍ୟ ଓ ବୈଷୟିକ କୌଶଳ ତଥା ସାମଗ୍ରୀ ଯୋଗାଇ ଦେଉଛନ୍ତି । ଏହା ଫଳରେ ଆମ ଦେଶର ଅଖଣ୍ଡତା, ଶୃଙ୍ଖଳା ଓ ଐକ୍ୟ ବାଧାପ୍ରାପ୍ତ ହେଉଛି । ଆମ ଦେଶର ବହୁ ପରୀକ୍ଷିତ ଓ ବହୁଦିନରୁ ଗଠିତ ମୂଲ୍ୟବୋଧଗୁଡ଼ିକ ଅତି ତୁଚ୍ଛ ପରିଗଣିତ ହେଉଛି । କିନ୍ତୁ ଆମେ ସମବାୟର ପ୍ରକ୍ରିୟା ସୁଦୃଢ଼ ଓ ଶୁଦ୍ଧ କରି ପାରିଲେ ଆମ ଜାତୀୟ ଚରିତ୍ର ପ୍ରତିଷ୍ଠିତ ହେବ । ଜାତୀୟ ଜୀବନ ମଜଭୁତ ହେବ । ଆମେ ବିଶ୍ୱବକ୍ଷରେ ଅପରାଜେୟ ହେବା ।

ସେତିକି ନୁହେଁ, ବିଶ୍ୱର ବୃହତ୍ ଶକ୍ତିଗୁଡ଼ିକ ଆପଣା ମଧ୍ୟରେ ଯେଉଁ ମୁକାବିଲା ମନୋଭାବ ପୋଷଣ କରୁଛନ୍ତି ଏହା ଆମ ପାଇଁ ଆହ୍ୱାନ ଓ ଆସ୍ଫାଳନ ହୋଇ ରହୁଛି । ବିଜ୍ଞାନର ମାରଣାସ୍ତ୍ରଗୁଡ଼ିକ ଅଧିକତର ମାରାତ୍ମକ ହେଉଥିବାରୁ ମୁହୂର୍ତ୍ତକ ମଧ୍ୟରେ ମାନବ ସମାଜର ଧ୍ୱଂସ ଆଶଙ୍କା ଆମକୁ ବିକ୍ଷୁବ୍ଧ କରୁଛି । ଅବଶ୍ୟ ଏକଥା ସତ୍ୟ ଯେ ବୃହତ୍ ଶକ୍ତିଗୁଡ଼ିକ ବିଶ୍ୱପୃଷ୍ଠରୁ ଯୁଦ୍ଧର ଆଶଙ୍କା ଦୂର କରିବା ଉଦ୍ଦେଶ୍ୟରେ ଆଣବିକ ଅସ୍ତ୍ରଶସ୍ତ୍ରର ନିରୋଧ ତଥା ନିୟନ୍ତ୍ରଣ ପାଇଁ ପରସ୍ପର ମଧ୍ୟରେ ଆଲୋଚନାରତ ରହିଛନ୍ତି । ସେମାନଙ୍କ ମଧ୍ୟରେ ଏହି ସଂପର୍କୀୟ ମତପାର୍ଥକ୍ୟ କ୍ରମେ ଦୂରୀଭୂତ ହେବାର ଚିହ୍ନ ଜଣାପଡୁଛି । ପୃଥିବୀ ପୃଷ୍ଠରେ ଶାନ୍ତିର ଶକ୍ତି ଓ ଆନ୍ଦୋଳନ କ୍ରମେ ବୃଦ୍ଧିପ୍ରାପ୍ତ ହେଉଛି । ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ଶାନ୍ତି ସପକ୍ଷରେ ଜନମତକୁ ଦୃଢ଼ୀଭୂତ କରୁଛି । ଏହି ଆନ୍ଦୋଳନର ଷଡ଼ରାଷ୍ଟ୍ର ମଧ୍ୟରେ ଭାରତ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଏସବୁ ଆଶାର ଚିହ୍ନ । ମାନବ ସମାଜପାଇଁ ଶାନ୍ତି, ମୈତ୍ରୀ ଓ ପ୍ରୀତିର ନବ ପ୍ରଭାତ ସଦୃଶ୍ୟ । ଏହା ସତ୍ତ୍ୱେ ବୃହତ୍ ଶକ୍ତିଗୁଡ଼ିକ ମଧ୍ୟରେ ଝଂକାଫକ୍ଷା ଆମ ପାଇଁ ଘୋର ଆଶଙ୍କାର କାରଣ । ବିବାଦ, ବିଦ୍ରୋହ ଓ ବିକ୍ଷୋଭ କ୍ରମେ ବୃଦ୍ଧି ପାଉଛି । ସେମାନେ ବିଶ୍ୱବକ୍ଷରେ ଓ ବେଳେବେଳେ ଆମ ପଡ଼ୋଶୀ ଅଞ୍ଚଳରେ କୂଟନୀତିରେ ଲିପ୍ତ ରହି ନିଜ ବଡ଼ିମା ପ୍ରଦର୍ଶନ କରୁଛନ୍ତି । ଆମେ ଏଥିଯୋଗୁଁ ଉଦାସୀନ ହୋଇ ରହି ପାରିବା ନାହିଁ । ବିଭେଦର ଶକ୍ତିକୁ ମୁଣ୍ଡ ଟେକିବାକୁ ଦେବା ନାହିଁ । ଅନ୍ଧବିଶ୍ୱାସ, ଅସ୍ପୃଶ୍ୟତା, ଅସମତା, ଅବିଶ୍ୱାସ, ଅସୂୟା, ଆଞ୍ଚଳିକତା ଆଦିକୁ ଦୂର କରି ''ଆମ ମା ଭାରତ'' ଓ ''ଭାରତ ମାତାର ଆମେ ସନ୍ତାନ'' ଏହାର ବିକାଶ କରାଇବା । ସମବାୟ ଏହି ଭ୍ରାତୃତ୍ୱର ପ୍ରତୀକ । ସଂହତିର ଏହା ମାଧ୍ୟମ । ସମବାୟ ଓ ସଂହତି ପରସ୍ପର ସଂଶ୍ଳିଷ୍ଟ ।

ଆଜିକାଲି ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ବିଷୟରେ ଉଲ୍ଲେଖ କରାଯାଉଛି । ସେହି ପ୍ରସଙ୍ଗରେ ଏହା ଲକ୍ଷ୍ୟ କରିବାର ବିଷୟ ଏହି ଯେ ମାନବ ଜୀବନ ଆଜି ମୂଲ୍ୟହୀନ ହୋଇ ପଡ଼ିଛି । ଭାଗବତକାର କହିଛନ୍ତି, ସର୍ବ ଶରୀର ମଧ୍ୟେ ସାର, ଦୁର୍ଲ୍ଲଭ ନର କଳେବର । ସେଥିପାଇଁ ନର ନାରାୟଣ । ଆମର ଆତ୍ମା ନର ଶରୀର ମଧ୍ୟରେ ବିରାଜିତ ଓ ଏହି ସଚେତନତା ବଳରେ ସେ ଦେବୋପମ ହୋଇ ପାରିବ । କିନ୍ତୁ ଆଜି ନରହତ୍ୟା ଏକ ଦୈନନ୍ଦିନ ଘଟଣା ହୋଇଛି । ଆମ ଦେଶରେ ତଥା ସାରା ବିଶ୍ୱରେ ଏପରିକି ଆମ ପଡ଼ୋଶୀ ଦେଶଗୁଡ଼ିକରେ ଏକକାଳୀନ ଏକାଧିକ ନରହତ୍ୟା ଭୟାବହ ହୋଇଛି । ଏହାର ବିଭୀଷିକା ଶିହରଣ ସୃଷ୍ଟିକରେ । ରକ୍ତର ଖେଳ ପିଲାଙ୍କ ହୋରି ଖେଳ ପରି ମନେ ହୁଏ । ହିଂସାରେ ଶାଣିତ ଦୁର୍ବୃତ୍ତ ଆଜି ପୈଶାଚିକ ବୃତ୍ତି ଧାରଣ କରିଛି । କାହିଁ ସେହି ମହାନ ମାନବ । ଅମୃତସ୍ୟ ପୁତାଃ, ମହାନୁଭବ ସେ, ସେବା ଓ ତ୍ୟାଗର ପ୍ରତୀକ । ଗଣତନ୍ତ୍ରର ସେ ପ୍ରାଣ । ବନ୍ଧୁତା ଓ ପ୍ରେମ ସୁନ୍ଦର । ସେ ସୁଶୋଭିତ ଓ ସେହି ଲୋଭରେ ଦେବତାଙ୍କର ନରପ୍ରାପ୍ତି । ଜଣକର ହତ୍ୟା, ସମସ୍ତଙ୍କର ଲଜ୍ଜା, ବ୍ୟଥା ଓ ଅଭାବନୀୟ

କ୍ଷତି । ସମବାୟ ଜନକଲ୍ୟାଣର କାର୍ଯ୍ୟକ୍ରମ । ଜନଶକ୍ତିର ସ୍ତମ୍ଭରେ ଏହାର ଅଟଳ ସୌଧ । ଅମୂଲ୍ୟ ଜନଜୀବନ ସମବାୟର ସୌରଭ ।

ଅତଏବ ସମବାୟର ସୁପରିକଳ୍ପନା ଏକାନ୍ତ ଆବଶ୍ୟକ । କୌଣସି ପ୍ରକାର ସଂକୀର୍ଣ୍ଣ ସ୍ୱାର୍ଥସିଦ୍ଧି ଏହାର ପରିକଳ୍ପନାରେ ସ୍ଥାନ ପାଇବା ଅନୁଚିତ । ସଂକୀର୍ଣ୍ଣତା ରାଜନୈତିକ, ଧାର୍ମିକ, ସଂପ୍ରଦାୟିକ ଓ ଆତ୍ମକୈନ୍ଦ୍ରିକ ହୋଇପାରେ । ଶାସକଗୋଷ୍ଠୀ ନିଜର ବା ନିଜ ଦଳର କ୍ଷମତାକୁ ବଜାୟ ରଖିବା ପାଇଁ ସମବାୟ ଅନୁଷ୍ଠାନକୁ ହାତ ବାରିଶି ଭାବରେ ବ୍ୟବହାର କରି ପାରନ୍ତି । ସମବାୟର ବୃହତ୍ତର ଆଦର୍ଶ ଓ ଉଦ୍ଦେଶ୍ୟ ଏହାଦ୍ୱାରା ବାଧା ପ୍ରାପ୍ତ ହୁଏ । ପଂଚମ ଭାରତୀୟ ସମବାୟ କଂଗ୍ରେସ(୧୯୫୨)ର ଅଧିବେଶନରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ନିମ୍ନୋକ୍ତ ଭାବରେ ସମସ୍ତଙ୍କ ଧ୍ୟାନ ଆକର୍ଷଣ କରିଥିଲେ,''ଭାରତରେ ସମବାୟ ଆନ୍ଦୋଳନର ଇତିହାସରୁ ଜଣାପଡେ ଯେ ଯେଉଁଠାରେ ଏହି ଆନ୍ଦୋଳନ ଶକ୍ତିଶାଳୀ ହୋଇଛି, ତାହା କେବଳ ଉତ୍ସର୍ଗୀକୃତ ବ୍ୟକ୍ତିବିଶେଷଙ୍କ ନିଃସ୍ୱାର୍ଥ ସେବା ଯୋଗୁଁ ସମ୍ଭବ ହୋଇଛି, ଯେଉଁମାନେ ରାଜନୈତିକ ପ୍ରଲୋଭନରୁ ବରାବର ନିବୃତ୍ତ ରହିଛନ୍ତି । ଜନସେବାର ଏକ ବିକଳ୍ପ ପନ୍ଥା ଭାବରେ ସେମାନେ ସମବାୟକୁ ଧରି ନେଇଛନ୍ତି ।'' ସମବାୟର ଜଣେ ପୁରୁଖା ସଭ୍ୟ ସିଂହଳରେ ଗୋଟିଏ ଧ୍ୱନି ଦେଇଥିଲେ ଓ ତାହା ହେଉଛି,''ସମବାୟର ମନ୍ଦିର ମଧ୍ୟରେ ପ୍ରବେଶ କଲାବେଳେ ରାଜନୈତିକ ପୋଷାକ ବାହାରେ କାଢି ରଖିବାକୁ ହେବ।(When you enter the temple of co-operation, leave your political shoes outside)

ଏସବୁର ତାତ୍ପର୍ଯ୍ୟ ହେଉଛି ଯେ ସମବାୟକୁ ରାଜନୀତିର କବଳରୁ ମୁକ୍ତ କରିବାକୁ ହେବ । ଯାହାହେଉ, ଏହା ମଧ୍ୟ ସୁପାରିଶ କରାଯାଏ ଯେ ପ୍ରାରମ୍ଭିକ ଅବସ୍ଥାରେ ସମବାୟ ଅନୁଷ୍ଠାନଗୁଡ଼ିକ ସରକାରୀ ସାହାଯ୍ୟ ଗ୍ରହଣ କରିବା ଆବଶ୍ୟକ । ସରକାର କେବଳ ପ୍ରୋତ୍ସାହନମୂଳକ ଭୂମିକା ଗ୍ରହଣ କରିବେ । ସମବାୟ ଆନ୍ଦୋଳନ ଭଲ ଭାବରେ ନିଜ କଥା ବୁଝି ପାରିଲେ ସରକାରୀ ମାର୍ଗଦର୍ଶନ ଓ ଆର୍ଥିକ ସାହାଯ୍ୟକୁ ବନ୍ଦ କରି ଦିଆଯିବ ।

ପରିଶେଷରେ ଶିକ୍ଷାରେ ସମବାୟ ଓ ସମବାୟ ଶିକ୍ଷା ବିଷୟରେ ଆଲୋଚନା କରିବା । ଉକ୍ତେଲ ନୀତିର ୨ମ ଧାରାରେ ସମବାୟ ଶିକ୍ଷା ସମ୍ବନ୍ଧରେ ସୂଚନା ଦିଆଯାଇଛି । ସମବାୟକୁ ଯଦି ଏକ ସ୍ୱାଶ୍ରୟୀ ଓ ସ୍ୱାବଲମ୍ବୀ ଗଣତାନ୍ତ୍ରିକ ଆନ୍ଦୋଳନରେ ପରିଣତ କରିବାକୁ ଇଚ୍ଛା କରୁଁ, ତେବେ ସମବାୟର ଆଦର୍ଶ ଓ ନୀତି ସମ୍ବନ୍ଧରେ ଏହାର ସଭ୍ୟ ଓ କର୍ମଚାରୀମାନଙ୍କୁ ଶିକ୍ଷା ଦେବା ଏକାନ୍ତ ପ୍ରୟୋଜନୀୟ । ସମବାୟ ବ୍ୟାଙ୍କ ( Bank ) ଆଦି ମଧ୍ୟ ନିର୍ଦ୍ଦିଷ୍ଟ ଅଂଚଳରେ ସାକ୍ଷରତା ଶିକ୍ଷା, ଜନସଂଖ୍ୟା ଶିକ୍ଷା, ମିତବ୍ୟୟିତା ଶିକ୍ଷା ଆଦି ଅର୍ଥବରାଦ ଓ ପୃଷ୍ଠପୋଷକତା କରି ପାରନ୍ତି । ଏହାଛଡ଼ା ସମବାୟ ଶିକ୍ଷାକୁ ସ୍କୁଲ ଶିକ୍ଷାର ପାଠ୍ୟକ୍ରମ ଅଂଗୀଭୂତ କରିବା ଉଚିତ । ଉଚ୍ଚତର ଶିକ୍ଷାରେ ମଧ୍ୟ ସ୍ଥାନ ଦିଆଯିବା ଆବଶ୍ୟକ ।

ସହଯୋଗର ସମାଜ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ପ୍ରତିଷ୍ଠା କରାଯାଇ ପାରିବ । ଏହିହିଁ ସମବାୟ ଆନ୍ଦୋଳନର ଲକ୍ଷ୍ୟ ଓ ଏଥିପାଇଁ ଉଦ୍ୟମ ଅବ୍ୟାହତ ରହିଛି । ଏହାହିଁ ସଂହତିର ଦେଶ ଓ ବିଶ୍ୱ ।

ଓଡ଼ିଶାକୁ ଭାରତର ଏକ ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା, ଏହାକୁ ଅନ୍ୟମାନଙ୍କର ଦୟାର ପାତ୍ର ରୂପେ ନରଖି, ପ୍ରଶଂସାର ପାତ୍ର ଓ ଆଦର୍ଶ ଓ ଅନୁକରଣର ସ୍ଥଳରେ ପ୍ରତିଷ୍ଠିତ କରିବା ହେଉଚି ଆମ ପାଇଁ ଆଜି ଏକ ଆହ୍ୱାନ ।

**ଜାନକୀ ବଲ୍ଲଭ ପଟ୍ଟନାୟକ**

# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଏକ ବିଶ୍ଳେଷଣାତ୍ମକ ଇତିହାସ

ଡକ୍ଟର ପ୍ରସନ୍ନ କୁମାର ମିଶ୍ର

ଓଡ଼ିଆ ଜାତି ୧୯୩୬ ମସିହା ଅପ୍ରେଲ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବାରେ ସମର୍ଥ ହୋଇଥିଲା । କିନ୍ତୁ ସେହି ସମୟର ଠିକ୍ ପାଞ୍ଚ ଶହ ବର୍ଷ ପୂର୍ବରୁ ଫେରିଗଲେ ଇତିହାସ ଆମକୁ ମନେ ପକାଇ ଦେଇ କହେ ଯେ ଆମେ ସମ୍ରାଟ କପିଳେନ୍ଦ୍ର ଦେବଙ୍କର ବିରାଟ ଓଡ଼ିଶା ଫେରିପାଇବାରେ ସମର୍ଥ ହୋଇଛୁ କି ? ସମ୍ଭବତଃ ନା ।

୧୫୬୮ ମସିହାରେ ଓଡ଼ିଶା ତା'ର ସ୍ୱାଧୀନତା ହରାଇଲା । ସେତେବେଳକୁ ଓଡ଼ିଶାର ଅଙ୍ଗ ପ୍ରତ୍ୟଙ୍ଗ ଖଣ୍ଡ ବିଖଣ୍ଡିତ ହୋଇ ଗଲାଣି । ତାପରେ ଆଫଗାନ, ମୋଗଲ ଓ ମରହଟ୍ଟା ରାଜତ୍ୱ କାଳରେ ଓଡ଼ିଶାର ବାସ୍ତବିକ ଅସ୍ତିତ୍ୱ ନଥିଲା କହିଲେ ଚଳେ । ଓଡ଼ିଆ ଜାତି ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ ହୋଇଥିଲା; ଯଥା: ମୋଗଲବନ୍ଦି ଓଡ଼ିଆ ଏବଂ ଗଡ଼ଜାତି ଓଡ଼ିଆ । ୧୮୦୩ ମସିହାରେ ଇଂରେଜ କେବଳ ମୋଗଲବନ୍ଦି ଓଡ଼ିଶାକୁ ଅଧିକାର କଲେ ଏବଂ ପ୍ରତ୍ୟକ୍ଷ ଶାସନ ମଧ୍ୟ କଲେ । ଗଡ଼ଜାତ ରାଜ୍ୟଗୁଡ଼ିକ ସମ୍ପୂର୍ଣ୍ଣ ଅଲଗା ହୋଇଗଲା । ଅବଶ୍ୟ କାଳକ୍ରମେ ଖୋର୍ଦ୍ଧା, ବାଙ୍କୀ, ଅନୁଗୁଳ, ସମ୍ବଲପୁର ଏବଂ କଣ୍ଡମାଳ ଅଞ୍ଚଳଗୁଡ଼ିକ ଇଂରେଜ ସରକାରଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନକୁ ଆସିଲା । ୧୮୫୭ ମସିହାପରେ ପୂର୍ବରୁ ଅଧିକୃତ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା ସମୂହ ଏବଂ ଉପରୋକ୍ତ ଅଞ୍ଚଳଗୁଡ଼ିକ ଓଡ଼ିଶା ଡିଭିଜନ ନାମରେ ଅଭିହିତ ହେଲେ । କିନ୍ତୁ ସମ୍ବଲପୁର ଶାସନଗତ ଓ ରାଜନୈତିକ କାରଣ ଦୃଷ୍ଟିରୁ ମଧ୍ୟ ପ୍ରଦେଶର ଛତିଶଗଡ଼ ଡିଭିଜନର ଅନ୍ତର୍ଭୁକ୍ତ ହେଲା । ଗଡ଼ଜାତ ରାଜ୍ୟ ସମୂହ ଅହାରି ମୁଲକରେ ନାମିତ ହୋଇ ଶିକ୍ଷା, ସଂସ୍କୃତି ଓ ସଭ୍ୟତାର ବହୁତ ଦୂର ତଥା ପଛରେ ରହିଗଲା । ସମ୍ରାଟ କପିଳେନ୍ଦ୍ର ଦେବଙ୍କର ଓଡ଼ିଶାର ଅବସ୍ଥା ଏପରି ହେବ ବୋଲି କୌଣସି ଓଡ଼ିଆ କେବେହେଲେ ସେତେବେଳେ ଚିନ୍ତା କରିଥିଲା ଅବା ସ୍ୱପ୍ନରେ ଭାବିଥିଲା କି ?

ଓଡ଼ିଆ ଜାତିର ଭାଗ୍ୟରେ ପରିବର୍ତ୍ତନ ଆସିଲା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଆଶା ଆକାଂକ୍ଷାର ଭାବନା ଓଡ଼ିଆ ଜାତିର ଉଦରରେ ସଂଚରିତ ହେଲା । ଏହି ଆଶାର ଅଙ୍କୁରୋଦ୍‌ଗମ ହେଲା ୧୮୬୬ ମସିହାରେ । ସାର୍ ଷ୍ଟାଫୋର୍ଡ ନର୍ଥକୋଟ ୧୮୬୮ ମସିହାରେ ଏହିବିଷୟରେ ଭାରତ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ପରବର୍ତ୍ତୀ ତିନି ଦଶନ୍ଧିରେ ଓଡ଼ିଆ ଜାତିର ମନରେ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଭାବନା ଓ ଚେତନା ଜାଗ୍ରତ ହେଲା । ବିଭିନ୍ନ ସମାଜ, ଅନୁଷ୍ଠାନ, ସଭା ସମିତି ଆଦି ପ୍ରତିଷ୍ଠିତ ହେଲା । ସାମାଜିକ ତଥା ଅର୍ଥନୈତିକ ଆନ୍ଦୋଳନ ଆରମ୍ଭ ହେଲା ୧୮୮୦ ମସିହାଠାରୁ । କିନ୍ତୁ ଭାଷାଭିତ୍ତିକ ଜାତୀୟତା ଆନ୍ଦୋଳନର ସୂତ୍ରପାତ ହେଲା ପ୍ରଥମେ ସମ୍ବଲପୁରରେ । ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ଏହି ଆନ୍ଦୋଳନର ପ୍ରାବଲ୍ୟ ସମଗ୍ର ଇଂରେଜ ଶାସନାଧୀନ ଓଡ଼ିଶାରେ ଖୁବ୍ ଭଲ ଭାବରେ ଅନୁଭୂତ ହେଲା । ସମ୍ବଲପୁର ଏ ଦିଗରେ ଅଗ୍ରଣୀ ଥିଲା । ଫଳତଃ ଓଡ଼ିଆ ଜାତିର ଭାଗ୍ୟାକାଶ ଅଧିକ ଉଜ୍ଜ୍ୱଳ ହୋଇ ଉଠିଲା । ତତ୍‌କାଳୀନ ଭାରତର ବଡ଼ଲାଟ ଲର୍ଡ କର୍ଜନଙ୍କ ଶୁଭେଚ୍ଛାକୁ ୧୯୦୩ ମସିହା ଡିସେମ୍ବର ମାସରେ କାର୍ଯ୍ୟରେ ପରିଣତ କଲେ ଭାରତ ସରକାରଙ୍କ ଘରୋଇ ବିଭାଗ ଶାସନ ସଚିବ ଏଚ୍. ଏଚ୍. ରିସଲୀ । ରିସଲୀ ସରକୁଲାରରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଯାଇ ପାରିବାର ଉଲ୍ଲେଖ ଥିଲା । ଏହା ପୂର୍ବରୁ ୧୯୦୧ ମସିହାରେ ମଧ୍ୟ ପ୍ରଦେଶ ସରକାର ସମ୍ବଲପୁର ଅଞ୍ଚଳକୁ ନିଜ ଶାସନରୁ ମୁକ୍ତ କରିବାକୁ ଚାହିଁଥିଲେ ହେଁ ଭାରତ ସରକାର ଏଥିରେ ରାଜି ନ ହୋଇ କେବଳ ସମ୍ବଲପୁରରେ ଓଡ଼ିଆ ଭାଷା ପୁନଃ ପ୍ରଚଳିତ ହେବା ପାଇଁ ଆଦେଶ ଦେଇଥିଲେ । ସମ୍ବଲପୁର ଏହାପରେ ବଙ୍ଗପ୍ରଦେଶ ଶାସନାଧୀନ ହେଲା ।

୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ଜନ୍ମ । ଏହି ସମ୍ମିଳନୀର ପ୍ରାଣ କେନ୍ଦ୍ରଥିଲେ ମଧୁସୂଦନ ଦାସ । ତାଙ୍କରି ପ୍ରଚେଷ୍ଟାରେ ଓଡ଼ିଆ ଜାତିର ପ୍ରାଣରେ ନବଜାଗରଣ ଆସିଥିଲା । ଉତ୍କଳ ସମ୍ମିଳନୀର କାର୍ଯ୍ୟଦକ୍ଷତା ଓ କାର୍ଯ୍ୟ ପରିସର ବଢ଼ିବାକୁ ଲାଗିଲା । ଏପରିକି ଏହାର ଅନେକ ଶାଖା କେତେକ ଗଡ଼ଜାତ ରାଜ୍ୟରେ ସ୍ଥାପିତ ହେଲା । ସେହି ରାଜ୍ୟଗୁଡ଼ିକ ହେଲା ମୟୂରଭଞ୍ଜ, ଖରସୁଆଁ ଓ ତାଳଚେର । ପ୍ରଗତିକାମୀ ଆଭିମୁଖ୍ୟ ମିଶ୍ର ଗଡ଼ଜାତମାନ ବୁଲି ଉତ୍କଳ ସମ୍ମିଳନୀର ବାର୍ତ୍ତା ଓ ଆଭିମୁଖ୍ୟ ଲୋକମାନଙ୍କଠାରେ ପହଞ୍ଚାଇଥିଲେ । ଏହି ସମ୍ମିଳନୀର ଅଦମ୍ୟ ଚେଷ୍ଟା ଓ ଭାରତ ସରକାରଙ୍କର ସହାନୁଭୂତିର ପ୍ରଥମ ଫଳ ମିଳିଥିଲା ୧୯୦୫ ମସିହାରେ । ୧୯୦୪ ମସିହା ଜାନୁଆରୀ ମାସ ୪ ତାରିଖରେ ଛତିଶଗଡ଼ ଡିଭିଜନର କମିଶନର ଏଫ୍. ଏ. ଟି. ଫିଲିପ୍

ସମ୍ବଲପୁରର ଉପକମିଶନରଙ୍କ ପାଖକୁ ଚିଠି ଦ୍ୱାରା ଜଣାଇଲେ ଯେ ସମ୍ବଲପୁର ଓ ତତ୍‌ନିକଟବର୍ତ୍ତୀ ଗଡ଼ଜାତ ରାଜ୍ୟଗୁଡ଼ିକ ମଧ୍ୟପ୍ରଦେଶରୁ ବଙ୍ଗପ୍ରଦେଶକୁ ହସ୍ତାନ୍ତରିତ ହେବ । ତେଣୁ ଜନମତ ଲୋଡ଼ା । ଏହି ଜନମତ ଜାନୁଆରୀ ମାସ ୧୮ ତାରିଖ ସୁଦ୍ଧା ତାଙ୍କ ପାଖରେ ପହଞ୍ଚିବା ଆବଶ୍ୟକ । ତଦନୁଯାୟୀ ସମ୍ବଲପୁରର ଉପକମିଶନର ଜାନୁଆରୀ ୮ ତାରିଖରେ ନିମ୍ନଲିଖିତ ଆଦେଶନାମା ଜାରିକଲେ :

"ଆଦେଶ"

"ସମ୍ବଲପୁର ଜିଲ୍ଲା ଓ ଏହାର ପାର୍ଶ୍ୱବର୍ତ୍ତୀ କେତେକ ଦେଶୀୟ ରାଜ୍ୟ ବଙ୍ଗ ପ୍ରଦେଶରେ ମିଶ୍ରିତ ହେବା ବିଷୟରେ ଯେଉଁ ପ୍ରସ୍ତାବ ବର୍ତ୍ତମାନ ଭାରତ ଗଭର୍ଣ୍ଣମେଣ୍ଟଙ୍କ ବିଚାରାଧୀନରେ ଅଛି ତତ୍‌ସମ୍ବନ୍ଧେ ସମ୍ବଲପୁର ନିବାସୀଙ୍କ ଅଭିପ୍ରାୟ ନିର୍ଣ୍ଣୟ କରିବା ସକାଶେ ଆଗତ ରବିବାର ଦିନ ପ୍ରାତଃ ୮ ଘଣ୍ଟା ସମୟରେ ସମ୍ବଲପୁର ହାଇସ୍କୁଲରେ ଗୋଟିଏ ବଡ଼ ସଭା ହେବ । ନିମ୍ନ ଲିଖିତ ବ୍ୟକ୍ତିମାନେ ଆପଣା ଆପଣା ପଡ଼ାର ବ୍ୟକ୍ତିମାନଙ୍କୁ ସାଙ୍ଗରେ ଧରି ଉକ୍ତ ସଭାରେ ଉପସ୍ଥିତ ହେବେ ଓ ଅନ୍ୟାନ୍ୟ ଯେଉଁ ବ୍ୟକ୍ତିମାନେ ମଧ୍ୟ ଇଚ୍ଛା କରନ୍ତି ଉକ୍ତ ସଭାକୁ ସେମାନେ ମଧ୍ୟ ଆସିପାରନ୍ତି ।

"ତା ୮.୧.୧୯୦୪ For Deputy Commissioner

"ଶ୍ରୀମାନ୍ ବଳଭଦ୍ର ସୁପକାର, ବାସୁଦେବ ଗୁରୁ, ବେହାରି ଦାସମହନ୍ତ, ସୋମନାଥ ବାବୁ, ବ୍ରଜମୋହନ ପଟ୍ଟନାଏକ, ସିଦ୍ଧେଶ୍ୱର ପଟ୍ଟନାୟକ, ଜଗନ୍ନାଥ ବହିଦାର, ବେନିରାମ ସରାଫ, ଦାଶରଥି ପାଣିଗ୍ରାହୀ, ନନ୍ଦକିଶୋର, ବାଳମୁକୁନ୍ଦ ବହିଦାର, ମଦନମୋହନ ପୂଜାରୀ, ଚନ୍ଦ୍ରଶେଖର ବେହେରା, ଜଏନାରାୟଣ ମାରୱାଡ଼ି, ବୃନ୍ଦାବନ ମାରୱାଡ଼ି, ଚୁନିଲାଲ ମାରୱାଡ଼ି ।"

ସରକାରଙ୍କ ଆଦେଶାନୁଯାୟୀ ଜନସଭା ବସିଲା ଜାନୁଆରୀ ମାସ ୧୦ ତାରିଖ ସକାଳେ । ଚନ୍ଦ୍ରଶେଖର ବେହେରା ସଭାରେ ପ୍ରସ୍ତାବ ଆଗତ କରିଥିଲେ ଏବଂ ଏହାକୁ କରୁଣାକର ମିଶ୍ର ସମର୍ଥନ କରିଥିଲେ । ଶେଷରେ ସର୍ବସମ୍ମତିକ୍ରମେ ପ୍ରସ୍ତାବଟି ଗୃହୀତ ହୋଇଥିଲା । ୧୯୦୫ ମସିହା ଅକ୍ଟୋବର ମାସ ୧୬ ତାରିଖରେ ଭାରତ ସରକାରଙ୍କ ଘୋଷଣାନାମା ସର୍ବସାଧାରଣଙ୍କ ଗୋଚରାର୍ଥେ ପ୍ରକାଶିତ ହେଲା । ଏହି ଘୋଷଣାନାମା ଅନୁସାରେ ଚନ୍ଦ୍ରପୁର ଓ ପଦ୍ମପୁର ରାଜ୍ୟ ଏବଂ ଫୁଲଝର ଜମିଦାରୀ ବ୍ୟତୀତ ୩୮.୫୪ ବର୍ଗ ମାଇଲ ବିଶିଷ୍ଟ ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶର ଛତିଶଗଡ଼ ଡ଼ିଭିଜନରୁ ବାହାରି ଆସି ବଙ୍ଗପ୍ରଦେଶର ଓଡ଼ିଶା ଡ଼ିଭିଜନର ଅନ୍ତର୍ଭୁକ୍ତ ହେଲା ।

ଐତିହାସିକ, ଭୌଗୋଳିକ ଓ ରାଜନୈତିକ ଦୃଷ୍ଟିକୋଣରୁ ସମ୍ବଲପୁରର ଯେପରି ଖ୍ୟାତି, ପ୍ରାଧାନ୍ୟ ଓ ଆବଶ୍ୟକ ଥିଲା, ପାଟଣା ଗଡ଼ଜାତର ମଧ୍ୟ ସେହିପରି ଥିଲା । ତେଣୁ ସମ୍ବଲପୁର ଜିଲ୍ଲା ସହିତ ପାଟଣା ଓ ଅନ୍ୟ ଦେଶୀୟ ରାଜ୍ୟକୁ ବଙ୍ଗପ୍ରଦେଶ ଅନ୍ତର୍ଭୁକ୍ତ କରିବା ନିହାତି ଆବଶ୍ୟକ ପଡ଼ିଥିଲା । ଏ ବିଷୟରେ ୧୯୦୪ ମସିହା ଜାନୁଆରୀ ମାସରେ ପାଟଣା ମହାରାଜା ଦଳଗଞ୍ଜନ ସିଂହଙ୍କୁ ପଚରାଯିବାରେ ସେ ଯଦିଓ ମଧ୍ୟପ୍ରଦେଶରେ ରହିବାକୁ ପସନ୍ଦ କରୁଥିଲେ, ତଥାପି ପରିବର୍ତ୍ତିତ ପରିସ୍ଥିତିର ଚାପରେ ପଡ଼ି ତାଙ୍କର ପ୍ରଜାବର୍ଗଙ୍କର ମତାମତ ଲୋଡ଼ିଥିଲେ । ମହାରାଜାଙ୍କ ଆଦେଶାନୁଯାୟୀ ତାଙ୍କ ଦେବାନ ଆତ୍ମାରାମ ରାଜ୍ୟ ପ୍ରଧାନ ପ୍ରଧାନ ବ୍ୟକ୍ତି ଯଥା: ଗଉନ୍ତିଆ, ଉମରାଓ ଏବଂ ଖୁଆପିଦାରଙ୍କ ସହିତ ପରାମର୍ଶ କରି ସେମାନଙ୍କ ମତାମତ ଆଣିଥିଲେ । ଉକ୍ତ ମତାମତର କିୟଦଂଶ ନିମ୍ନରେ ପ୍ରଦତ୍ତ ହେଲା ।

"We like the idea of all Uriya speaking tracts being brought under one administration. Sambalpur Khalsa is the principal place of the Uriyas and we will cast our lot with it and go to Bengal..Bengal would perhaps suit us better, as in Cuttack there is Uriya... we cast in our lot with Sambalpur and do not much care which administration the neighbouring states of Kalahandi,Sonepur, Rehrakhol and Bamra choose".

ଦେବାନ ଆତ୍ମାରାମ ନିଜସ୍ୱ ମତଦେଇ କହିଥିଲେ ଯେ ରାଜ୍ୟର ପ୍ରଜାମାନେ ନିଜର ଅଜ୍ଞାନ ହେତୁ ସ୍ପଷ୍ଟ ମତାମତ ଜଣେଇବାରେ ସମର୍ଥ ହୋଇ ପାରି ନଥିବାରୁ ଉପରଲିଖିତ ସାରାଂଶ ମତରୁ ସେମାନଙ୍କର ମନର ଭାବନା ବୁଝାଯାଇ ପାରିବ । ପାଟଣା ରାଜ୍ୟ ଏହାପରେ ବଙ୍ଗପ୍ରଦେଶ ଅନ୍ତର୍ଭୁକ୍ତ ହେଲା । ଏହିକ୍ରମରେ କଳାହାଣ୍ଡି, ସୋନପୁର, ରେଢ଼ାଖୋଲ ଏବଂ ବାମଣ୍ଡା ରାଜ୍ୟଗୁଡ଼ିକ ସାମିଲ ହେଲା । ଅବଶ୍ୟ ବାମଣ୍ଡା ରାଜା ପ୍ରଥମେ ଏହାର ପର୍ଯ୍ୟାୟଭୁକ୍ତ ହେବାକୁ ବିରୋଧ କରୁଥିଲେ । ଦେଶ ମିଶ୍ରଣର ଏହାଥିଲା ପ୍ରଥମ ପର୍ଯ୍ୟାୟ ଏବଂ ପ୍ରାରମ୍ଭିକ ସ୍ରୋତ ଏବଂ ଏହି ସ୍ରୋତ ଗତିଶୀଳ ହୋଇ ରହିଲା । ଛୋଟନାଗପୁର ଡ଼ିଭିଜନରୁ ବଣେଇ ଓ ଗାଙ୍ଗପୁର ଦେଶୀୟ ରାଜ୍ୟ ଦୁଇଟି ବଙ୍ଗପ୍ରଦେଶ ଅନ୍ତର୍ଭୁକ୍ତ ହେଲେ । ଅବିଳମ୍ବେ ଷଢ଼େଇକଳା ଓ ଖରସୁଆଁ ରାଜ୍ୟଦ୍ୱୟ ମଧ୍ୟ ସାମିଲ ହେଲା । ଯାହାହେଉ ଲର୍ଡକର୍ଜନଙ୍କ ପ୍ରାଥମିକ ଚେଷ୍ଟା ଦ୍ୱାରା ଏହି ରାଜ୍ୟଗୁଡ଼ିକ ଓଡ଼ିଶା ଶାସନାଧୀନ ହେବା ଦ୍ୱାରା ଓଡ଼ିଶାର ଅନେକାଂଶରେ ଶ୍ରୀବୃଦ୍ଧି ହୋଇ ପାରିଥିଲା ।

ତଥାପି ସମଗ୍ର ଉତ୍କଳବାସୀ ଏବଂ ଉତ୍କଳଭାଷୀଙ୍କ ମନରେ ସେ ଯାବତ ଐକ୍ୟଭାବ ଉଦୟ ହୋଇ ନଥିଲା । ଉତ୍କଳ ସମ୍ମିଳନୀରେ ଯଦିଓ ତାଳଚେର, ମୟୂରଭଞ୍ଜ ଆଦି କତିପୟରାଜା ଓ ଅନ୍ୟ କେତେକ ଜମିଦାର ଯୋଗଦାନ କରି ଆସୁଥିଲେ, ଅଧିକାଂଶ ରାଜା, ଜମି ଦାର ଓ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କର ମିଳିତ ଚେଷ୍ଟାର ଅଭାବ ଏବଂ ଓଡ଼ିଶା ପ୍ରଦେଶର ଐକ୍ୟ ଓ ସଂଗତି ପାଇଁ ମମତା ନଥିବା ପରିଲକ୍ଷିତ ହେଉଥିଲା । ୧୯୧୨ ମସିହା ଅପ୍ରେଲ ମାସରେ ମଧୁସୂଦନ ଦାସ ଭାଷଣ ପ୍ରସଙ୍ଗରେ କହିଥିଲେ ଯେ ଗଡ଼ଜାତ ରାଜ୍ୟ ସମୂହ ଓଡ଼ିଶାର ପ୍ରଧାନ ଅଙ୍ଗ । କିନ୍ତୁ ଦୁଃଖର କଥା ଏହି ରାଜ୍ୟଗୁଡ଼ିକୁ ଇଂରେଜଶାସନାଧୀନ ଓଡ଼ିଶାରୁ ଅଲଗା କରାଯାଇଥିଲା ଅର୍ଥାତ୍ ଗଡ଼ଜାତ ରାଜ୍ୟଗୁଡ଼ିକ ଇଂରେଜ ଶାସନାଧୀନ ଭାରତର ପରିସର ବହିର୍ଭୁକ୍ତ । ଅନ୍ୟପକ୍ଷରେ ଗଡ଼ଜାତ ଅଞ୍ଚଳର ଲୋକେ ଉତ୍କଳ ସମ୍ମିଳନୀ ସମ୍ବନ୍ଧରେ ସଂପୂର୍ଣ୍ଣ ଅନଭିଜ୍ଞ । ସେମାନେ ଆତ୍ମନିର୍ଭରଶୀଳତା କ'ଣ ଜାଣୁ ନଥିଲେ । ସେମାନଙ୍କଠାରେ ଶିକ୍ଷାର ପ୍ରସାର ଅତି କ୍ଷୀଣ । ସେମାନେ ଉପେକ୍ଷିତ । ଗଡ଼ଜାତବାସୀଙ୍କୁ ଓଡ଼ିଆ ଜାତିର ଐକ୍ୟ ଓ ଦେଶର ସଂଗତି ବିଷୟରେ ବାରମ୍ବାର ସଚେତନ କରାଇବା ସର୍ବାଦୌ ବିଧେୟ । ଉତ୍କଳ ସମ୍ମିଳନୀ ଉପରୋକ୍ତ ଲକ୍ଷକୁ ଆଗରେ ରଖି ଦେଶ ମିଶ୍ରଣ ଆନ୍ଦୋଳନକୁ ୧୯୨୧ ମସିହା ପର୍ଯ୍ୟନ୍ତ ଚଳାଇ ଆସୁଥିଲା । ବାସ୍ତବିକ ଏହି ଆନ୍ଦୋଳନର ସୁବିଧା ଓ କ୍ରମବୃଦ୍ଧି ନିମନ୍ତେ ଉତ୍କଳ ସମ୍ମିଳନୀର ଜନ୍ମ ।

ପରବର୍ତ୍ତୀ ସମୟରେ ଭିନ୍ନ ଭିନ୍ନ ପରିସ୍ଥିତିରେ ଦେଶ ମିଶ୍ରଣ ଆନ୍ଦୋଳନର ରୂପରେଖ ବଦଳିଥିଲେ ହେଁ ଉଦ୍ଦେଶ୍ୟ ଏକ ହୋଇ ରହିଥିଲା । ନେତୃବୃନ୍ଦ ଅନୁଭବ କଲେ ଯେ ଉତ୍କଳ ଦେଶ ମିଶ୍ରଣ ନହେଲେ ତାହା ଭାରତର ଅନ୍ୟାନ୍ୟ ପ୍ରଦେଶ ମାନଙ୍କ ସହିତ ସମକକ୍ଷ ହୋଇଛିଡ଼ା ହେବା ଅସମ୍ଭବ । ସୁଖର କଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ସୀମା ନିର୍ଦ୍ଧେଶ କମିଟି ଗଠିତ ହେବା ପାଇଁ ସାଇମନ କମିଶନ ସୁପାରିଶ କଲେ । ଫିଲିପ୍ ଡଫ କମିଟି ନିଯୁକ୍ତ ହୋଇ ଗଞ୍ଜାମ ଅଞ୍ଚଳ ସମ୍ବନ୍ଧରେ ଯଥେଷ୍ଟ ଅନୁସନ୍ଧାନ କରି ଦେଶ ମିଶ୍ରଣ ସମ୍ବନ୍ଧରେ ରିପୋର୍ଟ ଦେଲେ । ଦେଶ ମିଶ୍ରଣରେ ଓଡ଼ିଶା ତିନିଦିଗରୁ ପ୍ରତିବନ୍ଧକ ରହିଥିଲା ।

ମାତ୍ରାର ପ୍ରଥମ ଓ ପ୍ରଧାନ ପ୍ରତିବନ୍ଧକ । ଉକ୍ତ ତିନି ପ୍ରଦେଶ ଅନ୍ତର୍ଗତ ଓଡ଼ିଆମାନେ ମୁଷ୍ଟିମେୟ । ସେମାନେ ଜାତୀୟତା ଓ ସ୍ୱାତନ୍ତ୍ର୍ୟ ରକ୍ଷା କରି ନ ପାରି ଅନ୍ୟ ଜାତିର ଅଧୀନରେ ମ୍ରିୟମାଣ ଥିଲେ । ବହୁକାଳ ବ୍ୟାପୀ ପରପଦାନତ ହେବା ଦ୍ୱାରା ଓଡ଼ିଶାର ବାହାରେଥିବା ଓଡ଼ିଆମାନେ ନିଜର ଜାତୀୟଜ୍ଞାନ ହରାଇ ଥିବାରୁ ସେମାନଙ୍କର ପୂର୍ବ ଗୌରବର ସ୍ମୃତି ଜାଗରଣ କରିବା ଆବଶ୍ୟକ ମନେ ହେଉଥିଲା । ସେହିପରି ଗଡ଼ଜାତ ରାଜ୍ୟଗୁଡ଼ିକ ଶାସନଗତ ପୃଥକ୍ ହେଲେ ମଧ୍ୟ ଯଦି ସମସ୍ତ ଉତ୍କଳଭାଷୀ ଅଞ୍ଚଳ ଏକତ୍ରିତ ହୋଇ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହୁଏ ତଦ୍ୱାରା ସମୂହ ଓଡ଼ିଆ ଜାତିର ମଙ୍ଗଳ ସାଧିତ ହୋଇ ପାରନ୍ତା ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସମ୍ବନ୍ଧରେ ୧୯୩୨ ମସିହା ଅପ୍ରେଲ ମାସ ୨୬ ତାରିଖରେ ସିମଳା ସମ୍ବାଦ ପ୍ରକାଶିତ ହେଲା । ପ୍ରସ୍ତାବିତ ଜୟପୁର, ଗଞ୍ଜାମ, ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର ଓ ଅନୁଗୁଳ ଆଦି ସାତଗୋଟି ଜିଲ୍ଲାରେ ବିଭକ୍ତ ହେବ ବୋଲି ଉକ୍ତ ସମ୍ବାଦରେ ଉଲ୍ଲେଖ ଥିଲା । ୧୯୩୩ ମସିହା ଫେବୃଆରୀ ମାସରେ ବିହାର ଓଡ଼ିଶାର ଲାଟ ସାର୍ ସିଫ୍ଟନ ସମ୍ବଲପୁର ଜିଲ୍ଲାବୋର୍ଡ ଏବଂ ମ୍ୟୁନିସିପାଲିଟି ତରଫରୁ ଅଭିନନ୍ଦନ ପତ୍ର ଗ୍ରହଣ କରି ଉତ୍ତରରେ କହିଥିଲେ ;

"ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେବ । ଭାରତର ଭବିଷ୍ୟତ ରାଷ୍ଟ୍ରସଂଘରେ ଓଡ଼ିଶା ଏକ ସ୍ୱତନ୍ତ୍ର ଅଙ୍ଗ ହୋଇ ରହିବ । କିନ୍ତୁ ଯେ ନୂଆ ପ୍ରଦେଶ ଗଢ଼ାଯିବ ସେଥିରେ ସୀମା ନିର୍ଦ୍ଦେଶ ହେଲା ବେଳେ ସ୍ଥାନୀୟ ଲୋକେ କେତେକ ପରିମାଣରେ ହତାଶ ହେବେ । କିନ୍ତୁ ଏଭଳି ଅବସ୍ଥାରେ ସମସ୍ତଙ୍କର ମନ ମାନିବା ପରି କାର୍ଯ୍ୟ କରାଯାଇ ନପାରେ ମାତ୍ର ତୁମମାନଙ୍କର ଏତିକି ସନ୍ତୋଷ ହୋଇପାରେ ଯେ ଯେଉଁ ସବୁ ଅଞ୍ଚଳରେ ଓଡ଼ିଆମାନେ ବିଶେଷ ପରିମାଣରେ ଅଛନ୍ତି ସେହି ଅଞ୍ଚଳଗୁଡ଼ିକ ବର୍ତ୍ତମାନ ଓଡ଼ିଶା ଡିଭିଜନର ଜିଲ୍ଲାମାନଙ୍କ ସହିତ ମିଶିବ ।"

ଏହା ଏକ ମର୍ମନ୍ତୁଦ ଘଟଣା । ଓଡ଼ିଆଜାତିର ହୃଦୟରେ ଏକ ବିରାଟ କୁଠାରଘାତ ସଦୃଶ । ତେଣୁ ଓଡ଼ିଆ ଜାତି ଯଦି ସଭ୍ୟ ଜଗତରେ ମୁଣ୍ଡ ଟେକିବାକୁ ଚାହେଁ ତେବେ ପ୍ରବଳ ଆନ୍ଦୋଳନ କରିବା ଦରକାର । ଗ୍ରାମେ ଗ୍ରାମେ ବୁଲି ଦେଶ ମିଶ୍ରଣ ବିଷୟରେ ଲୋକମତ ଗଠନ କରିବାକୁ ହେବ । ସମ୍ମିଳନୀକୁ ଗୋଟିଏ ଜୀବନ୍ତ କାର୍ଯ୍ୟକାରୀ ଅନୁଷ୍ଠାନରେ ପରିଣତ ନକଲେ ଭବିଷ୍ୟତ ଅନ୍ଧକାର ହୋଇଯିବ ବୋଲି କେତେକ ବ୍ୟକ୍ତିଙ୍କର ମତ । ସହଯୋଗୀ, ଅସହଯୋଗୀ ନିର୍ବିଶେଷରେ ସମସ୍ତେ ଏହି କାର୍ଯ୍ୟରେ ମନ ପ୍ରାଣ ଢାଳି କାର୍ଯ୍ୟ କରି ଓଡ଼ିଆ ଜାତିର ଆଶା ଆକାଂକ୍ଷା ପୂରଣ କରିବା ବାଞ୍ଛନୀୟ ।

୧୯୩୩ ମସିହା ମାର୍ଚ୍ଚ ମାସରେ ସ୍ୱତନ୍ତ୍ର ପ୍ରଦେଶ ନେଇ ଏକ ଧବଳ ପତ୍ରର ଘୋଷଣା କରାଗଲା । ଏହି ଘୋଷଣା ନାମାରେ ଓଡ଼ିଶାର ନୂତନ ସୀମା ନିର୍ଦ୍ଧାରଣ କରାଯାଇଥିଲା । ଓଡ଼ିଶା ବିଭାଗରେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଅନୁଗୁଳ ଜିଲ୍ଲା; ମଧ୍ୟପ୍ରଦେଶରୁ ଖଡ଼ିଆଳ ଜମିଦାରୀ ଓ ପଦ୍ମପୁର ଷ୍ଟେଟ; ପାରଳାଖେମୁଣ୍ଡିର ମାଳାଂଶ ଓ ଜଳନ୍ତର ମାଳାଂଶ ବ୍ୟତୀତ ଗଞ୍ଜାମ ଏଜେନ୍ସିର ଅନ୍ୟାନ୍ୟ ଅଞ୍ଚଳ । ଗଞ୍ଜାମ ଜିଲ୍ଲାର ଘୁମୁସର (ରସୁଲକୁଣ୍ଡା), ଆସିକା, ସୁରଡା, କୋଦଳା, ଛତ୍ରପୁର, ଇଚ୍ଛାପୁର, ବ୍ରହ୍ମପୁର ତାଲୁକମାନ ଅନ୍ତର୍ଭୁକ୍ତ ହେଲା । ସମୁଦାୟ ୬ଟି ଜିଲ୍ଲାର କ୍ଷେତ୍ରଫଳ ୨୦ ହଜାର ବର୍ଗମାଇଲ ଓ ଲୋକସଂଖ୍ୟା ୬୭ ଲକ୍ଷ । କିନ୍ତୁ ଏହି ନୂତନ ସୀମା ନିର୍ଦ୍ଦେଶରେ ଗଡ଼ଜାତ ରାଜ୍ୟଗୁଡ଼ିକ ସାମିଲ ନଥିଲା । ସୁତରାଂ ଉକ୍ତ ସରକାରୀ ଘୋଷଣା ନାମା ସୃଷ୍ଟିଆଡେ ଅଶାନ୍ତି ଓ ବିଶୃଙ୍ଖଳା ସୃଷ୍ଟି କରିଥିଲା । ୧୯୩୩ ମସିହା ଅପ୍ରେଲ ମାସ ପହିଲାଠାରୁ ଓଡ଼ିଶା ସହିତ ଗଡ଼ଜାତମାନଙ୍କର ସମ୍ପର୍କ ସମ୍ପୂର୍ଣ୍ଣ ରୂପେ ତୁଟିଗଲା । ଖଣ୍ଡ ବିଖଣ୍ଡିତ ଉତ୍କଳକୁ ଏକତ୍ର କରିବା ଆଶା ନିରାଶାରେ ପରିଣତ ହେଲା । ପ୍ରାଦେଶିକ ଶାସନତନ୍ତ୍ରରୁ ଓଡ଼ିଶା ଗଡ଼ଜାତକୁ କୃତ୍ରିମ ଭାବରେ ପୃଥକ କରିବା ଦ୍ୱାରା ସରକାର ଭବିଷ୍ୟତ ଓଡ଼ିଶା ପ୍ରଦେଶର ଉନ୍ନତି ପଥକୁ ସଂକୀର୍ଣ୍ଣ କରିଦେଲେ । ତଥାପି ଉତ୍କଳବାସୀ ଓ ଉତ୍କଳଭାଷୀ ବୋଲି ଗଡ଼ଜାତଙ୍କ ମୋଗଲ ବନ୍ଦିଆଙ୍କ ମଧ୍ୟରେ ନୈସର୍ଗିକ ବନ୍ଧନ ଏବଂ ଆକର୍ଷଣ କ୍ଷୁଣ୍ଣ ହେବା ଅସମ୍ଭବ ।

ଓଡ଼ିଶା ପ୍ରଦେଶ ସୀମା ନେଇ ଏକ ସ୍ୱତନ୍ତ୍ର କମିଟି ଗଠିତ ହେଲା । ନୂତନ ଓଡ଼ିଶା ପ୍ରଦେଶର ଆୟତନ ହେଲା ପ୍ରାୟ ୩୩ ହଜାର ବର୍ଗ ମାଇଲ ଏବଂ ଜନସଂଖ୍ୟା ପ୍ରାୟ ଏକାଅଶି ଲକ୍ଷ । ଫଳାଫଳରୁ ଜଣାଗଲା ଯେ ଓଡ଼ିଶାର ଗଡ଼ଜାତକୁ ଏହାର ଅନ୍ତର୍ଭୁକ୍ତ କରାଗଲା ନାହିଁ । ଓଡ଼ିଆ ଜାତିର ଦାବୀ ମଧ୍ୟରୁ ପ୍ରାୟ ଦଶହଜାର ବର୍ଗମାଇଲ ଓ ୩୧ ଲକ୍ଷ ଲୋକ ଓଡ଼ିଶା ପ୍ରଦେଶର ବାହାରେ ରହିଲେ । ମୋଟରେ ଶତକଡ଼ା ୨୪ ବର୍ଗମାଇଲ ଓ ଶତକଡ଼ା ୨୮ ଜଣ ଓଡ଼ିଶାକୁ ଆସିଲା ନାହିଁ । ତେବେ ଯେ ଯାହା ହେଉ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ସୁନିଶ୍ଚିତ ହୋଇଗଲା । କିନ୍ତୁ ଉତ୍କଳୀୟଙ୍କ ମନରେ ଆଶଙ୍କା ବଢ଼ିଲା । ପ୍ରଧାନ ଆଶଙ୍କା ଅର୍ଥାଭାବ । ଓଡ଼ିଶାର ଭବିଷ୍ୟତ ବିଷୟରେ 'ସତ୍ୟ ସମାଚାର' ୧୯୩୪ ମସିହା ଅଗଷ୍ଟ ମାସ ୨୨ ତାରିଖରେ ନିମ୍ନୋକ୍ତ ମତ ଦେଇଥିଲେ;

> "ଯେଉଁ ପ୍ରଦେଶରେ ବନ୍ୟା ଅନିବାର୍ଯ୍ୟ, କୃଷିରୁ ଉତ୍ପନ୍ନ ଅନିଶ୍ଚିତ, ଲୋକେ ଦରିଦ୍ର, ଶିଳ୍ପକାର୍ଯ୍ୟ ନାହିଁ, କଳକାରଖାନା ନାହିଁ, କୋଠାବାଡ଼ି ମରାମତି ପାଇଁ ଅର୍ଥାଭାବ, ଶିକ୍ଷିତ ଯୁବକମାନେ ଚାକିରି ପାଇବା ଦୁଷ୍କର, ଜଣେ ପେନ୍‌ସନ୍ ନ ନେଲେ ବା ନମଲେ ଆଉ ଜଣେ ଚାକିରି ପାଇବା ସମ୍ଭବ ହେବ ନାହିଁ.... । ଶିକ୍ଷିତ ନିଷ୍କର୍ମା ଲୋକଙ୍କ ସଂଖ୍ୟା ଆହୁରି ବଢ଼ିବ । ଅଶାନ୍ତିର ସୃଷ୍ଟି ହେବ । ମୋଟରେ ଭାବିବାକୁ ଗଲେ ସ୍ୱତନ୍ତ୍ର ପ୍ରଦେଶ ଦ୍ୱାରା ଓଡ଼ିଆ ଜାତିର ମୁହଁଟାଣ ବଢ଼ିପାରେ, କିନ୍ତୁ ଲାଭ ବଢ଼ିବ ନାହିଁ । ଅସ୍ୱଚ୍ଛଳ ଅବସ୍ଥାରେ ଅତି କଷ୍ଟରେ ଏ ପ୍ରଦେଶ ଦିନ କାଟିବ ।"

କିନ୍ତୁ ସୁଖର କଥା ସମୟ ରଥ ଚକରେ ଓଡ଼ିଶା ଭାଗ୍ୟରେ ବହୁ ପରିବର୍ତ୍ତନ ଏବଂ ଓଡ଼ିଆ ଜାତିର ବହୁବିଧ ଉନ୍ନତି ହୋଇ ପାରିଛି । ଓଡ଼ିଆ ଜାତି ଆଶାବାଦୀ । ତା ମନରେ ଆଉ ପୂର୍ବର ନୈରାଶ୍ୟ ବା ଆଶଙ୍କା ନାହିଁ ।

ଇତିହାସ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର ।

ଓଡ଼ିଆ ଜାତିକୁ ତା'ର ନିଜତ୍ ଓ ନିଜସ୍ୱରେ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଭାରତରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିବାକୁ ହେବ । ଏହି ସ୍ଥାନ ଲାଭ ପାଇଁ ପ୍ରକୃତି ଓଡ଼ିଶାକୁ ସମସ୍ତ ଐଶ୍ୱର୍ଯ୍ୟରେ ମଣ୍ଡିତ କରିଛି । ଓଡ଼ିଶାର ବିପୁଳ ପ୍ରାକୃତିକ ସଂପଦ ପୃଥିବୀର ଖୁବ୍ କମ୍ ଅଞ୍ଚଳରେ ଅଛି । କେବଳ ସୋଭିଏତ ୟୁନିୟନର ୟୁକ୍ରେନ ଓ ଜର୍ମାନୀର ରାଇନ୍‌ଲାଣ୍ଡ ଏହା ସହିତ ତୁଳନୀୟ ହୋଇ ପାରେ। ଏହି ପ୍ରାକୃତିକ ଐଶ୍ୱର୍ଯ୍ୟର ବିକାଶ ଉପରେ ଓଡ଼ିଶାର ଭବିଷ୍ୟତ ନିର୍ଭର କରୁଛି ।

ଜାନକୀ ବଲ୍ଲଭ ପଟ୍ଟନାୟକ

# ସାର୍ଥକ ସ୍ୱପ୍ନ

## ସାଇକେଲ ମରାମତି ଦୋକାନ

କାମାକ୍ଷାନଗରଠାରୁ ୨୫ କି. ମି. ଦୂର ପର୍ଜଙ୍ଗ ବ୍ଲକ୍‌ର ବୃନ୍ଦାବନପୁର ଗାଁ । ସେଇ ଗାଁରେ ଗୋଟିଏ ଗରିବ ପରିବାରରେ ନିରାକାର ଦାସର ଜନ୍ମ । ବାପା, ମା, ଭାଇ, ଭଉଣୀ ଓ ପୁଅ ଝିଅଙ୍କୁ ମିଶାଇ ୧୫ ଜଣ ପରିବାର । ବାପା ତହସିଲ ଅଫିସରେ ପିଅନ କାମ କରୁଥିଲେ ଓ ନିଜର ଯାହା ଅଳ୍ପ ଜମି ଥିଲା ତାକୁ ଚାଷ କରି ପରିବାର ଚଳାଇବା ଭାରି କଷ୍ଟ ହେଉଥିଲା । ସମ୍ବଳ ଅଭାବରୁ ଭୋକ ଉପାସରେ ସମୟ କାଟୁଥିଲେ ସେମାନେ । ପିଲାଙ୍କ ପାଠ ପଢ଼ା କଥା ଚିନ୍ତା କରୁଛି କିଏ ? ସରକାରଙ୍କର ଆଇ. ଆର. ଡି. ପି. ଯୋଜନାରେ ପର୍ଜଙ୍ଗ ବି. ଡି. ଓ. ୧୯୮୨-୮୩ ମସିହାରେ ସାମିଲ କଲେ । ସେ ବ୍ୟାଙ୍କରୁ ଟ ୩୦୦୦ ଙ୍କା ଋଣ ପାଇ ଗୋଟିଏ ସାଇକେଲ ମରାମତି ଦୋକାନ ଖୋଲିଲେ । ବର୍ତ୍ତମାନ ସେ ସାଇକେଲ ମରାମତି କରି ଭଲ ଦି ପଇସା ରୋଜଗାର କରୁଛନ୍ତି । ଏବେ ଆଉ ଜଣେ ଲୋକକୁ ମଧ୍ୟ କାମରେ ଲଗାଇଛନ୍ତି । ସାଇକେଲ ମରାମତି ସାଙ୍ଗକୁ ୧୨ଟି ସାଇକେଲ କିଣି ଭଡ଼ାକୁ ଲଗାଇଛନ୍ତି । ପ୍ରାୟ ଦୁଇ ତିନି ହଜାର ଟଙ୍କାର ସାଇକେଲ ପାର୍ଟସ ଦୋକାନରେ ଅଛି । ଶ୍ରୀ ଦାସ କହନ୍ତି—ସମୟ ଥିଲା ଆମେ ଦୁଇବେଳା ଗଣ୍ଡିଏ ପେଟ ପୁରାଇ ଖାଇବାକୁ ପାଉନଥିଲୁ । କିନ୍ତୁ ସାଇକେଲ ମରାମତି ଦୋକାନ କରି ସାନ ଭାଇଟିକୁ ଆଇ. ଏ. ପଢ଼ାଇବା ପରେ ଆଇ. ଟି. ଆଇ. ପଢ଼ାଇ ପାରିଲି । ଦୁଇଟି ସାନ ଭଉଣୀକୁ ରୁଚି ଅନୁଯାୟୀ ବିବାହ କରାଇଲି । ବାପା ୧୯୮୬ରେ ମଲେ । ତାଙ୍କର ଶୁଦ୍ଧିକ୍ରିୟା ଆଡ଼ମ୍ବର ସହକାରେ କରିପାରିଲୁ । ଏସବୁ ସତ୍ତ୍ୱେ ୧୯୮୭ରେ ୨୦୦୦ ଟଙ୍କାର ଜମି କିଣି ପାରିଛୁ । ପରିବାରର ସମସ୍ତେ ଦୁଇବେଳା ଭଲରେ ଗଣ୍ଡିଏ ଖାଇବାକୁ ପାଉଛନ୍ତି । ପିଲାମାନେ ସ୍କୁଲରେ ପାଠ ପଢୁଛନ୍ତି । ଏବର୍ଷ ଘରଟିଏ ତୋଳିବା ପାଇଁ ଇଚ୍ଛା କରିଛୁ । ଏସବୁ କେବଳ ସମ୍ଭବ ହୋଇ ପାରିଛି ଏହି ସାଇକେଲ ମରାମତି ଦୋକାନର ଆୟରୁ ।

କରୁଣାକର ବିଶ୍ୱାଳ

## ବାଲି ଶାସମଲ ମୁହଁରେ ହସ

କାମାକ୍ଷାନଗର ସବଡିଭିଜନ ଅନ୍ତର୍ଗତ ପର୍ଜଙ୍ଗ ବ୍ଲକର ଅନତି ଦୂରରେ ଡିହଡୋଳ ଗ୍ରାମଟି ଅବସ୍ଥିତ । ଏଇ ଗାଁରେ କୁମାରୀ ବାଲି ଶାସମଲର ଜନ୍ମ । ବୟସ ୩୫ରୁ ଊର୍ଦ୍ଧ୍ୱ ହେବ । ଜନ୍ମ ସମୟରୁ ଗୋଡ଼ ଦୁଇଟି ତାର ଛୋଟା । ହାତ ସାହାଯ୍ୟରେ ଯା, ଆସ କରେ । ଗରିବ ପରିବାରରେ ଜନ୍ମ ହୋଇ ବିଚାରି ବାପା, ମା, ଭାଇ, ଭାଉଜଙ୍କ ସାଙ୍ଗରେ ଦୁଃଖରେ ସମୟ କାଟେ । ବାପା ମାଙ୍କର ମୃତ୍ୟୁ ପରେ ପରିସ୍ଥିତିର ଚାପରେ ଘର ଛାଡ଼ିବାକୁ ବାଧ୍ୟ ହେଲା ଜୀବନ ତାର ହେଲା ଦୁଃଖମୟ । ଅବିବାହିତ । "ବାଲିର" ବଞ୍ଚିବାର ଆଶା କ୍ଷୀଣ ହୋଇ ଆସିଲା । ସେ ହେଲା ଦାଣ୍ଡର ଭିକାରୁଣୀ । ଚାଲିବାର ଶକ୍ତି ନଥିବାରୁ ଭିକ ମାଗି ଚଳିବା ମଧ୍ୟ ସମ୍ଭବ ହେଲା ନାହିଁ । ବଞ୍ଚିବାର ମମତା ତା'ର ଅସୀମ । ଗାଁ ଲୋକମାନଙ୍କର କାମକରି ବେଳାଏ ଖାଇ ବେଳାଏ ଉପାସ ରହି ପର ପିଣ୍ଡାରେ ମୁଣ୍ଡ ଗୁଞ୍ଜି ସମୟ କଟାଇଲା । ଲଜ୍ଜା ନିବାରଣ ପାଇଁ ପୁରୁଣା ଚିରା ଲୁଗା ଥିଲା ତା ପାଇଁ ଦୁର୍ମୂଲ୍ୟ । କିନ୍ତୁ କେତେ ଦିନ ଆଉ ଭୋକ ଉପାସରେ ବଞ୍ଚି ରହିବ । ଶେଷରେ ଚିନ୍ତା କଲା ଜୀବନ ହରାଇ ଦେବା ପାଇଁ । କିନ୍ତୁ ପାରିଲା ନାହିଁ । ଦୁଃଖ କଷ୍ଟରେ ସମୟ କଟାଉ ଥାଏ ବାଲି । ସେ ଶୁଣିବାକୁ ପାଇଲା ଦରିଦ୍ର ଓ ଅସହାୟମାନଙ୍କୁ ଅଭ୍ୟୁଥାନ ପାଇଁ ସରକାର ଋଣ ଦେଉଛନ୍ତି । ସେ ପର୍ଜଙ୍ଗ ବି. ଡି. ଓ. ଙ୍କୁ ଋଣ ପାଇଁ ଆବେଦନ କଲା । ବି. ଡି. ଓ. ଙ୍କ ସୁପାରିଶକ୍ରମେ ତାକୁ ମାସିକ ଅକର୍ମଣ୍ୟ ଭତ୍ତା ଟ ୪୦ଙ୍କା ମିଳିଲା । ଯାହା ହେଉ ବିଚାରୀ ନିଶ୍ୱାସ ମାରିଲା । ବି. ଡି. ଓ. ବାଲି ଶାସମଲକୁ ଆଇ. ଆର. ଡି. ପି. ରେ ଅନ୍ତର୍ଭୁକ୍ତ କଲେ ଓ କ୍ଷୁଦ୍ର ଦୋକାନ ପାଇଁ ତାକୁ ବ୍ୟାଙ୍କ ଜରିଆରେ ଟ ୨୦୦୦ ଋଣ ମିଳିଲା । ସେ ଋଣ ଆଣି ଡିହଡୋଳ ଛକରେ ଗୋଟିଏ ଜଳଖିଆ ଦୋକାନ କରି ଭଲରେ ଚଳୁଛି । କୁମାରୀ ବାଲି ଶାସମଲ କହନ୍ତି—ବଞ୍ଚିବାର ଆଶା କ୍ଷୀଣ ହେଲାବେଳେ ସରକାରଙ୍କର ଅକର୍ମଣ୍ୟ ଭତ୍ତା ଓ ଋଣ ପାଇ ମୁଁ ଆଜି ସମାଜରେ ବଞ୍ଚି

ଲଢ଼ିବାର ସୁଯୋଗ ପାଉଛି । ମୋ ଭଳି ଅକର୍ମଣ୍ୟ ଆଉ କଣ କରିପାରନ୍ତା ! ଯାହାହେଉ ଦୋକାନ କରି ଦୁଇବେଳା ଗଣ୍ଡିଏ ଖାଇ ଖଣ୍ଡିଏ ପିନ୍ଧି ଜୀବନ ଅତିବାହିତ କରୁଛି । ନିଜର ଯା, ଅସ କରିବାର ଶକ୍ତି ନଥିବାରୁ ଗୋଟିଏ ଗରିବ ଝିଅଟିକୁ କାମ ଓ ବୋଲ ହାକ କରିବା ପାଇଁ ପାଖରେ ରଖିଛି । ଋଣ ମାସକୁ ମାସ ଶୁଝିବା ସଙ୍ଗେସଙ୍ଗେ ପାଖରେ କିଛି ଟଙ୍କା ରଖି ପାରିଛି । ମୁଁ ବର୍ତ୍ତମାନ ନିଜକୁ ଅସହାୟ ମଣୁନାହିଁ । ଜୀବନର ପରିପୂର୍ଣ୍ଣ ବଞ୍ଚୟ ମଧ୍ୟରେ ହସ ହସ ମୁହଁରେ ସେ ପ୍ରକାଶ କରୁଥିଲା ।

କରୁଣାକର ବିଶ୍ୱାଳ

---

## ପୁରୁଣୀପାଣି ଗାଁର ଧନୀରାମ

ଶ୍ରୀ ଧନୀରାମ ମହାନ୍ତ ମୟୂରଭଞ୍ଜ ଜିଲ୍ଲା ତିରିଂ ବ୍ଳକ ଅନ୍ତର୍ଗତ ପୁରୁଣୀପାଣି ଗ୍ରାମର ଜଣେ ଗରିବ ସ୍ଥାୟୀ ବାସିନ୍ଦା ପାଞ୍ଚ ଜଣଙ୍କୁ ନେଇ ତାଙ୍କର ପରିବାର । ଚାଷଜମି ମାତ୍ର ୫୦ ଡେସିମିଲ୍ । ଏହି ଜମିରୁ ଯାହା ଆୟ କରନ୍ତି, ତାଙ୍କ ପରିବାର ପକ୍ଷେ ଯଥେଷ୍ଟ ନଥିଲା । ଏହା ହିଁ ଥିଲା ତାଙ୍କର ଆୟ ପନ୍ଥା । ତା ଛଡ଼ା ଲୋକଙ୍କ ଘରେ ତାଙ୍କ ସ୍ତ୍ରୀଙ୍କ ସହିତ ମୂଲ ଲାଗି ଦୁଃଖକଷ୍ଟରେ ଜୀବନ ଅତିବାହିତ କରୁଥିଲେ । ଚାଷ ସମୟ ବ୍ୟତୀତ ଅନ୍ୟ ସମୟରେ ସେ ବେକାର ହୋଇ ବସୁଥିଲେ । ଏଣୁ, ଏହି ବେକାର ସମୟକୁ ବିନିଯୋଗ କରି ଆୟର ପନ୍ଥା ଅନ୍ୱେଷଣ କରୁଥିଲେ । କିନ୍ତୁ ଅର୍ଥାଭାବରୁ ସେ କୌଣସି ନୂତନ ପନ୍ଥା ଦିଗରେ ଅଗ୍ରସର ହୋଇପାରୁ ନଥିଲେ । ତଥାପି ଅଳ୍ପ କିଛି ପୁଞ୍ଜି ଖଟାଇ ସେ ଚୁଡ଼ା ବିକାଳୀ ଭାବେ ବ୍ୟବସାୟ ଆରମ୍ଭ କଲେ । ଏଥିରୁ ମଧ୍ୟ ସେ ବେଶୀ ଆୟ କରି ପାରିଲେ ନାହିଁ । ପୁଣି ପନିପରିବା ବ୍ୟବସାୟ ଆରମ୍ଭ କଲେ । ଏଥିରେ ମଧ୍ୟ ସେ ଏହି ଛୋଟ ପରିବାରକୁ ଚଳାଇବାକୁ ସକ୍ଷମ ହୋଇପାରିଲେ ନାହିଁ । ଦିନକୁ ଦିନ ପରିବାର ଖର୍ଚ୍ଚ ବଢ଼ିବାକୁ ଲାଗିଲା । ଫଳରେ ସେ ସବୁବେଳେ ଚିନ୍ତିତ ରହିଲେ । ଠିକ୍ ଏହି ସମୟରେ ଅର୍ଥାତ୍ ୩-୯-୮୫ ତାରିଖରେ ତାଙ୍କ ଗ୍ରାମରେ ଋଣଗ୍ରହୀତାମାନଙ୍କୁ ଚିହ୍ନଟ କରିବା ପାଇଁ ଜଣେ ଗ୍ରାମସେବକ ଓ ଜଣେ ସଂପ୍ରସାରଣ ଅଧିକାରୀଙ୍କ ଉପସ୍ଥିତିରେ ଗ୍ରାମ୍ୟ ସଭା କରାଗଲା । ଏଥିରେ ବିଭିନ୍ନ ଋଣର ସୁବିଧା ସଂପର୍କରେ ଆଲୋଚନା କରାଗଲା । ପରେ ଗାଁର ଅନ୍ୟାନ୍ୟ ଲୋକଙ୍କ ସହିତ ଶ୍ରୀ ଧନୀରାମ ମହାନ୍ତଙ୍କୁ ମଧ୍ୟ ଚିହ୍ନଟ କରାଯାଇଥିଲା । ତାଙ୍କର ନାମ ପଞ୍ଚାୟତ ସମିତି ବୈଠକରେ ଅନୁମୋଦିତ ହେବା ପରେ ଋଣ ଦରଖାସ୍ତ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ, ନୂଆଗାଁ ଶାଖାକୁ ପଠାଗଲା । ତାଙ୍କ ନାମରେ ୧୯-୪-୮୬ ତାରିଖରେ ଡେଙ୍କରାତି ଦୋକାନ ପାଇଁ ୩,୬୦୦ ଟଙ୍କାର ଋଣ ମଞ୍ଜୁର ହେଲା ଏବଂ ତାଙ୍କୁ ବ୍ୟାଙ୍କ୍ ତରଫରୁ ସବୁ ଟଙ୍କାର ଜିନିଷ କିଣି ଦିଆଯାଇଥିଲା । ମିଳିଥିବା ଜିନିଷକୁ ଘରକୁ ନେଇ ବିକିବାକୁ ଆରମ୍ଭ କଲେ । କିଛିଦିନ ପରେ ଘର ସମ୍ମୁଖରେ ଦାଣ୍ଡକୁ ଲାଗି ଗୋଟିଏ ଦୋକାନ ଘର ତିଆରି କଲେ । ହାଟରେ ମଧ୍ୟ ସଉଦା ବିକିବାକୁ ଲାଗିଲେ । ସମୁଦାୟ ଋଣରୁ ୧,୨୦୦ ଟଙ୍କା ସରକାରଙ୍କଠାରୁ ଛାଡ଼ ବାବଦକୁ ତାଙ୍କୁ ଦିଆଯାଇଥିଲା । ବର୍ତ୍ତମାନ ତାଙ୍କର ଦୋକାନ ଖୁବ୍ ଭଲ ଚାଲିଛି । ତାଙ୍କର ବାର୍ଷିକ ଆୟ ୫,୮୦୦ ଟଙ୍କାକୁ ବଢ଼ିଯାଇଛି । ତାଙ୍କ ସ୍ତ୍ରୀ ମଧ୍ୟ ଧାନ କିଣି ସଫାକରି ଚାଉଳ ବିକ୍ରୀ କରିବା ପାଇଁ ଟାଟାକୁ ନେଉଛନ୍ତି ଏବଂ ଏଥିରୁ ଯଥେଷ୍ଟ ରୋଜଗାର କରୁଛନ୍ତି । ଏହା ବ୍ୟତୀତ ବାଡ଼ି ବଗିଚାରେ ପରିବା ଚାଷ କରି ରୋଜଗାରକୁ ଦ୍ରୁତଗତିରେ ବଢ଼ାଇ ପାରିଛନ୍ତି । ନିଜର ଚାଷଜମି ନଥିବାରୁ ପ୍ରତିବର୍ଷ ସଂଜାଜମି ନେଇ ଏଥିରୁ ମଧ୍ୟ ଯଥେଷ୍ଟ ଆୟ କରୁଛନ୍ତି ଏବଂ ପୁଅକୁ କଲେଜରେ ପାଠ ପଢ଼ାଉଛନ୍ତି । ବର୍ତ୍ତମାନ ସୁଦ୍ଧା ସେ ବ୍ୟାଙ୍କ୍ ଋଣ ସବୁ ଶୁଝି ସାରିଲେଣି । ଏହିପରି ଭାବରେ ତାଙ୍କର ପରିବାର ଖୁବ୍ ଭଲରେ ଚଳୁଛନ୍ତି ।

ବର୍ତ୍ତମାନ ଶ୍ରୀ ଧନୀରାମ ମହାନ୍ତଙ୍କ ବାସଗୃହର ଅବସ୍ଥା ଭଲ ଅଛି । ଆଇ. ଆର. ଡ଼ି. ଯୋଜନାର ପରିସରଭୁକ୍ତ ହେବା ପୂର୍ବରୁ ତାଙ୍କର ବାର୍ଷିକ ଆୟ ମାତ୍ର ୨,୧୦୦ ଟଙ୍କା ଥିଲା । ସେ ବ୍ୟାଙ୍କ୍ ଋଣ ପରିଶୋଧ କରି ସାରିଲେଣି । ଋଣ ଟଙ୍କାର ସଦ୍‌ବିନିଯୋଗ କରି ଉନ୍ନତି ପଥରେ ଅଗ୍ରସର ହୋଇଥିବାରୁ ପଡ଼ୋଶୀଙ୍କ ଦ୍ୱାରା ସେ ପ୍ରଶଂସିତ ହେଉଛନ୍ତି । ବର୍ତ୍ତମାନ ତାଙ୍କର ପରିବାର୍ ପାଇଁ ଆୟ ଯଥେଷ୍ଟ ହେଲେ ମଧ୍ୟ ପୁଅର କଲେଜ ପଢ଼ାଖର୍ଚ୍ଚ ଅଧିକ ହେଉଥିବାରୁ ଆଉକିଛି ଧନ୍ଦା କରିବା ଲାଗି ଅନ୍ୟଏକ ଋଣ ନେବାକୁ ଧନୀରାମ ଚାହୁଁଛନ୍ତି । ତାଙ୍କର ମାସିକ ଖର୍ଚ୍ଚ ପ୍ରାୟ ୪୮୦ ଟଙ୍କା ଏବଂ ସେ ଦାରିଦ୍ର୍ୟ ସୀମାରେଖା ଅତିକ୍ରମ କରିଯାଇଛନ୍ତି ।

---

## ମାଛଚାଷ ପୁଷ୍ଟମାସ

ମୟୂରଭଞ୍ଜ ଜିଲ୍ଲା ଶୁଳିଆପଦା ବ୍ଲକ୍ ଅନ୍ତର୍ଗତ ସିଙ୍ଗଡା ଗ୍ରାମର ଶ୍ରୀ ରାଜେନ୍ଦ୍ର ବେହେରା ଓ ଶ୍ରୀ ସୁରେନ୍ଦ୍ର ନାୟକଙ୍କୁ ୧୯୮୩–୮୪ ବର୍ଷରେ ଇ:ଆର:ଆର:ପି:ର ଏ୧-୨୫ ଡ଼ିସିମିଲ ବିଶିଷ୍ଟ ପୋଖରୀ ୧୦ ବର୍ଷ ପାଇଁ ପଟ୍ଟା ଦିଆଯାଇ ମାଛଚାଷ ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଥିଲା । ଏହି ଯୋଜନାରେ ଅନ୍ତର୍ଭୁକ୍ତ ହେବା ପୂର୍ବରୁ ସେମାନଙ୍କର ବାର୍ଷିକ ଆୟ ଯଥାକ୍ରମେ ଏକ ହଜାର ଟଙ୍କା ଓ ୮୦୦ ଟଙ୍କା ଥିଲା । ଏହି ଯୋଜନାରୁ ମାଛ ବିକ୍ରୟ କରି ସେମାନେ ୧୯୮୩–୮୪ ମସିହାରେ ୧,୮୦୦ ଟଙ୍କା, ୧୯୮୪-୮୫ ମସିହାରେ ଜାଆଁଳ ବାବଦକୁ ୨୦୫ ଟଙ୍କା ଖର୍ଚ୍ଚ କରି ୨,୫୬୦ ଟଙ୍କା, ୧୯୮୫–୮୬ ମସିହାର ଜାଆଁଳ ବାବଦକୁ ୨୭୫ ଟଙ୍କା ଖର୍ଚ୍ଚ କରି ୫ହଜାର ଟଙ୍କା ଏବଂ ୧୯୮୬–୮୭ ମସିହାରେ ୪୪୦ ଟଙ୍କା ଖର୍ଚ୍ଚ କରି ୮ ହଜାର ଟଙ୍କା ଆୟ କରିଛନ୍ତି । ଏଣୁ ବ୍ୟୟ ବାବଦକୁ ୯୯୦ ଟଙ୍କା ବାଦ ଯାଇ ୧୬,୩୭୦ ଟଙ୍କା ପ୍ରକୃତ ଆୟ କରି ଉଭୟ ସମାନ ଭାବରେ ବାଣ୍ଟି ନେଇଛନ୍ତି ।

ଶ୍ରୀ ରାଜେନ୍ଦ୍ର ବେହେରା ମାଛଚାଷ ଆୟରୁ ୩୩ ଫୁଟ ଲମ୍ବ ଓ ୧୧ ଫୁଟ ଓସାର ଏବଂ ୨୦ ଫୁଟ ଲମ୍ବ ଓ ୧୧ ଫୁଟ ଓସାରର ଦୁଇଟି ଘର ତିଆରି କରିଛନ୍ତି, ଯାହାର ଆନୁମାନିକ ମୂଲ୍ୟ ୩ ହଜାର ଟଙ୍କାରୁ ଅଧିକ ହେବ । ଏହା ବ୍ୟତୀତ ସେ ୧,୬୦୦ ଟଙ୍କାରେ ଏକ ହଳ ବଳଦ କିଣିଛନ୍ତି ଏବଂ ଗୋଟିଏ ସିଲାଇ ମେସିନ୍ ମଧ୍ୟ କିଣିଛନ୍ତି । ଉକ୍ତ ସିଲାଇ ମେସିନ୍ ଦ୍ୱାରା ତାଙ୍କର ପୁଅ ପାଠ ପଢ଼ିବା ସଙ୍ଗେସଙ୍ଗେ ବର୍ଷକୁ ପ୍ରାୟ ୩ ହଜାର ଟଙ୍କା ରୋଜଗାର କରୁଛନ୍ତି । ଏହି ଆୟରୁ ସେ ଡାକଘରେ ୨,୦୪୮ ଟଙ୍କା ଜମା ରଖିଛନ୍ତି ।

ବର୍ତ୍ତମାନ ଶ୍ରୀ ବେହେରା ଅନ୍ୟ କାହାରି ମୂଲ ଲଗିବାକୁ ଯାଉ ନାହାନ୍ତି ଏବଂ ତାଙ୍କର ୧୨ ଜଣ ବିଶିଷ୍ଟ ପରିବାରଟି ସୁଖରେ ଚଳିଯାଉଛି ବୋଲି ପ୍ରକାଶ କରିଛନ୍ତି ।

ଶ୍ରୀ ସୁରେନ୍ଦ୍ର ନାୟକ ମାଛଚାଷ ଆୟରୁ ୩,୫୦୦ ଟଙ୍କା ଲଗାଇ ସବାଇ ଦଉଡ଼ି ବ୍ୟବସାୟ କରୁଛନ୍ତି ଏବଂ ବାର୍ଷିକ ପ୍ରାୟ ୨,୫୦୦ ଟଙ୍କା ଆୟ କରୁଛନ୍ତି । ଉପରୋକ୍ତ ଆୟରୁ ସେ ୫୦୦ ଟଙ୍କାରେ ୮ ଡିସିମିଲି ଜମି କିଣିଛନ୍ତି ଏବଂ ଗୋଟିଏ ସାଇକେଲ କିଣିଛନ୍ତି । ଆଉମଧ୍ୟ ଦୁଇ ଏକର ଜମିରେ ଭାଗରେ ଚାଷ କରୁଛନ୍ତି । ଅପରନ୍ତୁ ଡାକଘର ପାସ୍ ବହିରେ ୨,୫୨୮ ଟଙ୍କା ଜମା ରଖିଛନ୍ତି । ବର୍ତ୍ତମାନ ସେ କାହାରି ମୂଲ ଲଗୁ ନାହାନ୍ତି ଏବଂ ତାଙ୍କର ୬ ଜଣ ବିଶିଷ୍ଟ ପରିବାରଟି ସୁଖରେ ଚଳିଯାଉଛି ।

ଏହି ମାଛଚାଷ ଯୋଜନାଟି ଅତ୍ୟନ୍ତ ଲାଭଜନକ ବୋଲି ସେମାନେ ଅନୁଭବ କରୁଥିବା ପ୍ରକାଶ କରିଛନ୍ତି ।

## ସୀତାରାମଙ୍କ ନୂଆ ଜୀବନ........ନୂଆ ସୋପାନ

ଶ୍ରୀ ସୀତାରାମ ମୁର୍ମୁ ମୟୂରଭଞ୍ଜ ଜିଲ୍ଲା ବୁକ୍ ଅନ୍ତର୍ଗତ ପୋଡ଼ା ଗ୍ରାମର ଜଣେ ଗରିବ ଆଦିବାସୀ । ତାଙ୍କର ପରିବାର ସଂଖ୍ୟା ଦଶ । ଚାଷଜମି ମାତ୍ର ଏ ୨.୨୦ ଡେସିମିଲ । ଏହି ଜମିରୁ ଉତ୍ପାଦିତ ଫସଲ ତାଙ୍କ ପରିବାର ପକ୍ଷେ ଯଥେଷ୍ଟ ନଥିଲା । ଚାଷ ହିଁ ଥିଲା ତାଙ୍କର ଏକମାତ୍ର ଆୟର ପନ୍ଥା । ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ଅନେକ ସମୟରେ ତାଙ୍କ ଜମିରୁ ଫସଲ ଠିକ୍ ଭାବରେ ଆଦାୟ ହୋଇପାରୁ ନଥିଲା । ଚାଷଜମିରେ ସେପରି ଜଳସେଚନ ସୁବିଧା ମଧ୍ୟ ନାହିଁ । ଫଳରେ ବହୁତ କଷ୍ଟରେ ପରିବାର ଚଳାଉଥିଲେ ସେ । ଏଣୁ ଆୟର ପରିମାଣ ବୃଦ୍ଧି ନିମନ୍ତେ ସେ ଅନ୍ୟ ପନ୍ଥା ଅନ୍ୱେଷଣ କରୁଥିଲେ । କିନ୍ତୁ ଆର୍ଥିକ ସମ୍ବଳର ଅଭାବ ସେଥିରେ ପ୍ରତିବନ୍ଧକ ସୃଷ୍ଟି କରୁଥିଲା । ସାଇକେଲ ମରାମତି ବିଷୟରେ ତାଙ୍କର ସାମାନ୍ୟ ଜ୍ଞାନ ଥିଲା । ତେଣୁ ଅଳ୍ପ କେତେକ ଯନ୍ତ୍ରପାତି ନେଇ ରାସ୍ତାକଡ଼ରେ ବସିଲେ । ଏଥିରେ ମଧ୍ୟ ସେ ବେଶୀ ଆୟ କରିପାରିଲେ ନାହିଁ । ପିଲାମାନେ ବଡ ହେବା ସାଙ୍ଗକୁ ତାଙ୍କ ପରିବାର ଖର୍ଚ୍ଚ ମଧ୍ୟ ବଢ଼ିବାକୁ ଲାଗିଲା । ତେଣୁ ସେ ବରାବର ଚିନ୍ତିତ ରହୁଥିଲେ । ଠିକ୍ ଏହି ସମୟରେ ପୋଡ଼ା ଗ୍ରାମରେ ୩-୧-୮୬ ତାରିଖରେ ଋଣଗ୍ରହୀତା ମାନଙ୍କୁ ଚିହ୍ନଟ କରିବା ପାଇଁ ଜଣେ ଗ୍ରାମସେବକ ଏବଂ ଜଣେ ସଂପ୍ରସାରଣ ଅଧିକାରୀଙ୍କ ଉପସ୍ଥିତିରେ ପଲ୍ଲୀସଭା ଡକାଗଲା । ଏଥିରେ ବିଭିନ୍ନ ଋଣର ସୁବିଧା ସଂପର୍କରେ ଆଲୋଚନା ପରେ ଗ୍ରାମର ଅନ୍ୟାନ୍ୟ ଲୋକଙ୍କ ସହିତ ଶ୍ରୀ ସୀତାରାମ ମୁର୍ମୁଙ୍କୁ ମଧ୍ୟ ଚିହ୍ନଟ କରାଯାଇଥିଲା । ଶ୍ରୀ ମୁର୍ମୁଙ୍କର ନାମ ପଞ୍ଚାୟତ ସମିତି ବୈଠକରେ ଅନୁମୋଦନ ପରେ ଋଣ ଦରଖାସ୍ତ ବ୍ୟାଙ୍କ ଅଫ୍ ବୋରଦା ପଣ୍ଡୁପାର୍ଣି ଶାଖାକୁ ପଠାଗଲା । ବ୍ୟାଙ୍କ ମ୍ୟାନେଜର ୨୯-୪-୮୬ ତାରିଖରେ ସାଇକେଲ୍ ମରାମତି ପାଇଁ ତାଙ୍କୁ ୩୬୦୦ ଟଙ୍କା ମଞ୍ଜୁର କରିଥିଲେ ଏବଂ ସେହି ଟଙ୍କାରେ ଆବଶ୍ୟକୀୟ ଯନ୍ତ୍ରପାତି କିଣି ଯୋଗାଇ ଦେଇଥିଲେ । ଯନ୍ତ୍ରପାତି ମିଳିବା ପରେ ସେ ସଂପୂର୍ଣ୍ଣ ଭାବେ ଉପରୋକ୍ତ ଧନ୍ଦାରେ ମନୋନିବେଶ କଲେ ଏବଂ କାମରେ ସାହାଯ୍ୟ କରିବା ଲାଗି ଜଣେ ପିଲାକୁ ମଧ୍ୟ ନିଯୁକ୍ତି ଦେଲେ । ସମୁଦାୟ ଋଣରୁ ସରକାରଙ୍କଠାରୁ ଛାଡ଼ ବାବଦକୁ ୧୮୦୦ ଟଙ୍କା ପାଇଲେ । ବର୍ତ୍ତମାନ ତାଙ୍କର ସାଇକେଲ ମରାମତି ଦୋକାନଟି ଖୁବ୍ ଭଲ ଭାବରେ ଚାଲିଛି । ତାଙ୍କର ବାର୍ଷିକ ଆୟ ୨୪୦୦ ଟଙ୍କାରୁ ୫୨୦୦ ଟଙ୍କାକୁ ବଢିଯାଇଛି । ଚାଷ ପାଇଁ ତାଙ୍କର ବଳଦ ନଥିଲା । ଭଲ ବଳଦ ହଳେ କିଣିଛନ୍ତି ଏବଂ ପୁଅକୁ କଲେଜରେ ପଢାଉଛନ୍ତି । ବ୍ୟାଙ୍କ ଋଣ ୧୧୦୦ ଟଙ୍କା ଶୁଝି ସାରିଲେଣି । ଏହିପରି ଭାବରେ ପୂର୍ବାପେକ୍ଷା ତାଙ୍କ ପରିବାର ଖୁବ୍ ଭଲରେ ଚଳୁଛନ୍ତି । ତାଙ୍କ ପରିବାରର ଉନ୍ନତି ମୂଳରେ ଅଛି ସରକାରଙ୍କର ସମନ୍ୱିତ ଗ୍ରାମ୍ୟ ବିକାଶ ଯୋଜନାର ଦୃଢ ଭିତ୍ତି । ଶ୍ରୀ ମୁର୍ମୁ ଦାରିଦ୍ର୍ୟ ସୀମାରେଖା ଅତିକ୍ରମ କରିପାରିଛନ୍ତି । ତାଙ୍କର ବର୍ତ୍ତମାନ ହାରାହାରି ମାସିକ ଖର୍ଚ୍ଚ ୪୦୦ ଟଙ୍କା ହେବ । ଚଳିବାକୁ ଅସୁବିଧା ହେଉନାହିଁ । କିନ୍ତୁ ପୁଅ କଲେଜରେ ପଢିବା ଦିନ ଠାରୁ ଖର୍ଚ୍ଚର ପରିମାଣ ବୃଦ୍ଧି ପାଇଛି । ଏହି ଅଧିକ ଖର୍ଚ୍ଚକୁ ତୁଲାଇବା ପାଇଁ ଅନ୍ୟ ଏକ ଋଣ ନେବା ଲାଗି ତାଙ୍କର ଆଗ୍ରହ ରହିଛି ।

## ପ୍ରଗତି ପଥେ ପ୍ରହ୍ଲାଦ

ମୟୂରଭଞ୍ଜ ଜିଲ୍ଲା ମୋରଡା ବ୍ଲକ୍ ଅନ୍ତର୍ଗତ ଚିତ୍ରଡା ଗ୍ରାମ ନିବାସୀ ଶ୍ରୀ ପ୍ରହ୍ଲାଦ ବେହେରା, ବୟସ ୩୩ ବର୍ଷ, ପରିବାର ସଦସ୍ୟଙ୍କ ସଂଖ୍ୟା ୫ । ନିଜେ, ସ୍ତ୍ରୀ, ଦୁଇ ଝିଅ ଓ ପୁଅଟିଏ । ଦୁନିଆ ଦାଣ୍ଡରେ ଅଣ୍ଟା ଭିଡ଼ି ମୁଣ୍ଡ ଟେକି ମଣିଷଟିଏ ହୋଇ ବଞ୍ଚି ରହିବା ନିମନ୍ତେ ତାଙ୍କର ପ୍ରବଳ ଆଗ୍ରହ ଥିଲା । ଦେହରେ କାର୍ଯ୍ୟ କରିବାର ଶକ୍ତି ଥିଲା । ମୁଣ୍ଡରେ ବୁଦ୍ଧି ମଧ୍ୟ ଥିଲା । କିନ୍ତୁ ଅର୍ଥାଭାବରୁ କୌଣସି ଜୀବିକା ନିର୍ବାହ କରି ଉପାର୍ଜନକ୍ଷମ ହୋଇପାରୁ ନଥିଲେ । ଅଭାବେ ସ୍ୱଭାବ ନଷ୍ଟ । ଛୋଟ ଦୋକାନଟିଏ କରି ନିଜର ଗୁଜୁରାଣ ମେଣ୍ଟାଇବା ନିମନ୍ତେ ତାଙ୍କର ପ୍ରବଳ ଉତ୍କଣ୍ଠା ଅର୍ଥାଭାବରୁ ଫଳବତୀ ହୋଇପାରୁ ନଥିଲା । ସରକାରଙ୍କ ଆଇ: ଆର: ଡି: ଋଣ ଯୋଜନା ମାଧ୍ୟମରେ ତାଙ୍କୁ ଜଣେ ଉପଯୁକ୍ତ ହିତାଧିକାରୀ-ଭାବେ ଚିହ୍ନଟ କରାଗଲା । ମୋରଡା ପଞ୍ଚାୟତ ସମିତି ତରଫରୁ ସମସ୍ତ ଆବଶ୍ୟକୀୟ ପଦକ୍ଷେପ ନିଆଗଲା । ତାଙ୍କର ଋଣ ଦରଖାସ୍ତ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ, ଚିତ୍ରଡା ଶାଖାକୁ ପଠାଗଲା । ରେଡ଼ିମେଡ୍ ପୋଷାକ ବ୍ୟବସାୟ କରିବା ନିମନ୍ତେ ତାଙ୍କୁ ୩,୬୦୦ ଟଙ୍କା ମଞ୍ଜୁର କରାଗଲା । ସେଥିରେ ସେ ୧,୨୦୦ ଟଙ୍କା ଛାଡ ପାଇଲେ ।

ବର୍ତ୍ତମାନ ସେ ନିଜର ବାସଗୃହକୁ ଲାଗି ନୂଆ ଘର ତିଆରିକରି ନିଜର ବ୍ୟବସାୟ ଆରମ୍ଭ କରିଛନ୍ତି । ବ୍ୟବସାୟ ଭଲ ଚାଲିଛି । ଆୟ ମଧ୍ୟ ଭଲ ହେଉଛି । ସପ୍ତାହକୁ ସେ ୮୦–୯୦ ଟଙ୍କା ରୋଜଗାର କରିପାରୁଛନ୍ତି । ସେହି ପଇସାରୁ ଗୋଟିଏ ସାଇକେଲ ଓ ରେଡ଼ିଓ କିଣିପାରିଛନ୍ତି । ୧୦ଟି କୁକୁଡା କିଣି ପାଳନ କରୁଛନ୍ତି । ତାଙ୍କର ପରିବାର ଖୁସିରେ ଚଳିଯାଉଛି । ମୁହଁରେ ତାଙ୍କର ସଫଳତାର ହସ ଓ ଦେହରେ ପ୍ରତିଷ୍ଠିତ ସାମର୍ଥ୍ୟ । ଋଣ କିସ୍ତି ଟଙ୍କା ନିୟମିତ ପଇଠ କରୁଛନ୍ତି ।



# STATEMENT ABOUT OWNERSHIP AND OTHER PARTICULARS ABOUT THE UTKAL PRASANGA

FORM IV

( *See* Rule 8 )

| | | |
|---|---|---|
| 1. Place of Publication | ... | Bhubaneswar |
| 2. Periodicity of its publication | ... | Monthly |
| 3. Printer's name | ... | Shri S. R. Patnaik, for and on behalf of the Government of Orissa. |
| Nationality | ... | Indian |
| Address | ... | Director of Printing, Stationery and Publication, Orissa, Cuttack, Pin-753010. |
| 4. Publisher's name | ... | SRI SUBAS PANI for and on behalf of the Government of Orissa. |
| Nationality | ... | Indian |
| Address | .. | Director of Information & Public Relations and Additional Secretary to Government of Orissa, Information & Public Relations Department, Bhubaneswar, Pin-751001. |
| 5. Chief Editor's name | ... | Shri Satyananda Champatiray |
| Nationality | ... | Indian |
| Address | ... | Chief Editor, Information & Public Relations Department, Government of Orissa, Bhubaneswar, Pin-751001. |
| 6. Editor's name | ... | Shri S. B. Patanaik |
| Nationality | ... | Indian |
| Address | ... | Editor, Utkal Prasanga, Information & Public Relations Department, Government of Orissa, Bhubaneswar, Pin-751001. |
| 7. Name and address of individuals who own newspaper and partners or share-holders holding more than one per cent of the total capital. | | Government of Orissa |

I, SRI SUBAS PANI I.A.S. Director of Information & Public Relations and Additional Secratary to Government, Information and Public Relations Department, hereby declare that the particulars given above are true to the best of my knowledge and belief.

S. Pani

Signature of Publisher

# ସମ୍ବାଦ ପରିକ୍ରମା

## କେନ୍ଦ୍ର ବଜେଟ୍ ସଂପର୍କରେ କୃଷିମନ୍ତ୍ରୀ ଶ୍ରୀ ବେହେରାଙ୍କ ପ୍ରତିକ୍ରିୟା

୧୯୮୮-୮୯ ଆର୍ଥିକ ବର୍ଷ ନିମିତ୍ତ କେନ୍ଦ୍ର ଅର୍ଥମନ୍ତ୍ରୀଙ୍କ ଦ୍ୱାରା ଆଗତ ବଜେଟ ଏକ ଯୁଗାନ୍ତକାରୀ ବାର୍ତ୍ତା ଆଣି ପହଞ୍ଚାଇଛି । ଏହା କୃଷକ ସମାଜ ପ୍ରତି ମଙ୍ଗଳକର ବୋଲି କୃଷି ଓ ସମବାୟ ଏବଂ ହରିଜନ ଓ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା ମତବ୍ୟକ୍ତ କରି କହିଛନ୍ତି ।

"ଏହି ବଜେଟ୍ କୃଷକ ଶ୍ରେଣୀର ସ୍ୱାର୍ଥକୁ ଆଖି ଆଗରେ ରଖି ସେମାନଙ୍କର ପ୍ରକୃତ ବିକାଶ ନିମିତ୍ତ ବହୁବିଧ ଯୋଜନା ପ୍ରଣୟନ, ସଂପୂର୍ଣ୍ଣ ଅବକାରୀ ଶୁଳ୍କ ଛାଡ଼, କୃଷି, ଶିଳ୍ପ, ରପ୍ତାନୀ ପାଇଁ ବ୍ୟାପକ ରିହାତି ଦେବା ଦ୍ୱାରା ଦେଶର ଅପେକ୍ଷିତ କୃଷକ ମାନଙ୍କ ଦ୍ୱାରା ଅଭିନନ୍ଦନୀୟ । କୃଷକ ମାନଙ୍କ ଦ୍ୱାରା ବ୍ୟବହୃତ କୀଟନାଶକ ଔଷଧ ତଥା କୃଷି ଓ ଉଦ୍ୟାନ ଆଧୁନିକୀକରଣରେ ଲାଗୁଥିବା ଯନ୍ତ୍ରପାତି ଏବଂ କୃଷି ବିକାଶ ନିମିତ୍ତ ବ୍ୟବହୃତ ପଂପ୍‌ସେଟ୍‌ରେ ସଂପୂର୍ଣ୍ଣ ଅବକାରୀ ରିହାତି ଦେବା ଦ୍ୱାରା ଏହି ବଜେଟ୍ କୃଷକ ମାନଙ୍କ ପାଇଁ ଏକ ଆଶୀର୍ବାଦ ଏବଂ ଉତ୍ସାହଦାୟକ । ବିଶେଷତଃ ଚଳିତ ଆର୍ଥିକ ବର୍ଷରେ ଦେଶରେ ଭୟଙ୍କର ମରୁଡ଼ି ହେବା ସମୟରେ ଏ ପ୍ରକାର ଆର୍ଥିକ ସହାୟତା କୃଷିର ବିକାଶ ସମ୍ଭବ କରିବା ସଙ୍ଗେ ସଙ୍ଗେ କୃଷକଙ୍କୁ ମରୁଡ଼ି ପରିସ୍ଥିତିର ମୁକାବିଲା କରିବାକୁ ଯଥେଷ୍ଟ ସାହସ ତଥା ଉତ୍ସାହ ପ୍ରଦାନ କରିବ 'କିଷାନ୍ ବିକାଶ ପତ୍ର'ର ପ୍ରଚଳନ ଦ୍ୱାରା କୃଷକ ମାନଙ୍କ ମଧ୍ୟରେ ସଞ୍ଚୟ ମନୋବୃତ୍ତି ବୃଦ୍ଧି କରିବାରେ ଏହା ସହାୟକ ହେବ । ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ଚାଷୀମାନଙ୍କୁ ସ୍ୱଳ୍ପ ଭଡ଼ା ବା ଲିଜ୍ ସୂତ୍ରରେ ପଂପ୍‌ସେଟ୍ ଯୋଗାଇଦେବା ସର୍ତ୍ତ ପ୍ରସ୍ତୁତ 'ଜଳଧାରା' କାର୍ଯ୍ୟକ୍ରମ ଦ୍ୱାରା ଚାଷୀମାନେ ମରୁଡ଼ି ପରିସ୍ଥିତିରୁ ରକ୍ଷା ପାଇବାକୁ ସମର୍ଥ ହେବେ । କୃଷକମାନଙ୍କୁ ଖାଦ୍ୟ ଓ ସାର ବାବଦ ସବ୍‌ସିଡି ୪୫୧୦ କୋଟି ଟଙ୍କାରୁ ୫୩୦୦ କୋଟି ଟଙ୍କାକୁ ବୃଦ୍ଧି କରିବା ଏବଂ କୃଷି ତଥା ଶିଳ୍ପ ଉତ୍ପାଦନ ପାଇଁ ରିହାତି ପ୍ରଦାନ ଚାଷୀ ମନରେ ଯଥେଷ୍ଟ ଭରସା ସୃଷ୍ଟି କରିବ । ସର୍ବୋପରି କୃଷି ଓ ଜଳସେଚନ ବାବଦ ବ୍ୟୟ ଶତକଡ଼ା ୪୦ ଭାଗ ବୃଦ୍ଧି କରିବାକୁ ଚଳିତ ବଜେଟ୍‌ରେ ବ୍ୟବସ୍ଥା କରାଯାଇଥିବାରୁ ଏହା ସରକାରଙ୍କର କୃଷି ଅନୁକୂଳ ମନୋଭାବର ପରିଚୟ ଦେଉଛି । ତେଣୁ ଏହି ବଜେଟ୍ ସର୍ବୋତଭାବେ ସ୍ୱାଗତଯୋଗ୍ୟ । ଏହା ଗ୍ରାମାଭିମୁଖୀ ଯୋଜନାର ଏକ ବାସ୍ତବ ପ୍ରତିଫଳନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାଦ୍ୱାରା ଗରିବ, ହରିଜନ ଓ ଆଦିବାସୀ ସଂପ୍ରଦାୟର ବହୁ ଉପକାର ସାଧିତ ହୋଇପାରିବ ।"

## ଯୌତୁକ ଦେଇ ବିବାହ କରିବୁ ନାହିଁ

ଯୌତୁକ ଦେଇ ବିବାହ କରିବୁ ନାହିଁ ବୋଲି ଛାତ୍ରୀମାନେ ଶପଥ ନିଅନ୍ତୁ । ଯାହା ଫଳରେ କି ଯୌତୁକ ଭଳି ଘୃଣ୍ୟ ପ୍ରଥା ସମାଜରୁ ଦୂର ହୋଇ ପାରିବ ବୋଲି ମହାମାନ୍ୟ ରାଜ୍ୟପାଳ ଶ୍ରୀଯୁକ୍ତ ପାଣ୍ଡେ ନିକଟରେ ରମାଦେବୀ ମହିଳା କଲେଜ ଛାତ୍ରୀ ସଂସଦର ବାର୍ଷିକ ଉତ୍ସବ ଉଦ୍‌ଘାଟନ କରି କହିଛନ୍ତି । ତାଙ୍କର ଉଦ୍‌ଘାଟନୀ ଭାଷଣରେ ରାଜ୍ୟପାଳ ଭାରତ ସ୍ୱାଧୀନତା ସଂଗ୍ରାମ ଇତିହାସରେ ନାରୀମାନଙ୍କର ଉଜ୍ଜ୍ୱଳ କୀର୍ତ୍ତି ସ୍ମରଣ କରାଇ କହିଥିଲେ ଯେ ରମାଦେବୀ କଲେଜ ସେହିଭଳି ଜଣେ ସାହସୀ, ବିଦୂଷୀ ତଥା ବିପ୍ଳବୀ ନାରୀଙ୍କ ନାମରେ ନାମିତ ।

ଶ୍ରୀଯୁକ୍ତ ପାଣ୍ଡେ କହିଥିଲେ ଯେ ଓଡ଼ିଶା ଅମାପ ଖଣିଜ ଜଙ୍ଗଲ ଏବଂ ସାମୁଦ୍ରିକ ସଂପଦରେ ଯଥେଷ୍ଟ ସମୃଦ୍ଧ ହୋଇଥିଲେ ମଧ୍ୟ ଆଜିର ଯୁବ ସମାଜର ଉପଯୁକ୍ତ ଉଦ୍‌ଯୋଗ ଏବଂ ଦୃଢ଼ ମନୋବଳର ଅଭାବ ଯୋଗୁ ଏ ରାଜ୍ୟ ପ୍ରଗତି ହାସଲ କରି ଅନ୍ୟ ସମୃଦ୍ଧିଶାଳୀ ରାଜ୍ୟମାନଙ୍କ ସହିତ ସମକକ୍ଷ ହୋଇ ପାରି ନାହିଁ । କଠିନ ପରିଶ୍ରମ ଏବଂ ନିଷ୍ଠା ବଳରେ ଓଡ଼ିଶାକୁ ସମୃଦ୍ଧିଶାଳୀ କରାଯାଇ ପାରିବ ବୋଲି ସେ ଆଶା କରିଥିଲେ । ଏପରିକି ଶିକ୍ଷା କ୍ଷେତ୍ରରେ ମଧ୍ୟ ଓଡ଼ିଶାର ପ୍ରଗତି ସେତେ ସନ୍ତୋଷଜନକ ନୁହେଁ । ରାଜ୍ୟର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ପ୍ରତି ୧୦୦ ଜଣଙ୍କ ମଧ୍ୟରେ ଚଉରାନବେ ଜଣ ଆଦିବାସୀ ନାରୀ

ଏବେ ମଧ୍ୟ ନିରକ୍ଷର । ଏ କ୍ଷେତ୍ରରେ ଦେଶର ଉନ୍ନତି କିଭଳି ସମ୍ଭବ ହେବ ବୋଲି ରାଜ୍ୟପାଳ ଦୁଃଖ ପ୍ରକାଶ କରିବା ସହିତ ଶିକ୍ଷିତା ନାରୀମାନେ ସେହି ଅବହେଳିତ ଆଦିବାସୀ ମହିଳାମାନଙ୍କୁ ଶିକ୍ଷିତା କରିବାର ଦାୟିତ୍ୱପ୍ରତି ପରାଂମୁଖ ନ ହୁଅନ୍ତୁ ବୋଲି ଆଶା ପ୍ରକାଶ କରିଥିଲେ । ଆଜି ବି ଆମ ସମାଜରେ ବଧୂହତ୍ୟା, ଯୌତୁକ ନିର୍ଯ୍ୟାତନା ଇତ୍ୟାଦି ପୁରି ରହିଛି । ଏହା ବିରୁଦ୍ଧରେ ସରକାର କଡ଼ା ଆଇନ୍ ପ୍ରଣୟନ କରିଥିଲେ ମଧ୍ୟ ଏସବୁ ସାମାଜିକ ଅନୀତି ଦୂର କରିବା କ୍ଷେତ୍ରରେ ପୁରୁଷମାନଙ୍କ ଭଳି ନାରୀର ମଧ୍ୟ କର୍ତ୍ତବ୍ୟ ରହିଛି । ଶ୍ରୀଯୁକ୍ତ ପାଣ୍ଡେ ଏହି ପରିପ୍ରେକ୍ଷୀରେ ଯୌତୁକ ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କରିବା ପାଇଁ ଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ଉତ୍ସବ ଶେଷରେ ଶ୍ରୀମତୀ ଶାନ୍ତା ପାଣ୍ଡେ କୃତୀ ଛାତ୍ରୀମାନଙ୍କୁ ସ୍ୱର୍ଣ୍ଣ ପଦକ, କପ୍ ଏବଂ ପ୍ରମାଣ ପତ୍ର ବିତରଣ କରିଥିଲେ । ମହାବିଦ୍ୟାଳୟର ଅଧ୍ୟକ୍ଷା ଶ୍ରୀମତୀ ରମାସୁନ୍ଦରୀ ଦେବୀ ରାଜ୍ୟପାଳ ଓ ତାଙ୍କର ସହଧର୍ମିଣୀଙ୍କ ପରିଚୟ ପ୍ରଦାନ କରି ରାଜ୍ୟପାଳ ଶ୍ରୀ ପାଣ୍ଡେଙ୍କ ପରି ଜଣେ ସୁନାମଧନ୍ୟ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀଙ୍କ ଦ୍ୱାରା ଏହି ବାର୍ଷିକ ଉତ୍ସବ ଉଦ୍‌ଘାଟିତ ହୋଇଥିବାରୁ ଛାତ୍ରୀମାନେ ପ୍ରେରଣା ପାଇ ପାରିବେ ବୋଲି କହିଥିଲେ । ମହାବିଦ୍ୟାଳୟର ଛାତ୍ରୀ ସଂସଦର ସଭାପତି କୁମାରୀ ନର୍ମଦା ମିଶ୍ର ଏହି ସମାରୋହରେ ଅଧ୍ୟକ୍ଷତା କରିଥିଲେ । ଶେଷରେ ଛାତ୍ରୀମାନଙ୍କ ଦ୍ୱାରା ଏକ ମନୋଜ୍ଞ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା ।

## ସମସ୍ତ ସରକାରୀ ଦପ୍ତରରେ କମ୍ପ୍ୟୁଟର ପ୍ରୟୋଗ

ପ୍ରଶାସନିକ ଦକ୍ଷତା ବୃଦ୍ଧି ତଥା ନିର୍ଭୁଲ ତଥ୍ୟ ସଂଗ୍ରହ ପାଇଁ ଓଡ଼ିଶା ସରକାରଙ୍କର ସବୁ ବିଭାଗ, ଭୁବନେଶ୍ୱର ଓ କଟକଠାରେ ଅବସ୍ଥିତ କେତେକ ମୁଖ୍ୟ ଦପ୍ତର ଏବଂ ସରକାରୀ ରାଷ୍ଟ୍ରାୟତ୍ତ ନିଗମଗୁଡ଼ିକରେ ଆଗାମୀ ଜୁନମାସ ଶେଷ ସୁଦ୍ଧା କମ୍ପ୍ୟୁଟର ବ୍ୟବସ୍ଥା ପ୍ରବର୍ତ୍ତନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଛି । ଏବେ ନିକଟରେ ଏଥିପାଇଁ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ପ୍ରସ୍ତୁତି ଉଦ୍ଦେଶ୍ୟରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ବୈଠକରେ ଅଧ୍ୟକ୍ଷତା କରି ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା ଏହି ନୂତନ ବ୍ୟବସ୍ଥା ପ୍ରବର୍ତ୍ତନ ଫଳରେ କୌଣସି ଦପ୍ତରରେ ଜଣେ ହେଲେ କର୍ମଚାରୀଙ୍କୁ ଛଟେଇ କରାଯିବନାହିଁ, ବରଂ ଏହା ଫଳରେ ସେମାନଙ୍କର କର୍ମ କୁଶଳତା ବୃଦ୍ଧି ପାଇବ ବୋଲି କହିଥିଲେ ।

ଏହି ବ୍ୟବସ୍ଥା ପ୍ରବର୍ତ୍ତନ ସଂପର୍କୀୟ ନିଷ୍ପତ୍ତି ଅନୁଯାୟୀ ଆବଶ୍ୟକୀୟ ସଫ୍‌ଟ ଓ୍ୱୟାର ପ୍ରସ୍ତୁତି ପାଇଁ ଜାତୀୟ ଇନ୍‌ଫର୍ମାଟିକ୍‌ସ କେନ୍ଦ୍ରରେ ବିଶେଷଜ୍ଞମାନଙ୍କର ପରାମର୍ଶ ଓ ସହାୟତା ଗ୍ରହଣ କରାଯିବ । ପ୍ରତ୍ୟେକ ବିଭାଗର ନିଜସ୍ୱ କଂପ୍ୟୁଟର ବ୍ୟତୀତ ଇନ୍‌ଫର୍ମାଟିକ୍‌ସ କେନ୍ଦ୍ରର ସୁପର କଂପ୍ୟୁଟର ସହ ସମସ୍ତ ବିଭାଗର କଂପ୍ୟୁଟର ପ୍ରୟୋଗ ବ୍ୟବସ୍ଥାକୁ ସଂଯୁକ୍ତ କରାଯିବ । ପ୍ରତ୍ୟେକ ବିଭାଗରେ କଂପ୍ୟୁଟର ପ୍ରୟୋଗପାଇଁ କ୍ଷେତ୍ର ନିର୍ଦ୍ଧାରଣ, ପରିଚାଳନା ପାଇଁ ଆବଶ୍ୟକୀୟ ପ୍ରଶିକ୍ଷଣ ବ୍ୟବସ୍ଥା ପ୍ରଭୃତି ଦିଗରେ ପଦକ୍ଷେପ ନେବା ନିମନ୍ତେ ଓକାକ୍‌ର ଅଧ୍ୟକ୍ଷଙ୍କ ଅଧ୍ୟକ୍ଷତାରେ ଏକ କାର୍ଯ୍ୟକାରୀ କମିଟି ଗଠନ କରାଯାଇଛି । ଅତିରିକ୍ତ ଉନ୍ନୟନ କମିଶନର ଏହି କମିଟିର ଉପାଧ୍ୟକ୍ଷ ତଥା କେତେକ ଶାସନ ସଚିବ ଏହାର ସଦସ୍ୟ ରହିଛନ୍ତି । କଂପ୍ୟୁଟର ପ୍ରୟୋଗ ସଂପର୍କରେ ଓକାକ୍ ପକ୍ଷରୁ କର୍ମଚାରୀମାନଙ୍କୁ ଆବଶ୍ୟକୀୟ ପ୍ରଶିକ୍ଷଣ ଦିଆଯିବ ଏବଂ ପ୍ରତ୍ୟେକ ବିଭାଗରେ ଜଣେ ଲେଖାଏଁ ପଦସ୍ଥ ଅଧିକାରୀଙ୍କୁ ଏହି ପରିଚାଳନା ଦାୟିତ୍ୱ ଓ ସଂଯୋଜନା ପାଇଁ ମନୋନୟନ କରାଯିବ ।

ଏହି ବୈଠକରେ ସ୍ୱତନ୍ତ୍ର ରିଲିଫ୍ କମିଶନର, ଅତିରିକ୍ତ ଉନ୍ନୟନ କମିଶନର ବିଭିନ୍ନ ବିଭାଗର ଶାସନ ସଚିବ ଓ ଅତିରିକ୍ତ ଶାସନ ସଚିବ ଏବଂ ଓକାକ୍‌ର ପରିଚାଳନା ନିର୍ଦ୍ଦେଶକ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

---

## ପରିବେଶ ସୁରକ୍ଷା ପାଇଁ ବିଭିନ୍ନ ପଦକ୍ଷେପ

ପ୍ରାକୃତିକ ପରିବେଶ ସୁରକ୍ଷା ସଂପର୍କରେ ଗଣ ଚେତନା ସୃଷ୍ଟିକରିବା ନିମନ୍ତେ ରାଜ୍ୟ ସରକାର ବିଭିନ୍ନ ପଦକ୍ଷେପ ନେଇଛନ୍ତି । ନିଆଯାଇଥିବା ପଦକ୍ଷେପ ଗୁଡ଼ିକ ମଧ୍ୟରେ ରାଜ୍ୟର ସ୍ୱେଚ୍ଛାସେବୀ ଅନୁଷ୍ଠାନ, ବିଦ୍ୟାଳୟ, ବିଶ୍ୱବିଦ୍ୟାଳୟମାନଙ୍କୁ ପରିବେଶ ବିଭାଗ ତରଫରୁ ଆର୍ଥିକ ସହାୟତା ପ୍ରଦାନ କରାଯାଇ ପରିବେଶ ଚେତନା ଶିବିର ଜନ ଜାଗରଣ ସୃଷ୍ଟି କରିବା ପାଇଁ ଆଲୋଚନା ଚକ୍ର, କର୍ମଶାଳା, ପଦଯାତ୍ରା, ସମ୍ମିଳନୀ, ସାଂସ୍କୃତିକ କାର୍ଯ୍ୟକ୍ରମ ଇତ୍ୟାଦି କାର୍ଯ୍ୟମାନ ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ପ୍ରତି ଜିଲ୍ଲାରେ ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ଜିଲ୍ଲା ପରିବେଶ ସମିତିମାନ ଗଠନ କରାଯାଇଛି । ପରିବେଶ ସଂପର୍କୀୟ ଚଳଚ୍ଚିତ୍ର ମାଧ୍ୟମରେ ଜନ ଚେତନା ସୃଷ୍ଟି ପାଇଁ ପଦକ୍ଷେପମାନ ନିଆଯାଇଛି । ସ୍ୱେଚ୍ଛାସେବୀ ଅନୁଷ୍ଠାନ ତଥା ଗ୍ରାମର ସାମୂହିକ ଉଦ୍ୟମକୁ ଉତ୍ସାହିତ କରିବା ପାଇଁ ପ୍ରକୃତି ମିତ୍ର ପୁରସ୍କାର ପ୍ରଦାନ କରାଯିବାର ବ୍ୟବସ୍ଥା କରାଯାଇଛି ।

ଉପରୋକ୍ତ କାର୍ଯ୍ୟକ୍ରମଗୁଡ଼ିକରେ ଅନୁପ୍ରାଣିତ ହୋଇ ଅଧିକରୁ ଅଧିକ ଜନସାଧାରଣ ପରିବେଶ ସଂରକ୍ଷଣ ନିମନ୍ତେ ସଚେତନ ହୋଇପାରିଛନ୍ତି । ପରିବେଶ ସୁରକ୍ଷା ସଂପର୍କରେ ଚେତନା ସୃଷ୍ଟି କରିବା ପାଇଁ ଚଳିତ ବର୍ଷରୁ ବ୍ୟକ୍ତିବିଶେଷଙ୍କୁ 'ପ୍ରକୃତି ବନ୍ଧୁ' ପୁରସ୍କାର ପ୍ରଦାନ କରାଯିବାର ବ୍ୟବସ୍ଥା କରାଯାଇଛି । ଏହା ବ୍ୟତୀତ ଜିଲ୍ଲାର ପରିବେଶ ସମିତିମାନଙ୍କୁ ଅଧିକ ସକ୍ରିୟ କରିବା ପାଇଁ ବିଭିନ୍ନ ପଦକ୍ଷେପମାନ ଗ୍ରହଣ କରାଯାଇଛି ।

---

## ପୁରୀ ମହାବିଦ୍ୟାଳୟ ଆଦିବାସୀ ଛାତ୍ରାବାସ

ପୁରୀ ସାମନ୍ତ ଚନ୍ଦ୍ର ଶେଖର ମହାବିଦ୍ୟାଳୟର ଆଦିବାସୀ ଛାତ୍ରାବାସର ଉନ୍ନତି ବିଧାନ ସହିତ ଛାତ୍ର ଛାତ୍ରୀମାନଙ୍କୁ ଲାଇବ୍ରେରୀ ସୁବିଧା ଯୋଗାଇ ଦିଆଯିବ ବୋଲି ହରିଜନ ଓ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା ପ୍ରକାଶ କରିଛନ୍ତି । ରାଜ୍ୟରେ ଆଦିବାସୀମାନଙ୍କ ମଧ୍ୟରେ ଶିକ୍ଷା ପ୍ରସାର ଓ ଶିକ୍ଷାର ଉନ୍ନତି ପାଇଁ ବିଭାଗୀୟ ଶିକ୍ଷାନୁଷ୍ଠାନ ବ୍ୟତୀତ ସାଧାରଣ ଶିକ୍ଷାନୁଷ୍ଠାନ ମାନଙ୍କରେ ପଢୁଥିବା ଆଦିବାସୀ ଛାତ୍ର ଛାତ୍ରୀଙ୍କ ପାଇଁ ବୃତ୍ତି ପ୍ରଦାନ, ଛାତ୍ରାବାସ ନିର୍ମାଣ, ଲାଇବ୍ରେରୀ ଓ କ୍ରୀଡ଼ାର ଉନ୍ନତି ପାଇଁ ଆର୍ଥିକ ସାହାଯ୍ୟ

ବ୍ୟବସ୍ଥା କରାଯାଉଥିବା ବିଷୟରେ ଆଦିବାସୀ କଲ୍ୟାଣ ମନ୍ତ୍ରୀ ବୁଝାଇଥିଲେ ।

ଆଦିବାସୀ ଛାତ୍ରାବାସର ବାର୍ଷିକ ଉତ୍ସବ ଗତ ୨୮ ତାରିଖ ଦିନ ମହାସମାରୋହରେ ପାଳିତ ହୋଇଥିଲା ଓ ମନ୍ତ୍ରୀ ଶ୍ରୀ ବେହେରା ପ୍ରଦୀପ ଜାଳି ଏହା ଉଦ୍‌ଘାଟନ କରିଥିଲେ । କଲେଜ ଅଧ୍ୟକ୍ଷ ଓ ଶ୍ରୀ ଚିତ୍ତରଂଜନ ମହାନ୍ତି ଏଥିରେ ସଭାପତିତ୍ୱ କରିଥିଲେ । ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର ଡେପୁଟି ରେଜିଷ୍ଟ୍ରାର ଶ୍ରୀ ପ୍ରମୋଦ ରଂଜନ ରାୟ ଏବଂ ବାଣୀ ବିହାର ଇଂରାଜୀ ଅଧ୍ୟାପକ ପ୍ରଫେସର ଗଣେଶ୍ୱର ମିଶ୍ର ସମ୍ମାନୀୟ ଅତିଥି ଭାବେ ଯୋଗ ଦେଇଥିଲେ । ଛାତ୍ରାବାସର ସାଧାରଣ ସଂପାଦକ ଶ୍ରୀ ପ୍ରଭାକର ନାୟକ ବିଭିନ୍ନ ଅଭାବ ଅସୁବିଧା ସଂପର୍କରେ ଏକ ଦାବୀ ପତ୍ର ମନ୍ତ୍ରୀଙ୍କୁ ପ୍ରଦାନ କରିଥିଲେ ।

## କୃଷିର ଉନ୍ନତି ପାଇଁ ଜଳସେଚନ ବ୍ୟବସ୍ଥା

କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ବେସିକ୍ ସାଇନ୍‌ସ ଓ ହ୍ୟୁମ୍ୟାନିଟିଜ୍ କଲେଜର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ କୃଷି ଓ ସମବାୟ ମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା ତାଙ୍କର ଅଭିଭାଷଣରେ ରାଜ୍ୟର ଅର୍ଥନୈତିକ ଉନ୍ନତି ଉଦ୍ଦେଶ୍ୟରେ କୃଷି କାର୍ଯ୍ୟକ୍ରମର ବିକାଶ ପାଇଁ ଜଳସେଚନ ବ୍ୟବସ୍ଥା ପ୍ରତି ଗୁରୁତ୍ୱ ଦିଆଯାଉଥିବା ବିଷୟରେ ଉଲ୍ଲେଖ କରିଥିଲେ ।

କଲେଜ ପରିସର ମଧ୍ୟରେ ଏକ ମନୋଜ୍ଞ ପରିବେଶରେ ଆୟୋଜିତ ବାର୍ଷିକ ଉତ୍ସବରେ କୁଳପତି ଶ୍ରୀ କେ. ରାମମୂର୍ତ୍ତି ସଭାପତିତ୍ୱ କରିଥିଲେ ଓ ଡିରେକ୍ଟର ଶ୍ରୀ ପି. ବି. ଦାସ ସ୍ୱାଗତ ଜଣାଇ ଅନୁଷ୍ଠାନର କାର୍ଯ୍ୟାବଳୀ ବିଷୟରେ ସୂଚନା ଦେଇଥିଲେ ।

ରାଜ୍ୟର ବିଭିନ୍ନ ସ୍ଥାନରେ ନିର୍ମିତ ଜଳସେଚନ ପ୍ରକଳ୍ପଗୁଡ଼ିକର କାର୍ଯ୍ୟକାରିତା ବିଷୟରେ ବୁଝାଇ ବହୁମାତ୍ରାରେ ଗଛ କାଟିବା ଓ ବ୍ୟାପକ ପୋଡୁଚାଷ ଦ୍ୱାରା ଜଙ୍ଗଲ ଅବକ୍ଷୟ ଘଟିବା ସହିତ ବର୍ଷାଭାବଜନିତ ଦୁର୍ବିପାକ କୃଷି ପ୍ରତି ବିପଦ ସୃଷ୍ଟି କରୁଛି ବୋଲି କୃଷିମନ୍ତ୍ରୀ ପ୍ରକାଶ କରିଥିଲେ । ଚଳିତ ବର୍ଷ କୋରାପୁଟ ଜିଲ୍ଲା କାଶୀପୁର ବ୍ଲକରେ ପ୍ରଥମ କରି ଲୋକମାନଙ୍କୁ ପୋଡୁଚାଷରୁ ନିବର୍ତ୍ତାଇ ସେମାନଙ୍କ ପାଇଁ ବିକଳ୍ପ ବ୍ୟବସ୍ଥା କରାଯିବାକୁ ଏକ ସ୍ୱତନ୍ତ୍ର ଯୋଜନା କାର୍ଯ୍ୟକାରୀ ହେବ ବୋଲି ସେ କହିଥିଲେ ।

ଛାତ୍ରଛାତ୍ରୀମାନଙ୍କୁ ଶୃଙ୍ଖଳିତ ଓ ଉଜ୍ଜ୍ୱଳ ଭବିଷ୍ୟତ ଜୀବନ ପାଇଁ ଉପଦେଶ ଦେଇ ଯୋଗ୍ୟତା ସଂପନ୍ନ ବ୍ୟକ୍ତିମାନଙ୍କର ଅନ୍ତର୍ନିହିତ ଶକ୍ତି ଓ ଦକ୍ଷତା ଦ୍ୱାରା ବିଭିନ୍ନ କ୍ଷେତ୍ରରେ ଉନ୍ନତି ସାଧିତ ହୋଇପାରିବ ବୋଲି କୃଷିମନ୍ତ୍ରୀ ଆଶା ପ୍ରକାଶ କରିଥିଲେ ।

କୁଳପତି ଶ୍ରୀ ରାମମୂର୍ତ୍ତି କଲେଜର ବିଭିନ୍ନ ବିଭାଗର କାର୍ଯ୍ୟ ସଂପର୍କରେ ଆଲୋଚନା କରି ଏହାର ଉନ୍ନତି ଦିଗରେ ବିଭିନ୍ନ ଆବଶ୍ୟକତା ବିଷୟରେ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

## ସେଚ ରାଷ୍ଟ୍ରମନ୍ତ୍ରୀଙ୍କ ସୁନ୍ଦର ଓ ଯୋଙ୍କ ସେଚ ପ୍ରକଳ୍ପ ପରିଦର୍ଶନ

ରାଜ୍ୟ ସେଚ ଓ ସୂଚନା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ କଳାହାଣ୍ଡି ଜିଲ୍ଲାରେ କାର୍ଯ୍ୟକାରୀ ହେଉଥିବା ଉପର ଯୋଂକ ଓ ସୁନ୍ଦର ମଧ୍ୟମ ଜଳସେଚନ ପ୍ରକଳ୍ପ ନିର୍ମାଣ କାର୍ଯ୍ୟର ଅଗ୍ରଗତି ଅନୁଧ୍ୟାନ କରି ଭୁବନେଶ୍ୱର ଫେରିଆସିଛନ୍ତି ।

ସୁନ୍ଦର ଯୋଜନାର ସ୍ପିଲ୍‌ୱେ ନିର୍ମାଣ କାର୍ଯ୍ୟ ଦେଖିବାଲାଗି ସେ ନିର୍ମାଣ ସ୍ଥଳକୁ ଏକ ଅତ୍ୟୁଚ୍ଚ ସିଡ଼ି ସାହାଯ୍ୟରେ ଉଠିଥିଲେ ଏବଂ ଆଗାମୀ ବର୍ଷା ଋତୁ ପୂର୍ବରୁ ନିର୍ମାଣ କାର୍ଯ୍ୟ ଶେଷ କରିବା ଲାଗି ଦାୟିତ୍ୱରେ ଥିବା ଯନ୍ତ୍ରୀମାନଂକୁ ନିର୍ଦ୍ଦେଶ ଦେଇଥିଲେ । ଏହି ଯୋଜନା ଲାଗି ଦଖଲ କରାଯାଇଥିବା କେତେକ ଜମିର କ୍ଷତିପୂରଣ ଏପର୍ଯ୍ୟନ୍ତ କେତେକ ଚାଷୀ ପାଇନଥିବା ଅଭିଯୋଗ ପାଇ ସ୍ଥାନୀୟ ଅନୁବିଭାଗୀୟ ଅଧିକାରୀଂକୁ ଏହାର ବିହିତ ପ୍ରତିକାର ଲାଗି ସେ ପରାମର୍ଶ ଦେଇଥିଲେ ।

କୋମନାଠାରେ ସେ ସ୍ଥାନୀୟ ଜନସାଧାରଣଂକ କେତେକ ଆପତ୍ତି ଅଭିଯୋଗ ଶୁଣିବା ପରେ ସଂପୃକ୍ତ ବିଭାଗୀୟ କର୍ମକର୍ତ୍ତାଂକୁ ତାହାର ନିରାକରଣ ଲାଗି ନିର୍ଦ୍ଦେଶ ଦେଇଥିଲେ । ନୂଆପଡ଼ା ସବ୍‌ଡିଭିଜନରେ ମରୁଡ଼ିଗ୍ରସ୍ତ ଅଂଚଳର ଲୋକଂକୁ କାମଧଂଦା ଯୋଗାଇବା ଲାଗି ସେ କୋଠାବାଡ଼ି ବିଭାଗ ନିର୍ବାହୀ ଯନ୍ତ୍ରୀଂକୁ ଆଗାମୀ ମାର୍ଚ୍ଚ ମାସ ଶେଷ ପୂର୍ବରୁ ରାସ୍ତା ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କରିବାପାଇଁ ଏବଂ ଯୋଙ୍କ ନଦୀ ଉପରେ ନିର୍ମାଣାଧୀନ ଥିବା ପୋଲ କାର୍ଯ୍ୟ ଶେଷ କରିବା ଲାଗି ନିର୍ଦ୍ଦେଶ ଦେଇଥିଲେ । ଆଗାମୀ ବର୍ଷା ଋତୁ ବେଳକୁ ଏହି ପୋଲ ଉପରେ ଯେପରି ଯାନବାହନ ଯାତାୟତ କରିପାରିବ, ସେଥିଲାଗି ଆଗୁଆ ପଦକ୍ଷେପ ନେବାପାଇଁ ସେ ସୂଚନା ଦେଇଥିଲେ ।

ଏହାପରେ ଶ୍ରୀ ସିଂହ ଯୋଂକ୍ କେନାଲ ନିର୍ମାଣ କାର୍ଯ୍ୟ ତଦାରଖ କରିବାଲାଗି ୧୫ କି: ମି: କେନାଲ ଅଂଚଳ ପରିଦର୍ଶନ କରିଥିଲେ ଏବଂ ଶ୍ରମିକମାନଂକୁ ଧାର୍ଯ୍ୟ ଦରରେ ମଜୁରୀ ଓ ସାପ୍ତାହିକ ସବେତନ ଛୁଟି ମିଳୁଛି କି ନାହିଁ, ପଚାରି ବୁଝିଥିଲେ ।

ସଂଧ୍ୟାରେ ସେ ନୂଆପଡ଼ାଠାରେ ସବ୍‌ଡିଭିଜନରେ କାର୍ଯ୍ୟକାରୀ ହେଉଥିବା ବିକାଶ କାର୍ଯ୍ୟକ୍ରମ ଓ ବିଂଶସୂତ୍ରୀ କାର୍ଯ୍ୟକ୍ରମର ସମୀକ୍ଷା କରିଥିଲେ । ପରେ ସେ ନୂଆପଡ଼ାସ୍ଥିତ ଜାତୀୟ ମହାବିଦ୍ୟାଳୟର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥିରୂପେ ଯୋଗଦେଇ କୃତୀ ଛାତ୍ରଛାତ୍ରୀଙ୍କ ମଧ୍ୟରେ ପୁରସ୍କାର ବଣ୍ଟନ କରିଥିଲେ ।

## ଶ୍ରୀମନ୍ଦିରରେ ଆଇନ ଶୃଙ୍ଖଳା ବ୍ୟବସ୍ଥାର ଉନ୍ନତି ତଥା ପ୍ରଶାସନିକ ଦକ୍ଷତା ବୃଦ୍ଧି ପାଇଁ ପଦକ୍ଷେପ

ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପରିସର ଭିତରେ ଓ ବାହାରେ ଆଇନ ଶୃଙ୍ଖଳା ବ୍ୟବସ୍ଥାର ଦୃଢ଼ୀକରଣ ତଥା ମନ୍ଦିରର ପ୍ରଶାସନିକ ଦକ୍ଷତା ବୃଦ୍ଧି ପାଇଁ ଆବଶ୍ୟକୀୟ ପଦକ୍ଷେପ ନିଆଯିବା ବିଷୟ ରାଜ୍ୟ ସରକାରଙ୍କର ସକ୍ରିୟ ବିଚାରାଧୀନ ଅଛି । ଗତ ଫେବୃୟାରୀ ୨୩ ତାରିଖରେ ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ବୈଠକରେ ଏ ସଂକ୍ରାନ୍ତରେ କେତେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କରାଯାଇଛି ।

ଶ୍ରୀମନ୍ଦିରରେ ଆଇନ ଶୃଙ୍ଖଳାର ସୁରକ୍ଷା ପାଇଁ ପୋଲିସ୍ କର୍ମଚାରୀ ସଂଖ୍ୟା ବୃଦ୍ଧି କରାଯିବା ସଙ୍ଗେ ସଙ୍ଗେ ସିଂହଦ୍ୱାର ନିକଟରେ ପୋଲିସ୍ ଆଉଟ୍ ପୋଷ୍ଟ ସ୍ଥାପନ, ବୟସାଧିକ୍ୟ ଯୋଗୁଁ

କର୍ମ ଦକ୍ଷତା ହରାଇଥିବା ଦରଜଂଦାରମାନଙ୍କ ସ୍ଥଳିରାଲ୍ପ ଅବସର ଦେବା, ପୋଲିସ୍ ବ୍ୟବସ୍ଥା ସଂପର୍କରେ ମନ୍ଦିର ମୁଖ୍ୟ ସ୍ଥାନଗୁଡ଼ିକରେ ନୋଟିସ୍ ବୋର୍ଡ ଲଗାଇବା ପ୍ରଭୃତି ବ୍ୟବସ୍ଥା ପ୍ରଦର୍ଶନ କରାଯିବ । ଯାତ୍ରୀମାନଙ୍କ ପ୍ରତି ଉତ୍ତମ ବ୍ୟବହାର ପ୍ରଦର୍ଶନ ତଥା ଯଥା ସମୟରେ ନୀତି ପରିପାଳନ ସଂକ୍ରାନ୍ତରେ ବ୍ୟବସ୍ଥା କରିବାକୁ ମୁଖ୍ୟ ସେବାୟତ-ମାନଙ୍କ ପକ୍ଷରୁ ଏକ କମିଟି ଗଠନ କରାଯାଇଛି । ଏହି କମିଟିକୁ ମନ୍ଦିର ପ୍ରଶାସନ ପକ୍ଷରୁ କର୍ମ-ପରିଚାଳନା ପାଇଁ ପୂର୍ଣ୍ଣ ସହଯୋଗ ଯୋଗାଇ ଦିଆଯିବ । ଯାତ୍ରୀ ଏବଂ ସେବାୟତ-ମାନଙ୍କ ମଧ୍ୟରେ ସୁସଂହତି ତଥା ଉପଯୁକ୍ତ ସମନ୍ୱୟ ସ୍ଥାପନ ପାଇଁ ମନ୍ଦିରରେ ଜଣେ ପର୍ଯ୍ୟଟକ ଅଧିକାରୀଙ୍କୁ ନିଯୁକ୍ତି ଦିଆଯିବ । ପ୍ରତିଷ୍ଠିତ ନୀତି ପାଳନ କମିଟି ଓ ପାଳିଆ କମିଟିକୁ ଅଧିକ କର୍ମଦକ୍ଷ କରି ଶୃଙ୍ଖଳିତ ନୀତି ପାଳନ ପାଇଁ ବ୍ୟବସ୍ଥା କରାଯିବ । ମନ୍ଦିର ପରିସର ମଧ୍ୟରେ ପ୍ରଶାସକଙ୍କର ଏକ କାର୍ଯ୍ୟାଳୟ ଖୋଲାଯିବ । ପ୍ରଶାସକ ନିଜେ ସନ୍ଧ୍ୟା ୬ଟାଠାରୁ ୯ଟା ପର୍ଯ୍ୟନ୍ତ ଏହି କାର୍ଯ୍ୟାଳୟରେ ଉପସ୍ଥିତ ରହିବା ସଙ୍ଗେ ସଙ୍ଗେ ମନ୍ଦିର ଖୋଲିଥିବା ସବୁ ସମୟରେ ଜଣେ ସହକାରୀ ପ୍ରଶାସକ ଏହି କାର୍ଯ୍ୟାଳୟରେ ଉପସ୍ଥିତ ରହି ଯାତ୍ରୀମାନଙ୍କୁ ଆବଶ୍ୟକୀୟ ସାହାଯ୍ୟ ଓ ସହଯୋଗ ଯୋଗାଇ ଦେବେ ।

ମନ୍ଦିର ପରିସରକୁ ପ୍ରତ୍ୟହ ନିୟମିତରୂପେ ନିର୍ମଳ କରାଯିବା ସଙ୍ଗେ ସଙ୍ଗେ ଏହାର ଚତୁଃପାର୍ଶ୍ୱରେ ଥିବା ରାସ୍ତା ପରିଷ୍କାର ରଖିବା, ଏହି ଅଞ୍ଚଳରୁ ଆବର୍ଜନା ତୁରନ୍ତ ଅପସାରଣ କରିବା, ସିଂହଦ୍ୱାର ନିକଟରେ କ୍ୟାବିନ୍ ପାଇଁ ଲାଇସେନ୍ସ ନଦେବା, ଉତ୍ତର ଦ୍ୱାର ନିକଟସ୍ଥ ପରିବା ବଜାର ସ୍ଥାନାନ୍ତର କରିବା ପ୍ରଭୃତି ପାଇଁ ପଦକ୍ଷେପ ନେବାକୁ ନିଷ୍ପତ୍ତି ନିଆଯାଇଛି ।

ଶ୍ରୀ ମନ୍ଦିରର ଆର୍ଥିକ ଅଭିବୃଦ୍ଧି ପାଇଁ ଆଉ ଛଅଟି ଅଧିକ ସ୍ଥାନରେ ହୁଣ୍ଡି ଓ ଦାନ ଆଦାୟ ପାତ୍ର ସ୍ଥାପନ କରାଯିବ ଏବଂ ଏ ସମ୍ପର୍କରେ ମନ୍ଦିରର ମୁଖ୍ୟ ସ୍ଥାନମାନଙ୍କରେ ଇଂରାଜୀ ଓ ବିଭିନ୍ନ ଭାରତୀୟ ଭାଷାରେ ପ୍ରଦର୍ଶନ ବୋର୍ଡ ମାଧ୍ୟମରେ ଯାତ୍ରୀମାନଙ୍କୁ ଜଣାଇ ଦିଆଯିବ । ପରମାଣିକ ଦର୍ଶନ ପାଇଁ ଟିକେଟ୍ ବିକ୍ରୀ ବ୍ୟବସ୍ଥାକୁ ଅଧିକ ଶୃଙ୍ଖଳିତ କରାଯିବ । ଆଟିକା ବ୍ୟବସ୍ଥା ମାଧ୍ୟମରେ ସଂଗୃହୀତ ଅର୍ଥ ମନ୍ଦିର ପାଣ୍ଠିକୁ ଆସୁ ନଥିବା ଦୃଷ୍ଟିରୁ ଦରମା ବା କମିଶନ୍ ବ୍ୟବସ୍ଥା ମାଧ୍ୟମରେ କେତେକ ପଣ୍ଡାଙ୍କୁ ମନ୍ଦିର ପ୍ରଶାସନ ପକ୍ଷରୁ ନିଯୁକ୍ତି ଦିଆଯିବ । ଏହି ବ୍ୟବସ୍ଥାକୁ ସୁନିୟନ୍ତ୍ରିତ କରିବା ଦିଗରେ ପଦକ୍ଷେପ ନିଆଯିବ । ଯାତ୍ରୀମାନେ ଏହି ନୂତନ ପଦ୍ଧତି ମାଧ୍ୟମରେ ଶ୍ରୀ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଦାନ ଦେବା ବ୍ୟବସ୍ଥା ସଂପର୍କରେ ସବିଶେଷ ତଥ୍ୟ ସଂଗ୍ରହ କରାଯିବା ସଙ୍ଗେ ସଙ୍ଗେ ପରିବହନ ବ୍ୟବସ୍ଥା ତଥା ଅନ୍ୟାନ୍ୟ ଆୟକାରୀ ପନ୍ଥା ମାଧ୍ୟମରେ ମନ୍ଦିରର ଆର୍ଥିକ ଅବସ୍ଥାର ଅଭିବୃଦ୍ଧି ଦିଗରେ ଉଦ୍ୟମ କରାଯିବ ।

ଏହି ଆଲୋଚନା ସମୟରେ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ରଥ, ସ୍ୱରାଷ୍ଟ୍ର ସଚିବ ଶ୍ରୀ ବିନୋଦ ଝା, ବିଧି ବିଭାଗ ଏବଂ ଅର୍ଥ ବିଭାଗର ଅତିରିକ୍ତ ଶାସନ ସଚିବ, ପୁରୀ ଜିଲାପାଳ, ମନ୍ଦିର ପ୍ରଶାସକ ପ୍ରମୁଖ ଉପସ୍ଥିତ ଥିଲେ । ଶ୍ରୀ ଜଗନ୍ନାଥ ସବୁ ଧର୍ମ ଏବଂ ବିଶ୍ୱାସ ତଥା ଓଡ଼ିଶାର ସଂସ୍କୃତିର ପ୍ରତୀକ ହୋଇଥିବା ଦୃଷ୍ଟିରୁ ଶ୍ରୀ ମନ୍ଦିରର ଶ୍ରୀବୃଦ୍ଧି ପାଇଁ ପ୍ରଶାସନ ଓ ଜନସାଧାରଣଙ୍କର ଉପଯୁକ୍ତ ସମନ୍ୱୟ ସ୍ଥାପନ ବିଷୟରେ ମୁଖ୍ୟ ସଚିବ ଗୁରୁତ୍ୱ ଆରୋପ କରିଥିଲେ ।

## ଛାତ୍ରଛାତ୍ରୀଙ୍କ ଅନ୍ତର୍ନିହିତ ସୁଗୁଣାବଳୀର ବିକାଶଲାଗି ଉଦ୍ୟମ ଦରକାର

ଛାତ୍ର ଛାତ୍ରୀମାନଙ୍କପାଇଁ କେବଳ ପ୍ରମାଣ ପତ୍ର ହାସଲର ଲକ୍ଷ୍ୟ ରଖି ବହୁ ସଂଖ୍ୟକ ଶିକ୍ଷାନୁଷ୍ଠାନ ସ୍ଥାପନ କରିଦେଲେ ଶିକ୍ଷାର ମାନବୃଦ୍ଧି ହେବନାହିଁ ବରଂ ସେମାନଙ୍କୁ ଭବିଷ୍ୟତରେ ସୁଶୃଙ୍ଖଳ, ଉତ୍ତମ ଓ ଚରିତ୍ରବାନ ନାଗରିକ ଭାବରେ ଗଢ଼ିତୋଳିବାରେ ପ୍ରତ୍ୟେକ ଶିକ୍ଷକ ଏବଂ ଅଭିଭାବକ ଯତ୍ନବାନ ହେବା ଆବଶ୍ୟକ ବୋଲି ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ହରିହର କରଣ ମତବ୍ୟକ୍ତ କରିଛନ୍ତି । ଗଣିଆ ବ୍ଲକ୍ ଅନ୍ତର୍ଗତ କିଶୋର ପ୍ରସାଦ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ବାର୍ଷିକ ପୁରସ୍କାର ବିତରଣୀ ଉତ୍ସବରେ ଉଦ୍‌ବୋଧନ ଦେଇ ଶ୍ରୀ କରଣ ଛୋଟ ଛୋଟ ବିଦ୍ୟାର୍ଥୀ-ମାନଙ୍କ ଅନ୍ତର୍ନିହିତ ଉତ୍ତମ ଗୁଣର ଅନୁଧ୍ୟାନ କରି ତାକୁ ସେହି କ୍ଷେତ୍ରରେ ଉତ୍ସାହିତ କରାଗଲେ ତାର ଭବିଷ୍ୟତ ଜୀବନ ନିଶ୍ଚିତ ଭାବେ ଉନ୍ନତ ମାର୍ଗରେ ପରିଚାଳିତ ହେବ ବୋଲି କହିଥିଲେ । କୋମଳମତି ବିଦ୍ୟାର୍ଥୀମାନଙ୍କୁ କେବଳ ବାର୍ଷିକ ପାଠ୍ୟ ଖସଡ଼ା ଭିତରେ ସୀମିତ ନ ରଖି ସେମାନଙ୍କ ପାଇଁ ଉତ୍ତମ ଚରିତ୍ରବତ୍ତାର ଉଦାହରଣ ଦେବା ପାଇଁ ସେ ଉପସ୍ଥିତ ଅଭିଭାବକ ଓ ଶିକ୍ଷକମାନଙ୍କୁ ପରାମର୍ଶ ଦେଇଥିଲେ । ପ୍ରତ୍ୟେକ ଶିକ୍ଷକ ଓ ଅଭିଭାବକ ସେମାନଙ୍କର ଦୈନନ୍ଦିନ କର୍ମମୟ ଜୀବନରୁ କିଛିସମୟ ସେମାନଙ୍କର ପିଲାମାନଙ୍କ ପାଇଁ ନିୟୋଜିତ କରିବା ପାଇଁ ମଧ୍ୟ ସେ ପରାମର୍ଶ ଦେଇଥିଲେ । ଆଜିର ବୈଜ୍ଞାନିକ ଯୁଗରେ ବିଭିନ୍ନ କ୍ଷେତ୍ରରେ ହେଉଥିବା ପ୍ରଗତି ସହିତ ବେଦ, ବେଦାନ୍ତ, ପୁରାଣଶାସ୍ତ୍ରଗୁଡ଼ିକରେ ଆଦର୍ଶର ଅନୁସରଣ କରିବା ଉପରେ ମନ୍ତ୍ରୀ ଗୁରୁତ୍ୱ ଆରୋପ କରିଥିଲେ ।

ସଭା ଶେଷରେ ବିଭିନ୍ନ କ୍ଷେତ୍ରରେ କୃତି ଛାତ୍ରଛାତ୍ରୀମାନଙ୍କୁ ଯୋଗାଣ ମନ୍ତ୍ରୀ ପୁରସ୍କାର ବଣ୍ଟନ କରିଥିଲେ । ଏହି ଉତ୍ସବରେ ନୟାଗଡ଼ ଅନୁବିଭାଗୀୟ ଅଧିକାରୀ ଶ୍ରୀ ଯତିନ୍ଦ୍ରନାଥ ଖୁଣ୍ଟିଆ ସଭାପତିତ୍ୱ କରିଥିଲେ ଏବଂ ବହୁପଦସ୍ଥ ସରକାରୀ କର୍ମଚାରୀଙ୍କ ସହିତ ଗଣିଆ ବ୍ଲକ୍ ଚେୟାରମ୍ୟାନ ଓ ସରପଞ୍ଚମାନେ ଯୋଗ ଦେଇଥିଲେ ।

## ରାଜ୍ୟରୁ ଦାରିଦ୍ର୍ୟ ଓ ଅଶିକ୍ଷା ଦୂର କରିବା ଲାଗି ଲାୟନ୍ସ କ୍ଲବ

ରାଜ୍ୟରୁ ଦାରିଦ୍ର୍ୟ ଓ ଅଶିକ୍ଷା ଦୂରୀକରଣ ଲାଗି ସରକାରଙ୍କ ଉଦ୍ୟମ ସହିତ ଲାୟନ୍ସ କ୍ଲବ୍‌ଗୁଡ଼ିକ ମଧ୍ୟ ଆନୁଷଙ୍ଗିକ କାର୍ଯ୍ୟକ୍ରମ ଗ୍ରହଣ କରିବା ଆବଶ୍ୟକ । ଭାଉରକେଲାଠାରେ ଲାୟନ୍ସ କ୍ଲବ୍-୩୩୨୨ ଜିଲ୍ଲାର ନବମ ବାର୍ଷିକ ସମ୍ମିଳନୀ ଉଦ୍‌ଘାଟନ କରି ରାଜ୍ୟ ସୂଚନା ଓ ସେଚ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ କହିଲେ ଯେ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ବିଭିନ୍ନ କାର୍ଯ୍ୟକ୍ରମ ଦେଶରେ ସଂହତି ଓ ପରିବେଶ ସୁରକ୍ଷା ଦିଗରେ ସହାୟକ ହେବା ଉଚିତ । ଦେଶର ବିଭିନ୍ନ ଭାଗରେ

ପରିସ୍ଥିତିକୁ ନେଇ ଭିନ୍ନଭିନ୍ନ ସମସ୍ୟା ଦେଖା ଦେଉଛି । ଏସବୁ ସମସ୍ୟାର ସମାଧାନ ଲାଗି ଲାୟନ୍ସ କ୍ଲବ୍‌ଗୁଡ଼ିକ ସ୍ଥାନୀୟ ପରିସ୍ଥିତିକୁ ଆଖିଆଗରେ ରଖି ସେବା କାର୍ଯ୍ୟକ୍ରମ ନିର୍ଦ୍ଧାରଣ କରିବା ଲାଗି ଶ୍ରୀ ସିଂହ ପରାମର୍ଶ ଦେଇଥିଲେ । ବିଶେଷ କରି ଲାୟନ୍ସ କ୍ଲବ୍‌ରେ ଯେଉଁ ସବୁ ବୃତ୍ତି ଅବଲମ୍ବନ କରିଥିବା ସଭ୍ୟ ଅଛନ୍ତି ସେମାନେ ସ୍ୱ ସ୍ୱ କର୍ମ କ୍ଷେତ୍ରରେ ରହି ଅସହାୟ ଲୋକଙ୍କସେବା କରିବା ଦ୍ୱାରା ଲୋକଙ୍କର ଅଧିକ ଉପକାର କରିପାରିବେ ବୋଲି ସେ ମତ ଦେଇଥିଲେ । ଯେ କୌଣସି ଲୋକକଲ୍ୟାଣ କାର୍ଯ୍ୟକ୍ରମରେ ସରକାରଙ୍କ ସମର୍ଥନ ଓ ସାହାଯ୍ୟ ମିଳିବାରେ କୌଣସି ଅସୁବିଧା ରହିବନାହିଁ ବୋଲି ସେ ପ୍ରକାଶ କରିଥିଲେ । ଏହି ଉତ୍ସବରେ ଗଭର୍ଣ୍ଣର ଡ଼କ୍ଟର ବି. ବି. ସାହା ଅଧ୍ୟକ୍ଷତା କରିଥିଲେ ଏବଂ ରାଉରକେଲା ଲାୟନ୍ସ କ୍ଲବ ସଭାପତି ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ ।

## ରାଜ୍ୟସ୍ତରୀୟ ବିଜ୍ଞାନ ମେଳା

ରାଜ୍ୟ ଶିକ୍ଷା, ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ବିଜ୍ଞାନ ବିଭାଗ ଆନୁକୂଲ୍ୟରେ ଏ ବର୍ଷର ରାଜ୍ୟସ୍ତରୀୟ ବିଜ୍ଞାନ ମେଳା କଳାହାଣ୍ଡି ଜିଲ୍ଲାର କେସିଙ୍ଗା ବିଦ୍ୟାପୀଠଠାରେ ମାର୍ଚ୍ଚ ପହିଲାରୁ ୪ତାରିଖ ମଧ୍ୟରେ ଅନୁଷ୍ଠିତ ହୋଇଯାଇଛି । ଏ ବର୍ଷ ବିଜ୍ଞାନ ପ୍ରଦର୍ଶନୀର ବିଷୟବସ୍ତୁ "ଜଳ ଓ ମାନବ" ଜାତୀୟ ସ୍ତରରେ ସ୍ଥିରୀକୃତ ହୋଇଥିଲା । ଓଡ଼ିଶାର ୧୫ଟି ଶିକ୍ଷା ମଣ୍ଡଳରୁ ପୂର୍ବରୁ ମଣ୍ଡଳ ସ୍ତରରେ ପ୍ରଦର୍ଶିତ ତଥା ପୁରସ୍କୃତ ପ୍ରକଳ୍ପ ମଧ୍ୟରୁ ୯୫ଟି ପ୍ରକଳ୍ପ ଏହି ପ୍ରଦର୍ଶନୀରେ ଅଂଶ ଗ୍ରହଣ କରିଥିଲେ । ରାଜ୍ୟର ବିଭିନ୍ନ ବିଦ୍ୟାଳୟରୁ ୯୫ ଜଣ ଛାତ୍ର ଛାତ୍ରୀ ଏବଂ ୭୦ ଜଣ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଦ୍ୱାରା ପ୍ରଦର୍ଶିତ ଏହି ୯୫ଟି ପ୍ରକଳ୍ପକୁ ଜିଲ୍ଲାର ପ୍ରାୟ ୬୦ଟି ବିଦ୍ୟାଳୟର ଛାତ୍ର ଛାତ୍ରୀ, ଶିକ୍ଷକ ତଥା ଜନସାଧାରଣ ଦେଖିଥିଲେ ।

ଏହି ପ୍ରଦର୍ଶନୀକୁ ସୂଚନା ଓ ଲୋକ ସଂପର୍କ ଏବଂ ଖେଳ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ଉଦ୍‌ଘାଟନ କରି କହିଲେ ଯେ ଆମ ରାଜ୍ୟର ପିଲାମାନଙ୍କ ଦ୍ୱାରା ନିର୍ମିତ 'ଜଳ ଓ ମାନବ' ସମ୍ବନ୍ଧୀୟ ପ୍ରକଳ୍ପ ଚଳିତ ବର୍ଷର ରାଜ୍ୟର ମରୁଡ଼ି ପରିସ୍ଥିତିରେ କିପରି କୃଷି କାର୍ଯ୍ୟ ପାଇଁ ସହାୟକ ତାହା ବାସ୍ତବିକ ପ୍ରଶଂସନୀୟ । ଏହି ଉତ୍ସବରେ ରାଜ୍ୟ ଶିକ୍ଷା, ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ଉପ ନିର୍ଦ୍ଦେଶକ ଶ୍ରୀ ରମାନାଥ ଗ୍ରହରାଜ ପୌରୋହିତ୍ୟ କରିଥିଲେ । ବିଜ୍ଞାନ ବିଭାଗ ମୁଖ୍ୟ ଡଃ ନରେନ୍ଦ୍ର ପ୍ରସାଦ ଦାସ ରାଜ୍ୟର ବିଜ୍ଞାନ ପ୍ରଦର୍ଶନୀ ସଂପର୍କୀୟ ବିବରଣୀ ପାଠ କରିଥିଲେ ।

ରାଜ୍ୟ ବିଜ୍ଞାନ ମେଳାରେ ଅଂଶ ଗ୍ରହଣକାରୀ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ "ବିଜ୍ଞାନ କ୍ୱିଜ୍" ପ୍ରତିଯୋଗିତା, ବିଜ୍ଞାନ ରଚନା ପ୍ରତିଯୋଗିତା, ପରିବେଶ ସମ୍ବନ୍ଧୀୟ ସ୍ଲୋଗାନ ପ୍ରତିଯୋଗିତାର ମଧ୍ୟ ଆୟୋଜନ କରାଯାଇ ଶ୍ରେଷ୍ଠ ପ୍ରତିଯୋଗୀମାନଙ୍କୁ ପୁରସ୍କୃତ କରାଯାଇଥିଲା । ଏହାଛଡ଼ା ଅଂଶ ଗ୍ରହଣକାରୀ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ପ୍ରତିଦିନ ସନ୍ଧ୍ୟାରେ ବିଜ୍ଞାନ ସମ୍ବନ୍ଧୀୟ 'ମନୋରଞ୍ଜନ କାର୍ଯ୍ୟକ୍ରମ'ର ବ୍ୟବସ୍ଥା କରାଯାଇଥିଲା ।

ଏହି ପ୍ରଦର୍ଶନୀକୁ ୪ ତାରିଖ ଦିନ କୃଷି ଓ ସମବାୟ ଏବଂ ହରିଜନ ଓ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରାଙ୍କ ଦ୍ୱାରା ଉଦ୍‌ଯାପିତ ହୋଇଥିଲା । ପ୍ରଦର୍ଶନୀରେ ଶ୍ରେଷ୍ଠ ବିବେଚିତ ଛାତ୍ରଛାତ୍ରୀମାନଙ୍କୁ ମନ୍ତ୍ରୀ ଶ୍ରୀ ବେହେରା ପୁରସ୍କାର ଓ ବିଭିନ୍ନ ଟ୍ରଫି ବିତରଣ କରିଥିଲେ । ଚଳିତ ବର୍ଷ ସମ୍ବଲପୁରର ଲେଡ଼ି ଲୁଇସ୍ ବାଳିକା ହାଇସ୍କୁଲ ଛାତ୍ରୀ କୁମାରୀ ମଧୁସ୍ମିତା ମିଶ୍ର ତାଙ୍କର ପ୍ରକଳ୍ପ 'ସମୁଦ୍ର ଜେଉରୁ ବିଦ୍ୟୁତ୍' ପାଇଁ ଏବଂ କାଂସବାହାଲ ମଣ୍ଟପୋର୍ଟ ସ୍କୁଲର ଛାତ୍ରୀ କୁମାରୀ ଅଦିତି କର ତାଙ୍କର ପ୍ରକଳ୍ପ 'ଜଳ ଦ୍ୱାରା ଲିଫ୍ଟ ଚାଳନା' ପାଇଁ ଶ୍ରେଷ୍ଠ ବିବେଚିତ ହୋଇ ଲାରସେନ ଓ ଟ୍ୟୁବ୍ରୋ ବିଜ୍ଞାନ ବୃତ୍ତି (ମାସିକ ୬୦ ଟଙ୍କା ହିସାବରେ ଏକ ବର୍ଷ ପାଇଁ ) ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲେ । ଏହା ବ୍ୟତୀତ ୧୦ଟି ଶ୍ରେଷ୍ଠ ପ୍ରକଳ୍ପକୁ ରାଜ୍ୟ ସରକାରଙ୍କ ବିଜ୍ଞାନ, ବୈଷୟିକ ଓ ପରିବେଶ ବିଭାଗ ତରଫରୁ ୧୦୦ ଟଙ୍କା ଲେଖାଏଁ ପୁରସ୍କାର ଦିଆଯାଇଥିଲା । ଏ ବର୍ଷ ସମୁଦାୟ ୧୪ଟି ଟ୍ରଫି ରାଜ୍ୟ ସ୍ତରରେ ଅଂଶ ଗ୍ରହଣକାରୀ ଛାତ୍ର ଛାତ୍ରୀ, ଶିକ୍ଷକ ତଥା ଶିକ୍ଷୟିତ୍ରୀଙ୍କୁ କୃଷିମନ୍ତ୍ରୀ ଶ୍ରୀ ବେହେରା ପ୍ରଦାନ କରିଥିଲେ ।

## କେନ୍ଦ୍ରୀୟ ମରୁଡ଼ି ସାହାଯ୍ୟ ଅର୍ଥ ବ୍ୟୟ ସମ୍ପର୍କୀୟ ସମୀକ୍ଷା

ରାଜ୍ୟରେ ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ କେନ୍ଦ୍ର ସରକାରଙ୍କଠାରୁ ମିଳିଥିବା ଅର୍ଥର ବିନିଯୋଗ ସଂପର୍କୀୟ ଏକ ସମୀକ୍ଷା ବୈଠକ ସଚିବାଳୟଠାରେ ରାଜସ୍ୱ, ଅର୍ଥ ଓ ଆଇନ ମନ୍ତ୍ରୀ ଶ୍ରୀ ଯୁଗଳ କିଶୋର ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଯାଇଛି ।

ଏହି ବୈଠକରେ ଜଳସେଚନ ଓ ବିଦ୍ୟୁତ ମନ୍ତ୍ରୀ ସେଖ୍ ମତଲୁବ୍ ଅଲ୍ଲୀ ସଂସ୍କୃତି, ପର୍ଯ୍ୟଟନ ଓ ଯୋଜନା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଶରତ ରାଉତ, ଯୋଜନା ବୋର୍ଡ ସଭ୍ୟ ଶ୍ରୀ ପ୍ରହଲ୍ଲାଦ ମଲ୍ଲିକ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

ସମୀକ୍ଷାରୁ ପ୍ରକାଶ ଯେ ଉକ୍ତ ଅର୍ଥର ପାନୀୟ ଜଳ ଯୋଗାଣ ପାଇଁ ସହର ଓ ଗ୍ରାମାଞ୍ଚଳରେ ନଳକୂପ, ରିଗ୍ କିଣିବା ପାଇଁ ନଗର ଉନ୍ନୟନ ବିଭାଗକୁ ୪ କୋଟି ୨୮ ଲକ୍ଷ ଟଙ୍କା, କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ବିଭିନ୍ନ କୃଷି ସାମଗ୍ରୀ ପାଇଁ ରିହାତି ପ୍ରଦାନ ଏବଂ ସ୍ୱଳ୍ପ ମିଆଦୀ ଋଣକୁ ମଧ୍ୟମ ମିଆଦି ଋଣରେ ପରିଣତ କରିବା ପାଇଁ କୃଷି ଓ ସମବାୟ ବିଭାଗକୁ ୮ କୋଟି ୪୭ ହଜାର ଟଙ୍କା, ଶ୍ରମ ଭିତ୍ତିକ କାର୍ଯ୍ୟକ୍ରମ ମାଧ୍ୟମରେ କାମଧନ୍ଦା ସୃଷ୍ଟି ପାଇଁ ଜଳସେଚନ ଓ ବିଦ୍ୟୁତ୍ ବିଭାଗକୁ ୧୪ କୋଟି ୫୦ ଲକ୍ଷ ଟଙ୍କା, ରାଜସ୍ୱ ବିଭାଗକୁ ଏଥିପାଇଁ ୧୭ କୋଟି ୫୦ ଲକ୍ଷ ଟଙ୍କା ଏବଂ ସ୍ୱତନ୍ତ୍ର ପୁଷ୍ଟିକର ଖାଦ୍ୟ କାର୍ଯ୍ୟକ୍ରମରେ ରାଜସ୍ୱ ବିଭାଗକୁ ୩ କୋଟି ୬୧ ଲକ୍ଷ ଟଙ୍କା ଦିଆଯାଇଛି । ଏହା ବ୍ୟତୀତ ଜଳସେଚନ ଓ ବିଦ୍ୟୁତ୍ ବିଭାଗକୁ କେତେକ ନିର୍ଦ୍ଦିଷ୍ଟ ପ୍ରକଳ୍ପ ପାଇଁ ଶ୍ରମ ଭିତ୍ତିକ କାର୍ଯ୍ୟ ସକାଶେ କେନ୍ଦ୍ର ସରକାରଙ୍କ ତରଫରୁ ୧୧ କୋଟି ଟଙ୍କା ମିଳିଛି ।

ଉକ୍ତ ବୈଠକରେ ଅନ୍ୟମାନଙ୍କ ସମେତ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ରଥ, ଅତିରିକ୍ତ ଉନ୍ନୟନ କମିଶନର ଶ୍ରୀ ଏସ୍. ସୁନ୍ଦର ରାଜନ୍, ରାଜସ୍ୱ ବିଭାଗ ଶାସନ ସଚିବ ଶ୍ରୀ ଭାସ୍କର ପଟ୍ଟନାୟକ, ନଗର ଉନ୍ନୟନ ବିଭାଗ ଶାସନ ସଚିବ ଶ୍ରୀ ପ୍ରଦୀପ ମହାନ୍ତି, କୃଷି ଓ ସମବାୟ ବିଭାଗ ଶାସନ ସଚିବ ଶ୍ରୀ ବର୍ମା, ଅର୍ଥ ବିଭାଗ ଶାସନ ସଚିବ ଶ୍ରୀ ରବିନାରାୟଣ ଦାସଙ୍କ ସମେତ ପୂର୍ତ୍ତ ବିଭାଗ ଶାସନ ସଚିବ, ଜଳସେଚନ ବିଭାଗ ଅତିରିକ୍ତ ଶାସନ ସଚିବ ପ୍ରମୁଖ ସଂପୃକ୍ତ ବିଭାଗୀୟ ଉଚ୍ଚ କର୍ମକର୍ତ୍ତାମାନେ ଯୋଗଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ଆର୍ଥିକ ଦୂରବସ୍ଥା ସୁଧୁରୁଛି

ସେକ୍ ଅଜିଜ୍ କୁରେଇସିଂଙ୍କ ଘର ମୟୂରଭଞ୍ଜ ଜିଲ୍ଲା ରାଇରଙ୍ଗପୁର ବ୍ଲକର କୁଲେଇଣୀଜା ଗାଁରେ । ଜମିଜମା ସେମିତି କିଛି ନାହିଁ । ଗାଁ ହାଟମାନଙ୍କ ଛତା ଓ ଟର୍ଚ୍ଚଲାଇଟ୍ ମରାମତି ଭଳି ଛୋଟ ବେପାର ଥିଲା ତାଙ୍କର ରୋଜଗାର ବାଟ । ସେଥିରୁ ଯାହା ଆସୁଥିଲା, ସଂସାର ଚଳିବାକୁ ନିଅଣ୍ଟ । ହାତରେ ପୁଞ୍ଜି ରହିଲେ ସିନା କିଏ ଗୋଟିଏ ମନଲାଖି ଦୋକାନଟିଏ କରି ଥାନ୍ତେ । ମନର ଆଶାକୁ ମନରେ ଚାପି ନିଜର ଫନ୍ଦି ଫିକର କରିବାରେ ଲାଗିଥାନ୍ତି ସେକ୍ ଅଜିଜ୍ ।

ଏତିକିବେଳେ ନୂଆ ଆଶା ଦେଖାଦେଲା । ଗ୍ରାମଉନ୍ନୟନ କାର୍ଯ୍ୟକ୍ରମ ତାଙ୍କ ଭାଗ୍ୟର ସାଥୀ ହେଲା । ଗତ ୧୯୮୪-୮୫ ବର୍ଷରେ ତାଙ୍କୁ ଏହି ଯୋଜନାର ପରିସର ଭୁକ୍ତ କରାଯାଇ ପ୍ରଥମ ଦଫାରେ ମନୋହରୀ ଦୋକାନଟିଏ କରିବା ଲାଗି ୩୦୦୦ ଟଙ୍କା ଋଣ ଦିଆଗଲା । ମନୋହରୀ ଦୋକାନଟିଏ କରିବା ଫଳରେ ତାଙ୍କର ଆୟ ପରିମାଣ ଜମିଯାଇଛି । ଏଥିପୂର୍ବରୁ ସେ ବର୍ଷକୁ ୨୫୦୦ ଟଙ୍କା ରୋଜଗାର କରୁଥିବା ବେଳେ ବର୍ତ୍ତମାନ ହାରାହାରି ୫୪୦୦ ଟଙ୍କା ଉପାର୍ଜ୍ଜନ କରୁଛନ୍ତି । ଆୟର ପରିମାଣ ସିନା ବୃଦ୍ଧି ହେଲା । କିନ୍ତୁ ପରିବାରର ଦୁଃଖ ଘୁଞ୍ଚିନ ନାହିଁ । ଦୋକାଟି ଆଉ ଟିକିଏ ବଢ଼ିଥିଲେ, ଆୟ ଅଧିକ ହୁଅନ୍ତା ଅଭାବ ମେଣ୍ଟିଯାଆନ୍ତା । ସବୁକିଛି ସମାଧାନ ହୋଇଥାନ୍ତା ।

ଋଣଟଙ୍କା ଶୁଝି ସାରିଥିଲେ । ଦୋହରା ସାହାଯ୍ୟ ନେବାକୁ ଦରଖାସ୍ତ କଲେ ସେ । ମଞ୍ଜୁର ହେଲା । ଅପାତତଃ ତାଙ୍କର ମନବାଞ୍ଛା ପୂର୍ଣ୍ଣ ହୋଇଛି । କ୍ରମଶଃ ଆୟ ବଢ଼ିଛି, ଘରର ଦୁରବସ୍ଥା ମଧ୍ୟ ସୁଧୁରିବାରେ ଲାଗିଛି । ଋଣ ଟଙ୍କା କିସ୍ତି ମୁତାବକ ଶୁଝୁଛନ୍ତି ।

## ପୂର୍ବଭାରତୀୟ ବିଜ୍ଞାନ ମେଳାରେ ଓଡ଼ିଶାର ଛାତ୍ରଛାତ୍ରୀ ପୁରସ୍କୃତ

ପୂର୍ବଭାରତୀୟ ବିହାର ରାଜ୍ୟ ପାଟନାସ୍ଥିତ 'ମିଲର ସ୍କୁଲ' ଠାରେ ବିଜ୍ଞାନମେଳାରେ ଓଡ଼ିଶାର ବିଭିନ୍ନ ଶିକ୍ଷାନୁଷ୍ଠାନରୁ ସମୁଦାୟ ୧୧ଜଣ ଛାତ୍ରଛାତ୍ରୀ ଓ ୯ଜଣ ଶିକ୍ଷକ ଶିକ୍ଷୟତ୍ରୀ ଯୋଗଦେଇଥିଲେ । ବିହାର ରାଜ୍ୟ ଶିକ୍ଷା ଗବେଷଣା ତଥା ପ୍ରଶିକ୍ଷଣ ପରିଷଦ ଏବଂ ଜାତୀୟ ବିଜ୍ଞାନ ସଂଗ୍ରହାଳୟ ପରିଷଦଙ୍କ ମିଳିତ ଉଦ୍ୟମରେ ଆୟୋଜିତ ଏହି ବିଜ୍ଞାନ ମେଳାରେ ଓଡ଼ିଶା ସମେତ ୧୧ଟି ପୂର୍ବାଂଚଳ ରାଜ୍ୟର ସ୍କୁଲ ଛାତ୍ରଛାତ୍ରୀମାନେ ଯୋଗଦେଇଥିଲେ । ଏହି ମେଳାରେ ଓଡ଼ିଶାର ୧୧ଟି ବିଜ୍ଞାନ ପ୍ରକଳ୍ପ ସମେତ ସମୁଦାୟ ୧୭୫ଟି ପ୍ରକଳ୍ପ ପ୍ରଦର୍ଶିତ ହୋଇଥିଲା ।

ଓଡ଼ିଶାର କାଂଶବାହାଲସ୍ଥ ମଣ୍ଟଫୋର୍ଟ ସ୍କୁଲର ଛାତ୍ରୀ କୁମାରୀ ଅଦିତି କରଙ୍କ ବିଜ୍ଞାନ ପ୍ରକଳ୍ପ ସର୍ବଶ୍ରେଷ୍ଠ ପ୍ରକଳ୍ପରୂପେ ଯୋଗ୍ୟ ବିବେଚିତ ହୋଇଥିବାରୁ ସେ ମାସିକ ୧୫୦ଟଙ୍କା ହିସାବରେ ୧ବର୍ଷପାଇଁ ବୃତ୍ତି ପାଉଛନ୍ତି । ।ସେହିପରି ରାଜ୍ୟର ପ୍ରଥମ ଶ୍ରେଷ୍ଠ ପ୍ରକଳ୍ପ ପ୍ରଦର୍ଶନପାଇଁ ଢେଙ୍କାନାଳ ଏଲ୍. ଏମ୍. ଉଚ୍ଚ ବିଦ୍ୟାଳୟର ଛାତ୍ର ପ୍ରିୟଦର୍ଶୀ ମାତୃପ୍ରସାଦ ମାସିକ ୧୦୦ଟଙ୍କା ହିସାବରେ ଏକବର୍ଷପାଇଁ ବୃତ୍ତି ପାଇବେ । ରାଜ୍ୟର ଦ୍ୱିତୀୟ ଶ୍ରେଷ୍ଠ ବିଜ୍ଞାନ ପ୍ରକଳ୍ପପାଇଁ ସମ୍ବଲପୁରର ଲେଡ଼ିଲୁଇସ୍ ବାଳିକା ଉଚ୍ଚ ବିଦ୍ୟାଳୟର ଛାତ୍ରୀ କୁମାରୀ ମଧୁସ୍ମିତା ମିଶ୍ରଙ୍କୁ ଗୋଟିଏ ହାତବନ୍ଧା ଘଣ୍ଟା ପୁରସ୍କାର ଦିଆଯାଇଛି । ଏହା ବ୍ୟତୀତ ବାଲେଶ୍ୱର ପି. ଆର. ହାଇସ୍କୁଲର ଛାତ୍ର ଅଂଶୁମାନ ପୁରୋହିତ, ପୁରୀଜିଲ୍ଲା ସୁଲଭ ଛାତ୍ରୀ କୁମାରୀ ସିଂକନ ତପସ୍ୱିନୀ ମହାପାତ୍ର ଏବଂ ସୁନ୍ଦରଗଡ଼ର କୃଷ୍ଣ କେଜ ପ୍ରୋଜେକ୍ଟ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଛାତ୍ରୀ କୁମାରୀ ସୁପ୍ରଭା ପଟେଲ ଓ କୁମାରୀ ଝରଣା ପଟେଲ ୧୦୧ ଟଙ୍କା ଲେଖାଏଁ ପୁରସ୍କାର ପାଇଛନ୍ତି । ସେମାନଙ୍କ ବ୍ୟତୀତ ଏହି ମେଳାରେ ଆୟୋଜିତ ଏକ କୁଇଜ୍ ପ୍ରତିଯୋଗିତାରେ ଓଡ଼ିଶା ଦ୍ୱିତୀୟ ସ୍ଥାନ ଅଧିକାର କରିଛି ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ୧୯୮୩ରୁ ୧୯୮୫ ମସିହା ପର୍ଯ୍ୟନ୍ତ ଆୟୋଜିତ ବିଜ୍ଞାନ ମେଳାରେ ଓଡ଼ିଶା କ୍ରମାଗତ ୩ବର୍ଷପାଇଁ ସର୍ବଶ୍ରେଷ୍ଠ ଦଳଗତ ସାଫଲ୍ୟ ଲାଗି ଟ୍ରଫି ହାସଲ କରିଥିଲା । ଆସନ୍ତାବର୍ଷ ଭୁବନେଶ୍ୱରଠାରେ ପୂର୍ବଭାରତୀୟ ବିଜ୍ଞାନମେଳା ଅନୁଷ୍ଠିତ ହେବବୋଲି କାର୍ଯ୍ୟକ୍ରମ ସ୍ଥିର ହୋଇଛି ।

## କେନ୍ଦ୍ରୀୟ ଉଦ୍ୟୋଗରେ ମାଛଧରା ବନ୍ଦର

କେନ୍ଦ୍ରୀୟ ଉଦ୍ୟୋଗରେ ଗୋପାଳପୁର, ପାରାଦ୍ୱୀପ ଓ ଅସ୍ତରଙ୍ଗଠାରେ ମାଛଧରା ବନ୍ଦର ପ୍ରତିଷ୍ଠା ନିମନ୍ତେ ଯୋଜନା ପ୍ରସ୍ତୁତ କରାଯାଇଛି । ଖଡ଼େଇଡିପ, ଚୁଡ଼ାମଣି ଓ ପଥରାଠାରେ କେନ୍ଦ୍ର ଓ ରାଜ୍ୟର ମିଳିତ ଅର୍ଥ ବିନିଯୋଗରେ ପୋତାଶ୍ରୟ ଘାଟ ଓ ଜେଟି ନିର୍ମାଣ କରାଯିବାପାଇଁ ବ୍ୟବସ୍ଥା ହୋଇଛି ।

ନରୱେ, ସରକାରଙ୍କ ସହାୟତାରେ ବାଲେଶ୍ୱର ଜିଲ୍ଲାର କଶାଫଳଠାରେ ପାରଂପରିକ ମତ୍ସ୍ୟଜୀବୀମାନଙ୍କର ସାମାଜିକ ଓ ଅର୍ଥନୀତିକ ବିକାଶ ପାଇଁ ଯେଉଁ ଯୋଜନା କାର୍ଯ୍ୟକାରୀ ହେଉଛି, ତାହା ସ୍ଥାନୀୟ ମତ୍ସ୍ୟଜୀବୀମାନଙ୍କର ଜୀବନଧାରଣର ମାନ ଉନ୍ନତ କରିବାରେ ଅଧିକ ସାହାଯ୍ୟ କରିଛି । ଏହି ପ୍ରକଳ୍ପ ମାଧ୍ୟମରେ ହାଟ ବଜାରକୁ ରାସ୍ତା ଯୋଗାଯୋଗ, ଶିକ୍ଷା ଓ ସ୍ୱାସ୍ଥ୍ୟର ଉନ୍ନତି, ପାନୀୟଜଳ ଯୋଗାଣ ଆଦି ଭିତ୍ତିଭୂମି ସୃଷ୍ଟି କରିଛି ।

## ଗ୍ରାମାଞ୍ଚଳ ବିକାଶ କ୍ଷେତ୍ରରେ ବିଜ୍ଞାନ ପରିଷଦଗୁଡ଼ିକର ଭୂମିକା

ବିଜ୍ଞାନ ଓ କାରିଗରୀ କୌଶଳ ଉପଯୋଗ ଦ୍ୱାରା ଗ୍ରାମାଞ୍ଚଳର ବିକାଶ କ୍ଷେତ୍ରରେ ରାଜ୍ୟ ବିଜ୍ଞାନ ପରିଷଦ ଗୁଡ଼ିକର ଭୂମିକା ସଂପର୍କରେ ଷଷ୍ଠ ଜାତୀୟ କର୍ମଶାଳା ତିନିଦିନ ବ୍ୟାପୀ ସ୍ଥାନୀୟ ସୂଚନା ଭବନଠାରେ ଅନୁଷ୍ଠିତ ହୋଇଥିଲା । ରାଜ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏହାକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ ଏବଂ ଉତ୍ସବରେ ଶିଳ୍ପ, ବିଜ୍ଞାନ ଓ କାରିଗରୀ ଏବଂ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ ଅଧ୍ୟକ୍ଷତା କରିଥିଲେ । ଉଦ୍‌ଯାପନ ଉତ୍ସବରେ ଅତିରିକ୍ତ ଉନ୍ନୟନ କମିଶନର ପୌରହିତ୍ୟ କରିଥିଲେ ।

କେନ୍ଦ୍ର ବିଜ୍ଞାନ ଓ କାରିଗରୀ ବିଭାଗ ଆନୁକୂଲ୍ୟରେ ରାଜ୍ୟ ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗ ଦ୍ୱାରା ଆୟୋଜିତ ଏହି କର୍ମଶାଳାରେ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ବିଭାଗୀୟ ବରିଷ୍ଠ ଅଧିକାରୀ ଓ ବୈଜ୍ଞାନିକଙ୍କ ସମେତ ସାରା ଦେଶରୁ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ବୈଜ୍ଞାନିକବୃନ୍ଦ ଯୋଗ ଦେଇଥିବାର ଜଣାଯାଇଛି । ଏହା ବ୍ୟତୀତ ରାଜ୍ୟର କେତେକ ପ୍ରମୁଖ ସ୍ୱେଚ୍ଛାସେବୀ ଅନୁଷ୍ଠାନର ପ୍ରତିନିଧି ଏବଂ ବିଜ୍ଞାନ, କାରିଗରୀ ଓ ପରିବେଶ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ କରିଥିବା ବ୍ୟକ୍ତିବୃନ୍ଦ କର୍ମଶାଳାରେ ଯୋଗଦେଇଥିଲେ । ଏହି ଅବସରରେ ସୂଚନା ଭବନଠାରେ ଏକ ପ୍ରଦର୍ଶନୀର ଆୟୋଜନ ମଧ୍ୟ କରାଯାଇଥିଲା ।

## କଟକ ଜିଲ୍ଲାରେ ଆଇ. ଡ଼ି. କାର୍ଯ୍ୟକ୍ରମ

ଚଳିତ ଆର୍ଥିକ ବର୍ଷରେ ଗତ ଡ଼ିସେମ୍ବର ସୁଦ୍ଧା ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଦ୍ୱାରା କଟକ ଜିଲ୍ଲାରେ ୯୫୫ ଜଣ ମହିଳାଙ୍କ ସମେତ ୨୪,୩୮୮ଟି ପରିବାର ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୬,୦୨୦ଟି ତଫସିଲଭୁକ୍ତ ଜାତି ଓ ୭୮୫ଟି ତଫସିଲଭୁକ୍ତ ସଂପ୍ରଦାୟର ପରିବାର ଅନ୍ତର୍ଭୁକ୍ତ । ଜିଲ୍ଲାରେ ଏହି କାର୍ଯ୍ୟକ୍ରମ ଦ୍ୱାରା ଉକ୍ତ ସମୟ ମଧ୍ୟରେ ୩ କୋଟି ୫୯ ଲକ୍ଷ ୬୨ ହଜାର ଟଙ୍କା ବିନିଯୋଗ ହୋଇଛି । ତନ୍ମଧ୍ୟରେ ସବ୍‌ସିଡ଼ି ବାବଦ ଖର୍ଚ୍ଚର ପରିମାଣ ୩ କୋଟି ୧୯ ଲକ୍ଷ ୯୦ ହଜାର ଟଙ୍କା । ହିତାଧିକାରୀମାନଙ୍କୁ ୪ କୋଟି ୩୬ ଲକ୍ଷ ୮୭ ହଜାର ଟଙ୍କା ଋଣ ଯୋଗାଇ ଦିଆଯାଇଛି ।

## କଳାହାଣ୍ଡି ଜିଲ୍ଲାର ବିଭିନ୍ନ କାର୍ଯ୍ୟକ୍ରମରେ ସୂଚନା ରାଷ୍ଟ୍ରମନ୍ତ୍ରୀ

ଚକ୍ଷୁ ଚିକିତ୍ସା ଶିବିର ଆୟୋଜନ କରିବାରେ ଯୁବକମାନଙ୍କର ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ । କାରଣ ଆମ ଦେଶରେ ଚକ୍ଷୁରୋଗୀଙ୍କ ସଂଖ୍ୟା ଦ୍ରୁତ ବୃଦ୍ଧି ଏକ ଚିନ୍ତାର କାରଣ ବୋଲି କଳାହାଣ୍ଡି ଜିଲ୍ଲାର ଉତ୍କେଲଠାରେ ଚାଲୁଥିବା ମାଗଣା ଚକ୍ଷୁ ଚିକିତ୍ସା ଶିବିରରେ ଉଦ୍‌ବୋଧନ ଦେଇ ସୂଚନା ଓ ସେଚ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ କହିଛନ୍ତି । କେସିଙ୍ଗା ଲାଏନ୍‌ସ୍ କ୍ଲବ ଆନୁକୂଲ୍ୟରେ ଏବଂ ଉତ୍କେଲ ୟୁନାଇଟେଡ୍ କ୍ଲବ୍‌ର ତତ୍ତ୍ୱାବଧାନରେ ଚାଲୁଥିବା ଏହି ଶିବିରରେ ଚିକିତ୍ସା ସୁବିଧା ପାଇବା ପାଇଁ ସଂପୃକ୍ତ ଅଞ୍ଚଳର ୩୬ଜଣ ଚକ୍ଷୁରୋଗୀଙ୍କୁ ପୂର୍ବରୁ ଚିହ୍ନଟ କରାଯାଇଥିଲା । ଚିକିତ୍ସାପରେ ସେମାନଙ୍କର ପରବର୍ତ୍ତୀ ଯତ୍ନ ନେବା ସଙ୍ଗେସଙ୍ଗେ ଆବଶ୍ୟକ ସ୍ଥଳେ ମାଗଣାରେ ଚଷମା ଯୋଗାଇ ଦିଆଯିବ ବୋଲି ମଧ୍ୟ ଜଣାଯାଇଛି । ଶ୍ରୀ ସିଂ କହିଲେ ଯେ ଯେଉଁମାନେ ଏଠାରୁ ଚିକିତ୍ସା ପରେ ଘରକୁ ଫେରିବେ, ସେମାନେ ଏକ ନୂତନ ଆଲୋକ ଦେଖିବାର ସୁଯୋଗ ପାଇବେ । ଦୃଷ୍ଟିଶକ୍ତି ହରାଇ ବସିଥିବା ଲୋକମାନେ ସମାଜ ଉପରେ ଏକ ବୋଝ ରୂପେ ଏପର୍ଯ୍ୟନ୍ତ ପରିଗଣିତ ହୋଇଛନ୍ତି । ସେମାନଙ୍କ ଦୃଷ୍ଟିଶକ୍ତି ଫେରିପାଇବା ପରେ ସେମାନେ ନିଜର ଭରଣପୋଷଣ ପାଇଁ ସକ୍ଷମ ହେବା ସଙ୍ଗେସଙ୍ଗେ ଦେଶର ପ୍ରଗତି ସ୍ରୋତରେ ସାମିଲ ହୋଇ ପାରିବେ । ଏହି ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ଲୋକସଭା ସଦସ୍ୟ ଶ୍ରୀ ଜଗନ୍ନାଥ ପଟ୍ଟନାୟକ ଏବଂ ଜିଲ୍ଲା ମୁଖ୍ୟ ଚିକିତ୍ସକ ଯୋଗ ଦେଇଥିଲେ ।

ଅପରାହ୍ନରେ ଶ୍ରୀ ସିଂହ ସିନାପାଲି ମହାବିଦ୍ୟାଳୟର ପ୍ରଥମ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥିଭାବେ ଏବଂ ସଂଧ୍ୟାରେ ଭବାନୀପାଟଣା ମାଣିକେଶ୍ୱରୀ ଉଚ୍ଚ ବିଦ୍ୟାଳୟର ବାର୍ଷିକ ଉତ୍ସବରେ ଯୋଗ ଦେଇ ଛାତ୍ର ଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । ଶିକ୍ଷାର ବିକାଶ ଦିଗରେ ବିଗତ ୭ ବର୍ଷ ମଧ୍ୟରେ ବର୍ତ୍ତମାନର ସରକାର ଯେଉଁ ବୈପ୍ଳବିକ ପ୍ରଗତି ହାସଲ କରିଛନ୍ତି, ସେ ସଂପର୍କରେ ସୂଚନା ଦେବା ସଙ୍ଗେ ସଙ୍ଗେ ସେମାନେ ଶିକ୍ଷାର ମାନ, ବିଶେଷ କରି ବିଜ୍ଞାନ ଓ କାରିଗରୀ ଜ୍ଞାନ କୌଶଳ କ୍ଷେତ୍ରରେ ବିଶ୍ୱର ଅନ୍ୟାନ୍ୟ ଦେଶମାନଙ୍କ ସହିତ ସମକକ୍ଷ ହେବାକୁ ଉଦ୍ୟମ କରନ୍ତୁ ବୋଲି ପରାମର୍ଶ ଦେଇଥିଲେ । ସେ କହିଲେ ଯେ ୧୯୮୦ ବେଳକୁ କଳାହାଣ୍ଡି ଜିଲ୍ଲାରେ ୬୯ଟି ହାଇସ୍କୁଲ ଥିବାବେଳେ ବର୍ତ୍ତମାନ ୧୩୨କୁ ବୃଦ୍ଧି ପାଇଛି ଏବଂ ପ୍ରାୟ ପ୍ରତ୍ୟେକ ବ୍ଲକ୍‌ରେ ହାଇସ୍କୁଲମାନ ପ୍ରତିଷ୍ଠିତ ହୋଇପାରିଛି । ମାତ୍ର କେବଳ ସ୍କୁଲର ସଂଖ୍ୟା ବୃଦ୍ଧି ପାଇଲେ ସମସ୍ୟାର ସମାଧାନ ହୋଇ ପାରିବ ନାହିଁ । ଛାତ୍ରଛାତ୍ରୀମାନଙ୍କ କଠିନ ପରିଶ୍ରମ ଓ ଶୃଂଖଳା ଦ୍ୱାରା ହିଁ ଏହା ସଂଭବ । ସିନାପାଲି କଲେଜଠାରେ ଏମ୍. ପି. ଶ୍ରୀ ପଟ୍ଟନାୟକ ସମ୍ମାନୀତ ଅତିଥିଭାବେ ଯୋଗ ଦେଇଥିଲେ । ମାଣିକେଶ୍ୱରୀ ହାଇସ୍କୁଲ ଉତ୍ସବରେ ଶ୍ରୀ କାଳିକା ପ୍ରସାଦ ବାବୁ ଅଧ୍ୟକ୍ଷତା କରିଥିଲେ ଏବଂ ଜିଲ୍ଲା ସ୍କୁଲ ଇନିସ୍‌ପେକଟର ଯୋଗ ଦେଇଥିଲେ । ପ୍ରଧାନ ଶିକ୍ଷକ ଶ୍ରୀ ଭବାନୀ ଶଙ୍କର ବାବୁ ବାର୍ଷିକ ବିବରଣୀ ପାଠ କରିଥିଲେ ।

## ସପ୍ତମ ଯୋଜନା କାଳରେ ଆଳୁଚାଷର ପ୍ରସାର

ରାଜ୍ୟ କୃଷି ଓ ସମବାୟମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା ପିପିଲି ବ୍ଲକର ସରସ୍ୱତୀପୁର ଗ୍ରାମପଞ୍ଚାୟତରେ ଅନୁଷ୍ଠିତ କୃଷକ ତାଲିମ ଶିବିର ଓ କୃଷକ ସମାବେଶରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ସପ୍ତମ ପଞ୍ଚବାର୍ଷିକ ଯୋଜନା ଶେଷସୁଦ୍ଧା ରାଜ୍ୟରେ ୨୫ ହଜାର ହେକ୍‌ଟର ଜମିରେ ଆଳୁଚାଷର ପ୍ରସାର ପାଇଁ ଲକ୍ଷ୍ୟ ରଖାଯାଇଛି ବୋଲି ପ୍ରକାଶ କରିଥିଲେ । ବାହାର ରାଜ୍ୟରୁ ପ୍ରତିବର୍ଷ ଦଶକୋଟିରୁ ଉର୍ଦ୍ଧ୍ୱ ଟଙ୍କା ମୂଲ୍ୟର ଆଳୁ ଓ କଦଳୀ ଆମଦାନୀ କରାଯାଉଥିବା ବିଷୟରେ ସୂଚନା ଦେଇ ଏହି ଅର୍ଥକରୀ ଫସଲ ଚାଷ ଦ୍ୱାରା କୃଷକମାନେ ଅଧିକ ଲାଭବାନ ହେବେ ବୋଲି କୃଷିମନ୍ତ୍ରୀ ବୁଝାଇଥିଲେ । ସରସ୍ୱତୀପୁର ପଞ୍ଚାୟତର ତିନୋଟି ଗ୍ରାମରେ ଚାଷ ହୋଇଥିବା କୁଫ୍ରୀ ବାଦଶାହା ଉନ୍ନତ ଆଳୁ, ବିହନ ଉପଯୋଗୀ ହୋଇଥିବାରୁ ଅମଳପରେ ଏହାକୁ ଶୀତଳ ଭଣ୍ଡାରରେ ରଖାଯିବ ଓ ଚାଷୀମାନେ ସେମାନଙ୍କର ଫସଲର ଉଚିତ ମୂଲ୍ୟ ପାଇବେ ବୋଲି କୃଷିମନ୍ତ୍ରୀ ପ୍ରକାଶ କରିଥିଲେ ।

ରାଜ୍ୟ ଫଳ ଓ ଉଦ୍ୟାନ ବିଭାଗ ପକ୍ଷରୁ ଆଳୁଚାଷ ସମ୍ପର୍କରେ ଏହି ତାଲିମ ଶିବିର ଓ କୃଷକ ସମାବେଶ ଆୟୋଜିତ ହୋଇଥିଲା । ନିର୍ଦ୍ଦେଶକ ଡକ୍‌ଟର ସଦାନନ୍ଦ ମଲ୍ଲିକ ଏଥିରେ ସଭାପତିତ୍ୱ କରି ରାଜ୍ୟରେ କୁଫ୍ରୀ ବାଦଶାହା କୁଫ୍ରୀ ଚନ୍ଦ୍ରମୁଖୀ, କୁଫ୍ରୀ ଲଲିମାର ଓ କୁଫ୍ରୀ ସିନ୍ଦୁରୀ ଉନ୍ନତ ଆଳୁ ବିହନ ଚାଷ ହେତୁ ଉତ୍ପାଦନ ବଢ଼ୁଛି ବୋଲି ପ୍ରକାଶ କରିଥିଲେ । ଚଳିତବର୍ଷ ମୋଟ ୧୪ ହଜାର ହେକ୍‌ଟର ଜମିରେ ଆଳୁ ଓ ୫୦୦ ହେକ୍‌ଟର ଜମିରେ ଚମ୍ପା ଓ ରୂପାବଳି କଦଳୀଚାଷ ହୋଇଥିବା ବିଷୟରେ ନିର୍ଦ୍ଦେଶକ ପ୍ରକାଶ କରିଥିଲେ ।

ସଭାରେ ଅନ୍ୟମାନଙ୍କ ମଧ୍ୟରେ ବଳଙ୍ଗୀର ଅଞ୍ଚଳର ପ୍ରଗତିଶୀଳ କୃଷକ ଶ୍ରୀ ମୁରଲୀଧର ପାଣିଗ୍ରାହୀ, କୃଷି ବିଭାଗର ପଦସ୍ଥ ଅଫିସରମାନେ ବିଭିନ୍ନ ଚାଷ ସମ୍ପର୍କରେ ଆଲୋଚନା କରିଥିଲେ । ପୁରୀର ଉଦ୍ୟାନବିତ୍ ଶ୍ରୀ ସୁଶାନ୍ତ କୁମାର ମହାନ୍ତିଙ୍କ ପରାମର୍ଶ ଓ ଉଦ୍ୟମରେ ଆଳୁଚାଷ ସଫଳ ହୋଇଥିବା ବିଷୟରେ ଚାଷୀମାନେ ପ୍ରକାଶ କରିଥିଲେ । ସ୍ଥାନୀୟ ସମବାୟ ସମିତିର ସଭାପତି କୃଷିମନ୍ତ୍ରୀଙ୍କୁ ଏକ ମାନପତ୍ର ପ୍ରଦାନ କରି ସରସ୍ୱତୀପୁରରୁ ମୁଖ୍ୟବ୍ୟବସାୟ କେନ୍ଦ୍ର ସାତଶଂଖ ପର୍ଯ୍ୟନ୍ତ ୩ କିଲୋମିଟର ରାସ୍ତା ନିର୍ମାଣ ନିମନ୍ତେ ମନ୍ତ୍ରୀଙ୍କଠାରେ ଦାବୀ ଜଣାଇଥିଲେ ।

ସାକ୍ଷୀଗୋପାଳର ଫଳ ଓ ଉଦ୍ୟାନ ଉପ ନିର୍ଦ୍ଦେଶକ ଶ୍ରୀ ଦେବେଶ ପ୍ରସାଦ ପାଢ଼ୀ ସ୍ୱାଗତ ଅଭିଭାଷଣ ଦେଇ ସରସ୍ୱତୀପୁର ଓ ବଳଙ୍ଗା ପଞ୍ଚାୟତର ଚାଷୀମାନେ ୬୫ ଏକର ଜମିରେ ସଫଳତାର ସହିତ ଆଳୁଚାଷ କରିଥିବା ବିଷୟରେ ଏକ ବିବରଣୀ ପ୍ରଦାନ କରିଥିଲେ ।

ସେଠାରେ ଆୟୋଜିତ କୃଷକ ତାଲିମ ଶିବିରରେ ୨୦୦ ଜଣ ମହିଳା ଓ ପୁରୁଷଙ୍କୁ ଆଳୁଚାଷ, ଫଳ ଓ ପନିପରିବା ସଂରକ୍ଷଣ ବିଷୟରେ ବିଶେଷଜ୍ଞମାନେ ତାଲିମ ପ୍ରଦାନ କରିଥିଲେ ।

କୃଷିମନ୍ତ୍ରୀ କୃଷକମାନଙ୍କ ସହିତ ସରସ୍ୱତୀପୁର ଓ ଦକ୍ଷିଣସାହି ଗ୍ରାମରେ ୩୫ ଏକରରୁ ଊର୍ଦ୍ଧ୍ୱ ଜମିରେ ହୋଇଥିବା ଉନ୍ନତ ଅନୁଷ୍ଠାନ ଦେଖି ସନ୍ତୋଷ ପ୍ରକାଶ କରିଥିଲେ ।

## କେସିଙ୍ଗାରେ ଅଖିଳ ଭାରତ କବି ସମ୍ମିଳନୀ

କଳାହାଣ୍ଡି ଜିଲ୍ଲାର କେସିଙ୍ଗାଠାରେ ଅଖିଳ ଭାରତ ହିନ୍ଦି କବି ସମ୍ମିଳନୀ ଅନୁଷ୍ଠିତ ହୋଇଛି । କେସିଙ୍ଗା 'ଡାଇନାମିକ କ୍ଲବ' ଦ୍ୱାରା ଆୟୋଜିତ ଏହି ସମ୍ମିଳନୀ ଉଦ୍‌ଘାଟନ କରି ରାଜ୍ୟ ସୂଚନା ଓ ସେଚ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ କହିଲେ ଯେ ଦେଶକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ଲାଗି ପ୍ରତ୍ୟେକ ଭାରତୀୟ ଆଞ୍ଚଳିକତା, ସଙ୍କୀର୍ଣ୍ଣ ଧର୍ମ ଓ ଭାଷାଗତ ପାର୍ଥକ୍ୟ ଭୁଲି କାନ୍ଧକୁ କାନ୍ଧ ମିଳାଇ ଯେଉଁ ଆନ୍ଦୋଳନ କରିଥିଲେ, ସେଥିରେ ତତ୍‌କାଳୀନ କବି ଓ ସାହିତ୍ୟିକଙ୍କ ପ୍ରେରଣା ଏକ ପ୍ରଧାନ ଆୟୁଧ ଭାବେ କାର୍ଯ୍ୟ କରିଥିଲା । ସେହିଭଳି ବର୍ତ୍ତମାନ ଦେଶରେ ରହିଥିବା କୁ-ସଂସ୍କାର, ଅନ୍ଧ ବିଶ୍ୱାସ, ଅଶିକ୍ଷା ଓ ଦୁର୍ବଳ ପରେ ସବଳର ଉତ୍‌ପୀଡ଼ନ ଦୂର କରିବା ଦିଗରେ କବିମାନେ ସେମାନଙ୍କ ବଳିଷ୍ଠ ଲେଖନୀ ଚାଳନା କରିବେ ବୋଲି ଶ୍ରୀ ସିଂହ ଆଶା ପ୍ରକାଶ କରିଥିଲେ । ସରକାର ଓ ଶାସନର ଦୋଷ ଦୁର୍ବଳତା ପ୍ରକାଶ କରିବା ସାଙ୍ଗକୁ ଏହାର ନିରାକରଣର ଉପାୟ ସମ୍ପର୍କରେ ମଧ୍ୟ ଗଠନମୂଳକ ପରାମର୍ଶ କବି ଓ ସାହିତ୍ୟିକ-ମାନଙ୍କ ଲେଖାରେ ପ୍ରକାଶ ପାଇବା ଉଚିତ ବୋଲି ସେ ମତବ୍ୟକ୍ତ କରିଥିଲେ ।

ଏହି ସମ୍ମିଳନୀରେ ସମ୍ମାନୀୟ ଅତିଥି ଭାବେ ଲୋକସଭା ସଦସ୍ୟ ଶ୍ରୀ ଜଗନ୍ନାଥ ପଟ୍ଟନାୟକ ଓ ସ୍ଥାନୀୟ ଏସ୍. ପି. ଯୋଗ ଦେଇଥିଲେ ।

---

## ଜୟପୁରରେ ଲୋକ ଅଦାଲତ

ରାଜ୍ୟ ଆଇନ୍ ସହାୟତା ଉପଦେଷ୍ଟା କମିଟି ତରଫରୁ ଗତ ୧୪ ତାରିଖରେ କୋରାପୁଟ ଜିଲ୍ଲା ଜୟପୁର ଜିଲ୍ଲା ମୁଖ୍ୟ ବିଚାରାଳୟ ହତା ମଧ୍ୟରେ ଏକ ଲୋକ ଅଦାଲତ ଅନୁଷ୍ଠିତ ହୋଇଯାଇଛି । ଜିଲ୍ଲାର ଏହି ପ୍ରଥମ ଲୋକ ଅଦାଲତରେ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ଶ୍ରୀଯୁକ୍ତ ହରିଲାଲ ଅଗ୍ରୱାଲ ଅଧ୍ୟକ୍ଷ, ଓଡ଼ିଶା ଆଇନ ସହାୟତା କମିଟିର ଅଧ୍ୟକ୍ଷ ମାନ୍ୟବର ବିଚାରପତି ଶ୍ରୀଯୁକ୍ତ ରାଧା ଚରଣ ପଟ୍ଟନାୟକ, ଆଇନ ସହାୟତା ଉପଦେଷ୍ଟା କମିଟି ସଦସ୍ୟ ସଂପାଦକ ଶ୍ରୀ ଏସ୍. କେ. ପଟେଲ, କୋରାପୁଟ ଜିଲ୍ଲାଜଜ୍ ଶ୍ରୀ ପ୍ରଫୁଲ୍ଲ କୁମାର ତ୍ରିପାଠୀ ଓ ଜିଲ୍ଲାପାଳ ଶ୍ରୀ ଉପେନ୍ଦ୍ର ନାଥ ବେହେରା ଯୋଗ ଦେଇଥିଲେ ।

ଏଥିରେ ୭୪ଟି ମୋଟର ଗାଡ଼ି ଦୁର୍ଘଟଣା କ୍ଷତିପୂରଣ ମାମଲା ଫଇସଲା କରାଯାଇ ୧୭,୮୦,୫୦୦ ଟଙ୍କା ଏବଂ ୫ଟି ଶ୍ରମିକ କ୍ଷତିପୂରଣ ମାମଲା ଫଇସଲା କରାଯାଇ ୬,୯୪,୫୧୭ ଟଙ୍କା କ୍ଷତିପୂରଣ ଦିଆଯାଇଥିଲା । ସେହିପରି ୨୦ଟି ବ୍ୟାଙ୍କ ମାମଲା, ୫୧ ଟି ଫୌଜଦାରୀ, ୧୭ ଟି ରାଜସ୍ୱ ମକଦ୍ଦମା ଏଠାରେ ଫଇସଲା କରାଯାଇ ପାରିଥିଲା ।

## ଚୂନପଥର ଓ ଡୋଲମାଇଟ୍ ଖଣି ଶ୍ରମିକ କଲ୍ୟାଣ ପାଣ୍ଠିର ରାଜ୍ୟ ପରାମର୍ଶଦାତା କମିଟି ବୈଠକ

ଚୂନପଥର ଓ ଡୋଲମାଇଟ୍ ଖଣି ଶ୍ରମିକ କଲ୍ୟାଣ ପାଣ୍ଠିର ୧୧ ତମ ରାଜ୍ୟ ପରାମର୍ଶଦାତା କମିଟି ବୈଠକ ରାଜ୍ୟ ସଚିବାଳୟଠାରେ ଶ୍ରମ ଓ ନିଯୋଜନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପାଳଚନ୍ଦ୍ର ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ପ୍ରାରମ୍ଭରେ ଶ୍ରମ ରାଷ୍ଟ୍ରମନ୍ତ୍ରୀ ସଦସ୍ୟ-ମାନଙ୍କୁ ସ୍ୱାଗତ କରିବା ସଙ୍ଗେସଙ୍ଗେ ଶ୍ରମିକ କଲ୍ୟାଣ ପାଣ୍ଠିରୁ ସେମାନଙ୍କ କଲ୍ୟାଣ ନିମନ୍ତେ ବଜେଟ୍‌ରେ ନିର୍ଦ୍ଦିଷ୍ଟ ଅର୍ଥ ଯେପରି ଠିକ୍ ସମୟ ମଧ୍ୟରେ ଖର୍ଚ୍ଚ ହୋଇପାରିବ, ସେଥିପ୍ରତି ଦୃଷ୍ଟି ଦେବାକୁ ପରାମର୍ଶ ଦେଇଥିଲେ ।

କଲ୍ୟାଣ ପାଣ୍ଠିରୁ ବ୍ୟୟ ନିମନ୍ତେ ୧୯୮୭-୮୮ ସଂଶୋଧିତ ବଜେଟ୍ ଅଟକଳରେ ୧୬ ଲକ୍ଷ ୩୧ ହଜାର ଟଙ୍କା କେନ୍ଦ୍ର ସରକାରଙ୍କ ଅନୁମୋଦନ ଲାଭ କରିଥିବା କଥା ବୈଠକରେ ପ୍ରକାଶ ପାଇଥିଲା ।

ଶ୍ରମିକ କଲ୍ୟାଣ ପାଣ୍ଠିରୁ ପଞ୍ଚମ ଶ୍ରେଣୀରୁ ବିଶ୍ୱବିଦ୍ୟାଳୟ-ସ୍ତର ପର୍ଯ୍ୟନ୍ତ ବୃତ୍ତି ଦେବାର ବ୍ୟବସ୍ଥା ରହିଛି । ଗତବର୍ଷ ଏହି ପାଣ୍ଠିରୁ ୧୭୩ ଜଣ ବୃତ୍ତି ପାଇଥିଲେ । ଚଳିତବର୍ଷ ୧ ଲକ୍ଷ ୧୦ ହଜାର ଟଙ୍କା ବୃତ୍ତି ଦେବା ବ୍ୟବସ୍ଥା ହୋଇଛି । ଚଳିତବର୍ଷ ଗତବର୍ଷ ତୁଳନାରେ ମୋଟ ସଂଖ୍ୟାର ଶତକଡ଼ା ୧୦ ଭାଗ ବୃଦ୍ଧି କରାଯିବା ସଙ୍ଗେସଙ୍ଗେ ସମସ୍ତ ଯୋଗ୍ୟ ବିବେଚିତ ପ୍ରାର୍ଥୀଙ୍କୁ ବୃତ୍ତି ଦେବାର ବ୍ୟବସ୍ଥା କରାଯିବ । ଏତଦ୍‌ବ୍ୟତୀତ ପ୍ରଥମ ଶ୍ରେଣୀରୁ ଚତୁର୍ଥ ଶ୍ରେଣୀରେ ପଢୁଥିବା ଛାତ୍ର, ଛାତ୍ରୀଙ୍କୁ ସ୍ଲେଟ ଓ ବହି ଇତ୍ୟାଦି କିଣିବା ବାବଦରେ କଲ୍ୟାଣ ପାଣ୍ଠିରୁ ସାହାଯ୍ୟ ଦେବା ବ୍ୟବସ୍ଥା ଅନୁଯାୟୀ ସମସ୍ତ ଯୋଗ୍ୟ ବିବେଚିତ ଛାତ୍ର ଛାତ୍ରୀଙ୍କୁ ଅନୁଦାନ ଦେବାକୁ ସ୍ଥିର କରାଯାଇଛି ।

ରାଉରକେଲା ଆଖପାଖ ଅଞ୍ଚଳର ଚୂନପଥର ଓ ଡୋଲମାଇଟ ଖଣି ଶ୍ରମିକଙ୍କ ଅଧିକ ଉନ୍ନତ ଚିକିତ୍ସା ଲାଗି କଲ୍ୟାଣ ପାଣ୍ଠି ପକ୍ଷରୁ ରାଉରକେଲା ଇସ୍‌ପାତ ଜେନେରାଲ ହସ୍‌ପିଟାଲରେ କେତେକ ଶଯ୍ୟା ସଂରକ୍ଷଣ କରିବାକୁ ବୈଠକରେ ସ୍ଥିର କରାଯାଇଛି ।

---

## କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ଲାଗି କେନ୍ଦ୍ରୀୟ ସହାୟତା ଯୋଜନାରେ ସଫଳତା

ଗତ ଡିସେମ୍ବର ଶେଷ ସୁଦ୍ଧା କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ପାଇଁ କେନ୍ଦ୍ରୀୟ ସହାୟତା ଯୋଜନାରେ କ୍ଷୁଦ୍ର ଜଳସେଚନ ସୁବିଧା ଲାଗି ୧୬୯୮ ଟି ସେଚକୂପ ଖନନ କରାଯାଇଛି ଏବଂ ୪୦ଟି ନଳକୂପ ବସାଯାଇଛି । ଜଳସେଚନ ବ୍ୟବସ୍ଥା ଲାଗି ଚାଷୀମାନଙ୍କୁ ୧୦୫୬ ଟି ପମ୍ପସେଟ୍, ୧୫୯ ଟି ଡିଜେଲ ଇଂଜିନ୍ ଓ ୮୯୭ ଟି ବିଦ୍ୟୁତ୍‌ଚାଳିତ ମୋଟର ଯୋଗାଇ ଦିଆଯାଇଛି । ଏହି ସମୟ ମଧ୍ୟରେ ୭ ଟି ଫାର୍ମ ପୁଷ୍କରିଣୀର ପଙ୍କୋଦ୍ଧାର କରି ଏହାକୁ ଗଭୀର କରାଯିବା ସଙ୍ଗେସଙ୍ଗେ ମରାମତି ମଧ୍ୟ କରା-ଯାଇଛି ଏବଂ ୯୮ ଟି ଗୋଷ୍ଠୀ ଶ୍ରେଣୀୟ ଉଠା ଜଳସେଚନ ପ୍ରକଳ୍ପ

କରାଯାଇଛି । ଏହା ଫଳରେ ୧୯୪୭.୭୦ ହେକ୍ଟର ଜମିରେ ଜଳସେଚନର ସୁବିଧା ସୃଷ୍ଟି କରାଯାଇ ପାରିଛି ।

ଗତ ଖରିଫ୍ ଋତୁରେ ଚାଷୀମାନଙ୍କୁ ଧାନ ଓ ଡାଲିଜାତୀୟ ଫସଲର ମୋଟ୍ ୧୫,୩୭୧ ଟି ବିହନ ଓ ସାର ପୁଡ଼ିଆ ଯୋଗାଇ ଦିଆଯାଇଥିଲା । ସେଥିରୁ ୧୦୪୦ ଟି ଧାନ, ୭୦୫୭ ଟି ମୁଗ, ୬୩୬୦ ଟି ବିରି ଓ ୧୯୫୪ ଟି ହରଡ ବିହନ ପୁଡ଼ିଆ ଅନ୍ତର୍ଭୁକ୍ତ । ସେହିପରି ୧୦୫୮୮ ଟି 'ତୈଳବୀଜ ଜାତୀୟ ବିହନର କ୍ଷୁଦ୍ର ପୁଡ଼ିଆ ମଧ୍ୟ ଚାଷୀମାନଙ୍କୁ ଯୋଗାଇ ଦିଆଯାଇଥିଲା । ତନ୍ମଧ୍ୟରେ ୬୭୫୦ ଟି ଚିନାବାଦାମ, ୩୮୧୩ ଟି ରାଶି ଓ ୨୫ଟି ଅଳସି ବିହନ ପୁଡ଼ିଆ ଅନ୍ତର୍ଭୁକ୍ତ ।

ରବି ତଥା ଖରାଟିଆ ପନିପରିବା ଓ ଡାଲିଜାତୀୟ ଫସଲ ପାଇଁ ଏପରି ଚାଷୀମାନଙ୍କୁ ୩୮୦୧ ଟି ସାର ଓ ବିହନ ପୁଡ଼ିଆ ଯୋଗାଇ ଦିଆଯାଇଥିଲା । ଏହି ପୁଡ଼ିଆ ମଧ୍ୟରେ ୩୨୦ ଟି ଗୋଲଆଳୁ, ୬୪୨ ଟି ମୁଗ, ୧୧୪୦ ଟି ବିରି, ୯୦୦ ଟି ଚଣା ଓ ୭୯୯ ଟି ମଟର ବିହନ ପୁଡ଼ିଆ ଅନ୍ତର୍ଭୁକ୍ତ । ଏହି ପର୍ଯ୍ୟାୟ ଫସଲ ପାଇଁ ୬୫୨୫ ବିଭିନ୍ନ ଜାତୀୟ ତୈଳବୀଜ ବିହନ ପୁଡ଼ିଆ ଚାଷୀମାନଙ୍କୁ ଯୋଗାଇ ଦିଆଯାଇଥିଲା । ସେଥିରେ ୨୮୪୧ ଟି ଚିନାବାଦାମ, ୨୯୩୪ ଟି ସୋରିଷ ଓ ୭୫୦ ଟି ରାଶି ବିହନ ପୁଡ଼ିଆ ଅନ୍ତର୍ଭୁକ୍ତ ।

ଏହି ସମୟ ମଧ୍ୟରେ ୨୫୦୨ ଟି କ୍ଷୁଦ୍ର କ୍ଷେତ୍ରବନ୍ଧ ନିର୍ମାଣ କରାଯିବା ସଙ୍ଗେସଙ୍ଗେ ୧୦୫୭.୪୨ ହେକ୍ଟର ଜମିକୁ ମଧ୍ୟ ସମତଳ କରାଯାଇ ଚାଷୋପଯୋଗୀ କରାଯାଇ ପାରିଛି ।

ଉପରୋକ୍ତ କାର୍ଯ୍ୟକ୍ରମ ଦ୍ୱାରା ଉକ୍ତ ସମୟ ମଧ୍ୟରେ ରାଜ୍ୟର ମୋଟ୍ ୬୧୨୦୮ ଜଣ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଉପକୃତ କରାଯାଇଛି । ତନ୍ମଧ୍ୟରେ ତଫସିଲଭୁକ୍ତ ଜାତିର ୯୬୫୦ ଜଣ ଓ ତଫସିଲଭୁକ୍ତ ସଂପ୍ରଦାୟର ୨୩୦୧୩ ଜଣ ଚାଷୀ ଅନ୍ତର୍ଭୁକ୍ତ ।

ଚଳିତ ଆର୍ଥିକ ବର୍ଷର ଆରମ୍ଭରୁ ଗତ ଡିସେମ୍ବର ସୁଦ୍ଧା ଏ ବାବଦରେ ମୋଟ୍ ୪ କୋଟି ୭୦ ଲକ୍ଷ ୩୮ ହଜାର ଟଙ୍କା ବ୍ୟୟ ହୋଇଛି । ତନ୍ମଧ୍ୟରେ ବିଭିନ୍ନ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ନିର୍ମାଣ ଲାଗି ୨କୋଟି ୬୬ ଲକ୍ଷ ୨୭ ହଜାର ଟଙ୍କା, ଖରିଫ୍ ଓ ରବିଋତୁ ପାଇଁ ବିହନ ଓ ସାର ପୁଡ଼ିଆ ବାବଦରେ ୫୯ ଲକ୍ଷ ୩୮ ହଜାର ଟଙ୍କା, ଭୂ-ଉନ୍ନୟନ ଲାଗି କର୍ମଚାରୀଙ୍କ ନିଯୁକ୍ତି ବାବଦରେ ୧ କୋଟି ୪୪ ଲକ୍ଷ ୭୩ ହଜାର ଟଙ୍କା ଏବଂ ଅଗ୍ରୀମ ଆକାରରେ ଦିଆଯାଇଥିବା ୪୨ ଲକ୍ଷ ଟଙ୍କା ଅନ୍ତର୍ଭୁକ୍ତ ।

## ଦଶପଲ୍ଲା ବ୍ଲକ୍‌ର ବିଂଶସୂତ୍ରୀ କାର୍ଯ୍ୟକ୍ରମ ସମୀକ୍ଷା

ଖାଦ୍ୟ ଓ ଯୋଗାଣମନ୍ତ୍ରୀ ଶ୍ରୀ ହରିହର କରଣ ଦଶପଲ୍ଲା ବ୍ଲକ୍‌ର ବିଂଶସୂତ୍ରୀ କାର୍ଯ୍ୟକ୍ରମର ସମୀକ୍ଷା କରିଥିଲେ । ବିଭିନ୍ନ ଉନ୍ନୟନମୂଳକ ଯୋଜନା ପାଇଁ ମିଳିଥିବା ଅର୍ଥ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ବ୍ୟୟ କରାଯିବା ନିମନ୍ତେ ସେ ଉପସ୍ଥିତ ଅଫିସରମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଅତ୍ୟାବଶ୍ୟକୀୟ ସାମଗ୍ରୀ ବଣ୍ଟନରେ ସୁବ୍ୟବସ୍ଥା ଏବଂ କୃତ୍ରିମ ଅଭାବ ଯେପରି ସୃଷ୍ଟି ନହୁଏ, ସେଥିପ୍ରତି ବିଶେଷ ଦୃଷ୍ଟି ଦେବାକୁ ସେ ପରାମର୍ଶ ଦେଇଥିଲେ ।

ସମୀକ୍ଷାରୁ ପ୍ରକାଶ ଯେ ଏହି ବ୍ଲକ୍‌ରେ ଆଇ. ଆର. ଡି. ଯୋଜନାରେ ନୂତନ ଓ ଦ୍ୱିତିୟ ଥର ସାହାଯ୍ୟ, ଏପରି ମୋଟ୍ ୬୨୫ ଟି ପରିବାରକୁ ଥଇଥାନ କରାଯିବାକୁ ଲକ୍ଷ୍ୟ ଧାର୍ଯ୍ୟ ଥିବା ସ୍ଥଳେ ଏ ପର୍ଯ୍ୟନ୍ତ ୫୯୬ ଟି ପରିବାରକୁ ଥଇଥାନ କରାଯାଇଛି । ସେହିପରି ଇ.ଆର୍.ଆର୍.ପି. ଯୋଜନାରେ ଚଳିତ ବର୍ଷ ୩୩୩ଟି ପରିବାରକୁ ଥଇଥାନ କରାଯିବାକୁ ଲକ୍ଷ୍ୟଧାର୍ଯ୍ୟ ଥିବା ସ୍ଥଳେ ୪୭୬ ଟି ପରିବାରକୁ ଥଇଥାନ କରାଯାଇଛି । ଏହି ବ୍ଲକ୍‌ରେ ଏ ପର୍ଯ୍ୟନ୍ତ ଏନ୍. ଆର. ଇ. ପି. ରେ ୪ ଲକ୍ଷ ୧୫ ହଜାର ଟଙ୍କା ଏବଂ ଆର. ଏଲ୍. ଇ. ଜି. ପି.ରେ ୧ ଲକ୍ଷ ୫୧ ହଜାର ଟଙ୍କା ବ୍ୟୟ କରାଯାଇଛି । ବ୍ଲକ୍‌ରେ ପ୍ରତିଦିନ ୧୬,୫୦୦ ଜଣ ପ୍ରସୂତି, ଗର୍ଭବତୀ ମହିଳା, ବୃଦ୍ଧ, ବୃଦ୍ଧା ତଥା ସ୍କୁଲଛାତ୍ର ଛାତ୍ରୀଙ୍କୁ ପୁଷ୍ଟିକର ଖାଦ୍ୟ ଯୋଗାଇ ଦିଆଯାଉଛି । ସମୀକ୍ଷାରୁ ଆହୁରି ପ୍ରକାଶ ଯେ କ୍ଷୁଦ୍ର ଜଳସେଚନ ଯୋଜନା ଏବଂ କୁଆଁରିଆ ଜଳସେଚନ ବ୍ୟବସ୍ଥା ମାଧ୍ୟମରେ ମୋଟ୍ ୪୧୫୬ ହେକ୍ଟରର ଜମିକୁ ଜଳ ଯୋଗାଇ ଦିଆଯାଇଛି । ୨୯୯ ଟି ଗ୍ରାମ ବିଶିଷ୍ଟ ଏହି ବ୍ଲକ୍‌ରେ ୨୪୬ ଟି ଗ୍ରାମକୁ ଜଳକ୍ଳିଷ୍ଟ ଭାବେ ଚିହ୍ନଟ କରାଯାଇଥିବା ସ୍ଥଳେ ସେଗୁଡ଼ିକରେ ୪୪୧ ଟି ନଳକୂପ ବସାଇବା ଆବଶ୍ୟକ ଥିବା ଦୃଷ୍ଟିରୁ ଏ ପର୍ଯ୍ୟନ୍ତ ୪୧୧ ଟି ନଳକୂପ ବସାଯାଇଛି ।

ଯୋଗାଣ ମନ୍ତ୍ରୀ ଶ୍ରୀ କରଣ ଦଶପଲ୍ଲା ବ୍ଲକ୍ ଅନ୍ତର୍ଗତ ସରିଗଣ୍ଡା ଗ୍ରାମ ପଞ୍ଚାୟତର ନରସିଂହପୁର, ରଥଗାଁ, ବନ୍ଧୁଗାଁ, ପଥରପୁଞ୍ଜା ଓ ନେଳୀଗୁଡା ଗ୍ରାମଗୁଡ଼ିକ ପରିଦର୍ଶନ କରି ଜନସାଧାରଣଙ୍କ ବିଭିନ୍ନ ଅଭାବ ଅସୁବିଧା ସଂପର୍କରେ ବୁଝିଥିଲେ ।

## ପୁରୀ ମହିଳା ମହାବିଦ୍ୟାଳୟ ଛାତ୍ରୀ ସଂସଦର ବାର୍ଷିକୋତ୍ସବ

ଶ୍ରମ ଓ ନିୟୋଜନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପାଳ ଚନ୍ଦ୍ର ମହାପାତ୍ର ପୁରୀ ମହିଳା ମହାବିଦ୍ୟାଳୟ ଛାତ୍ରୀ ସଂସଦର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ । ଉତ୍ସବରେ ଉଦ୍‌ବୋଧନ ଦେଇ ଶ୍ରୀ ମହାପାତ୍ର କହିଲେ ଯେ ଛାତ୍ର ଛାତ୍ରୀମାନେ ଦେଶର ଭବିଷ୍ୟତ । ସେମାନଙ୍କ ହୃଦୟରେ ଜ୍ଞାନ ରୂପକ ପ୍ରଦୀପ ପ୍ରଜ୍ୱଳିତ କରିବା ଓ ଧର୍ମରୂପକ ଧନ ସଂଚୟ କରିବାକୁ ସେ ପରାମର୍ଶ ଦେଇଥିଲେ । ସମାଜରେ ନାରୀମାନଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ହୋଇଥିବା ଦୃଷ୍ଟିରୁ ସେମାନେ ଦେଶର ଅଗ୍ରଗତିରେ ପୁରୁଷମାନଙ୍କ ସଙ୍ଗେ ସମଭାବରେ ସହଯୋଗ କରିବା ବାଞ୍ଛନୀୟ ବୋଲି ଶ୍ରୀ ମହାପାତ୍ର ମତବ୍ୟକ୍ତ କରିଥିଲେ । ସତୀଦାହ ପରି ସମାଜର କୁସଂସ୍କାର ଓ ଯୌତୁକ ବ୍ୟାଧି ବିରୁଦ୍ଧରେ ନାରୀ ସମାଜ ସ୍ୱର ଉତ୍ତୋଳନ କରିବାକୁ ସେ ପରାମର୍ଶ ଦେଇଥିଲେ । ଛାତ୍ରୀଙ୍କ ହୃଦୟରେ ଅଧିକ ସେବା ମନୋଭାବ ଜାଗ୍ରତ ହେଲେ, ଦେଶ ଓ ସମାଜର ଅଗ୍ରଗତିରେ ତାହା ସହାୟକ ହୋଇପାରିବ ବୋଲି ସେ ଆଶା ପ୍ରକାଶ କରିଥିଲେ । ଶ୍ରୀ ମହାପାତ୍ର କୃତୀ ଛାତ୍ରୀମାନଙ୍କୁ ପୁରସ୍କାର ବିତରଣ କରିଥିଲେ ।

ଏହି ଉତ୍ସବରେ ଡଃ ସତ୍ୟବାଦୀ ମିଶ୍ର ନାରୀଜାତିର ଉନ୍ନତି ଓ ନାରୀଶିକ୍ଷାର ପ୍ରସାର ଉପରେ ଆଲୋକପାତ କରିଥିଲେ ।

## ଗତ ଦୁଇବର୍ଷରେ କୁଟୀର ଓ କ୍ଷୁଦ୍ର ଶିଳ୍ପ

ବୃହତ୍‌ଶିଳ୍ପ ତଥା ବୃହତ୍ ଓ ମଧ୍ୟମ ଶିଳ୍ପ ପ୍ରକଳ୍ପ ଅପେକ୍ଷା ପାରଂପରିକ କୁଟୀର ଶିଳ୍ପ ଜରିଆରେ ଅଧିକ ଲୋକଙ୍କୁ ନିଯୁକ୍ତି

ସୁଯୋଗ ମିଳିଥାଏ । ଗତ ଦୁଇବର୍ଷ ମଧ୍ୟରେ ୪୭ କୋଟି ୪୩ ଲକ୍ଷ ୫୭ ହଜାର ଟଙ୍କା ବିନିଯୋଗରେ ୨ ଲକ୍ଷ ୭୮ ହଜାର ୩ ଟି କୁଟୀର ଶିଳ୍ପ ପ୍ରତିଷ୍ଠା କରାଯାଇ ସେଥିମଧ୍ୟରେ ୩ ଲକ୍ଷ ୮୦ ହଜାର ୪୨୬ ଜଣ ବ୍ୟକ୍ତିଙ୍କୁ କାମ ମିଳିପାରିଥିବା ବେଳେ ସେହି ସମୟ ମଧ୍ୟରେ ୯ ଲକ୍ଷ ୧୬ ହଜାର ୧୨୭ ଟଙ୍କା ବିନିଯୋଗରେ ୫୯୮୬ ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯାଇ ସେଥିମାଧ୍ୟମରେ ୪୦,୮୪୯ ଜଣଙ୍କୁ ନିଯୁକ୍ତି ସୁବିଧା ମିଳିପାରିଛି । ଉଭୟ ଶିଳ୍ପ ମାଧ୍ୟମରେ ୪ଲକ୍ଷ ୨୧ ହଜାର ୨୭୫ ଜଣଙ୍କୁ କାମ ମିଳି ପାରିଛି ।

ଆଉ ଏକ ଉଲ୍ଲେଖନୀୟ ଘଟଣା ହେଉଛି ଯେ ୧୯୮୫-୮୬ ମସିହାରେ ୬୯ ହଜାରଟି କୁଟୀର ଶିଳ୍ପ ଏବଂ ୩୩୦୦ ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିବା ବେଳେ ତାହା ଅପେକ୍ଷା ବହୁତ ଅଧିକ, ଅର୍ଥାତ୍ ୯୪,୫୬୮ ଟି କୁଟୀର ଶିଳ୍ପ ଏବଂ ୩୪୮୨ ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯାଇଥିଲା । ସେହିପରି ୧୯୮୬-୮୭ ଆର୍ଥିକ ବର୍ଷରେ ୭୨ ହଜାର କୁଟୀର ଶିଳ୍ପ ଓ ୨୫୦୦ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିବା ବେଳେ ୧ ଲକ୍ଷ ୩୩ ହଜାର ୩୪୫ ଟି କୁଟୀର ଶିଳ୍ପ ଏବଂ ୨୫୦୪ ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯାଇ ଉଲ୍ଲେଖନୀୟ ସାଫଲ୍ୟ ହାସଲ କରାଯାଇ ପାରିଛି ।

## ଶ୍ରମଭିତ୍ତିକ କାର୍ଯ୍ୟଗୁଡ଼ିକ ତ୍ୱରାନ୍ୱିତ କରବା ଉପରେ ମୁଖ୍ୟ ଶାସନ ସଚିବଙ୍କ ଗୁରୁତ୍ୱ

ରାଜ୍ୟର ମରୁଡ଼ିଗ୍ରସ୍ତ ଅଞ୍ଚଳଗୁଡ଼ିକରେ ବିଭିନ୍ନ କାର୍ଯ୍ୟକ୍ରମ ଅନୁଯାୟୀ ଯେଉଁ ସବୁ ଶ୍ରମଭିତ୍ତିକ କାର୍ଯ୍ୟ ହାତକୁ ନିଆଯାଇଛି, ସେଗୁଡ଼ିକ ତ୍ୱରାନ୍ୱିତ କରିବା ଓ ସେଥିପାଇଁ ଉଦ୍ଦିଷ୍ଟ ଅର୍ଥର ସଂପୂର୍ଣ୍ଣ ବିନିଯୋଗ କରିବା ଉପରେ ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା ଗୁରୁତ୍ୱ ଆରୋପ କରିଛନ୍ତି ।

ସଚିବାଳୟଠାରେ ସ୍ୱତନ୍ତ୍ର ରିଲିଫ୍ କମିଶନରଙ୍କ ଦ୍ୱାରା ଆହୂତ ସବୁ ଜିଲ୍ଲାର, 'ଇମରଜେନ୍ସି ଅଫିସର'ଙ୍କର ଏକ ବୈଠକରେ ଉଦ୍‌ବୋଧନ ଦେଇ ଶ୍ରୀ ପଣ୍ଡା କହିବେ ଯେ ଏହିସବୁ କାର୍ଯ୍ୟକ୍ରମର ସଫଳ ରୂପାୟନ ହୋଇ ଅର୍ଥର ପୂର୍ଣ୍ଣ ବିନିଯୋଗ ହେଲେ, ମରୁଡ଼ିଗ୍ରସ୍ତ ଲୋକଙ୍କର କ୍ରୟଶକ୍ତି ବୃଦ୍ଧି ପାଇବ । ଏକ୍ଷେତ୍ରରେ ପରିଲକ୍ଷିତ ହେଉଥିବା ବିଭିନ୍ନ ପ୍ରତିବନ୍ଧକ ଦୂର କରି ସେହିସବୁ କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ଶ୍ରୀ ପଣ୍ଡା ସଂପୃକ୍ତ ଅଫିସରମାନଙ୍କୁ ପରାମର୍ଶ ଦେଇଥିଲେ । ଏ ବାବଦରେ ହୋଇଥିବା ଖର୍ଚ୍ଚ ସଂପର୍କରେ ସମୀକ୍ଷା କରି ମୁଖ୍ୟ ଶାସନ ସଚିବ ଏ ବାବଦରେ ହେଉଥିବା ଖର୍ଚ୍ଚର ପର୍ଯ୍ୟାଲୋଚନା ଫଳପ୍ରଦ ଭାବେ କରାଯାଇ ଏହାର ବିବରଣୀ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କୁ ନିର୍ଦ୍ଧାରିତ ସମୟରେ ପଠାଯିବା ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ । ଆଲୋଚନାରୁ ପ୍ରକାଶ ଯେ ସବୁ ଜିଲ୍ଲାର ଫସଲ ଅମଳ ସଂପର୍କୀୟ ବିବରଣୀ (କ୍ରପ୍ କଟିଂ ରିପୋର୍ଟ) ରାଜ୍ୟ ସରକାରଙ୍କ ହସ୍ତଗତ ହୋଇଛି ।

ଏହି ବୈଠକରେ ସ୍ୱତନ୍ତ୍ର ରିଲିଫ୍ କମିଶନର ଶ୍ରୀ କେ. ଶ୍ରୀନିବାସନ୍, ରାଜସ୍ୱ ବିଭାଗ ଶାସନ ସଚିବ ଶ୍ରୀ ଭାସ୍କର ପଟ୍ଟନାୟକ, ଫୁଲବାଣୀ ଜିଲାପାଳ ଶ୍ରୀ ଉମେଶ ଚନ୍ଦ୍ର ଜେନାଙ୍କ ସମେତ ରାଜସ୍ୱ ବିଭାଗର ପଦସ୍ଥ ଅଫିସରମାନେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ଆତ୍ମ ନିଯୁକ୍ତି ତାଲିମ କାର୍ଯ୍ୟକ୍ରମ ଉଦ୍‌ଘାଟିତ

ଶ୍ରମ ଓ ନିୟୋଜନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପାଳ ଚନ୍ଦ୍ର ମହାପାତ୍ର ପୁରୀ ଜିଲ୍ଲା କଣ୍ଟିଲୋଠାରେ ଗ୍ରାମ୍ୟ ଯୁବକମାନଙ୍କ ପାଇଁ ଆତ୍ମ ନିଯୁକ୍ତି ତାଲିମ ଯୋଜନା ଉଦ୍‌ଘାଟନ କରିଥିଲେ । ଏହି ଯୋଜନାରେ ୪୦ଜଣ ଯୁବକ ଓ ୪୦ଜଣ ଯୁବତୀଙ୍କୁ ଲୁଗାବୁଣା, ସିଲେଇ କାମ, ବଢ଼େଇ କାମ, ସାଇକେଲ ମରାମତି କଂସାବାସନ ତିଆରି, ଆଲୁମିନିୟମ୍ ଢଳାଇ ଆଦି ବିଷୟରେ ୮ଟି କେନ୍ଦ୍ରରେ ୬ମାସ ଧରି ତାଲିମ ଦିଆଯିବ । ତାଲିମ ସମୟରେ ପ୍ରତ୍ୟେକ ଶିକ୍ଷାର୍ଥୀ ଶିକ୍ଷାର୍ଥିନୀ ୧୦୦ ଟଙ୍କାରୁ ୨୫୦ଟଙ୍କା ଯାଏ ବୃତ୍ତି ପାଇବେ । ତାଲିମ ପରେ ପ୍ରତ୍ୟେକଙ୍କୁ ୫୦୦ ଟଙ୍କାର 'ଟୁଲ୍‌କିଟ୍' ଯୋଗାଇ ଦିଆଯିବ ଏବଂ ବ୍ୟାଙ୍କରୁ ରିହାତି ହାରରେ ଋଣ ଯୋଗାଇ ଦେବାର ବ୍ୟବସ୍ଥା କରାଯିବ ।

ଏହି ଉପଲକ୍ଷେ ଆୟୋଜିତ ଉତ୍ସବରେ ଶ୍ରମ ମନ୍ତ୍ରୀ ଶ୍ରୀ ମହାପାତ୍ର ଉଦ୍‌ବୋଧନ ଦେଇ କହିଲେ ଯେ ଦେଶ ଅଧିକାଂଶ କ୍ଷେତ୍ରରେ ସ୍ୱାବଲମ୍ବୀ ହେବା ସଙ୍ଗେ ସଙ୍ଗେ ଏପରି ଗ୍ରାମାଭିମୁଖୀ ଯୋଜନା ଦ୍ୱାରା ଗ୍ରାମାଞ୍ଚଳରେ ଅଭୂତପୂର୍ବ ପରିବର୍ତ୍ତନ ଘଟିଛି । ଯୁବ ସମାଜ ଗୁଜିରି ପନ୍ଥରେ ନଯାଇ କିପରି ଆତ୍ମ ନିର୍ଭରଶୀଳ ହୋଇପାରିବ, ସେଥିପାଇଁ ସରକାର ସେମାନଙ୍କୁ ବିଭିନ୍ନ ଯୋଜନା ମାଧ୍ୟମରେ ଋଣ ଦେଉଛନ୍ତି ଓ ଛୋଟ ଛୋଟ ବ୍ୟବସାୟ ପାଇଁ 'ଟ୍ରାଇସେମ୍' ଯୋଜନା ଦ୍ୱରା ତାଲିମ ମଧ୍ୟ ଦିଆଯାଉଛି । ଅତୀତରେ ଦୁର୍ଭିକ୍ଷ ଓ ମହାମାରୀ ଯୋଗୁଁ ବହୁସଂଖ୍ୟକ ଲୋକ ମୃତ୍ୟୁମୁଖରେ ପଡ଼ିଥିବା ସ୍ଥଳେ ବର୍ତ୍ତମାନ ସରକାର କାହାରିକୁ ଉପବାସରେ ରହିବାକୁ ଦେବେ ନାହିଁ । ନାରୀଶିକ୍ଷାର ପ୍ରସାର ଓ ଯୌତୁକ ପ୍ରଥାର ବିଲୋପ ପାଇଁ ଯୁବ ସମାଜ ବଦ୍ଧପରିକର ହେବାକୁ ଶ୍ରମ ମନ୍ତ୍ରୀ ପରାମର୍ଶ ଦେଇଥିଲେ ।

ଖଣ୍ଡପଡ଼ା ବିଧାୟକ ଶ୍ରୀ ବିଭୂତି ଭୂଷଣ ସିଂ ମର୍ଦ୍ଦରାଜ ଏହି ଯୋଜନାର ଉପାଦେୟତା ସଂପର୍କରେ ସୂଚନା ଦେଇ ଏହାକୁ ବ୍ୟାପକ ଭାବରେ କାର୍ଯ୍ୟକାରୀ କରିବାକୁ ପରାମର୍ଶ ଦେଇଥିଲେ । କଣ୍ଟିଲୋଠାରେ ନୂତନ ଡାକ୍ତରଖାନା ନିର୍ମାଣ ପାଇଁ ୫୨ ହଜାର ଟଙ୍କା ମଞ୍ଜୁର ହୋଇଛି ଓ ଅବଶିଷ୍ଟ ୪୮ ହଜାର ଟଙ୍କା ଶୀଘ୍ର ମଞ୍ଜୁର ହେବା ପାଇଁ ପଦକ୍ଷେପ ନିଆଯାଉଛି ବୋଲି ସେ କହିଥିଲେ ।

ଏହି ଉତ୍ସବରେ ସମ୍ମାନୀୟ ଅତିଥି ଭାବେ ପିପିଲିର ପୂର୍ବତନ ବିଧାୟକ ଶ୍ରୀ ବିପିନ ଦାସ ଉଦ୍‌ବୋଧନ ଦେଇଥିଲେ । କଣ୍ଟିଲୋ ସରପଞ୍ଚ ଶ୍ରୀ ସଚ୍ଚିଦାନନ୍ଦ ଦାସ, ବିଶିଷ୍ଟ ନେତା ଶ୍ରୀ ଅନ୍ତର୍ଯ୍ୟାମୀ ସାହୁ ଓ ଶ୍ରୀସ୍ୱପ୍ନେଶ୍ୱର ମହାରଣା ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ଏଥିରେ ଯୋଗ ଦେଇଥିବେ ।

## ଦରିଦ୍ର ଲୋକମାନଙ୍କୁ ଆଇନ ସହାୟତା

୧୯୮୬-୮୭ ଓ ୧୯୮୭-୮୮ (୧୯୮୭ ଡ଼ିସେମ୍ବର ଶେଷ ସୁଦ୍ଧା) ରାଜ୍ୟର ମୋଟ୍ ୧୪,୩୬୬ ଜଣ ଦରିଦ୍ର ବ୍ୟକ୍ତିଙ୍କୁ ଆଇନ୍ ସହାୟତା ଦିଆଯାଇଛି । ତନ୍ମଧ୍ୟରୁ ପୁରୁଷ ଓ ସ୍ତ୍ରୀ ଲୋକଙ୍କ ସଂଖ୍ୟା ହେଉଛି ଯଥାକ୍ରମେ ୧୧ ହଜାର ୬୬୬ ଜଣ ଓ ୨ ହଜାର ୭୦୦ ଜଣ । ଉକ୍ତ ସ୍ତ୍ରୀ ଓ ପୁରୁଷମାନଙ୍କ ମଧ୍ୟରେ ୬ ହଜାର ୫୭୪ ଜଣ ହରିଜନ ଓ ଆଦିବାସୀ ଲୋକ ଅନ୍ତର୍ଭୁକ୍ତ ।

# ଅନନ୍ତ ଦର୍ଶୀ ସାମନ୍ତ ଚନ୍ଦ୍ରଶେଖର

ଶ୍ରୀରାମ ପଟ୍ଟନାୟକ

ଡକ୍ଟର ମାୟାଧର ମାନସିଂହ ତାଙ୍କର ''ବିଚିତ୍ର ବିଶ୍ୱ'' ରଚନାରେ କହିଛନ୍ତି, ''ସାଧାରଣତଃ ମନୁଷ୍ୟର ଚକ୍ଷୁ ତଳକୁ । ସେ କ୍ୱଚିତ୍ ଊର୍ଦ୍ଧ୍ୱ ଅନନ୍ତ ଆକାଶକୁ ଚାହିଁଥାଏ । ତା'ର ଦୃଷ୍ଟିସୀମା ମଧ୍ୟ ବେଶୀ ଦୂରକୁ ଯାଇପାରେ ନାହିଁ, ମାତ୍ର କେତେ ଶତ ଗଜ ଆଗକୁ ସେ ଦେଖିପାରେ ।'' କିନ୍ତୁ ପୃଥିବୀରେ ଅନେକ ମହାତ୍ମା ଅଛନ୍ତି ଯେଉଁମାନଙ୍କର ଦୃଷ୍ଟି ସଦା ଉନ୍ନତ ଓ ଦୂରଦର୍ଶୀ । ଏହି ମହାନ୍ ବ୍ୟକ୍ତିମାନଙ୍କର ଦୃଷ୍ଟି ଶକ୍ତି ଅନନ୍ତ ବ୍ୟାପୀ । ଏହିପରି ଜଣେ ହେଉଛନ୍ତି ଉତ୍କଳର ଅମର ପ୍ରତିଭା ମହା ମହୋପାଧ୍ୟାୟ ସାମନ୍ତ ଚନ୍ଦ୍ର ଶେଖର ସିଂହ ।

ଚନ୍ଦ୍ର ଶେଖର ପୂର୍ବତନ କ୍ଷୁଦ୍ର ଗଡ଼ଜାତ ଖଣ୍ଡପଡା ରାଜବଂଶରେ ୧୮୩୫ ମସିହାରେ ଜନ୍ମ ହୋଇଥିଲେ । ଚାହିଁଥିଲେ ସେ ଖଣ୍ଡପଡା ରାଜଗାଦିରେ ହୁଏତ ବସି ପାରିଥାଆନ୍ତେ । କିନ୍ତୁ ପିଲାଦିନୁ ତାଙ୍କର ଚିନ୍ତାଧାରା ଥିଲା ଭିନ୍ନ । ବାଲ୍ୟ କାଳରୁ ସେ ସଂସ୍କୃତରେ ଗଭୀର ଜ୍ଞାନ ଲାଭ କରି ପାରିଥିଲେ ଏବଂ ତାଙ୍କର ଆଗ୍ରହ ବସ୍ତୁତଃ ପ୍ରାଚୀନ ସଂସ୍କୃତ ଓ ଗାଣିତିକ ବିଦ୍ୟାପ୍ରତି ଆକର୍ଷିତ ହୋଇଥିଲେ । ତାଙ୍କର ପିତୃବ୍ୟ ଜଣେ ଗାଣିତିକ ଥିଲେ । ଚନ୍ଦ୍ର ଶେଖର ତାଙ୍କଠାରୁ ପ୍ରାଚୀନ ଜ୍ୟୋତିର୍ବିଜ୍ଞାନ ଶିକ୍ଷା କରି ସେଥିରେ ଅସାଧାରଣ ପାରଦର୍ଶିତା ଲାଭ କରିପାରିଥିଲେ । ନିରବଚ୍ଛିନ୍ନ ଅଧ୍ୟୟନ, ଗବେଷଣା ଓ ଅଧ୍ୟବସାୟ ବଳରେ ସେ ଦୂରଦୂରାନ୍ତ ଜ୍ୟୋତିର୍ମଣ୍ଡଳରେ ଗ୍ରହ ନକ୍ଷେତ୍ରମାନଙ୍କର ସ୍ଥିତି ଓ ଚଳନ ନିର୍ଭୁଲ ଭାବେ ଗଣନା କରି ପାରିଥିଲେ ।

ଉନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଖଣ୍ଡପଡା ପରି ଏକ କ୍ଷୁଦ୍ର ଜନପଦର ଉନ୍ନତି ବୈଜ୍ଞାନିକ ଯନ୍ତ୍ରପାତି ପାଇ ସେ ସବୁର ସାହାଯ୍ୟରେ ମହାକାଶରେ ଗ୍ରହନକ୍ଷତ୍ରଙ୍କର ଗତିବିଧି ଅଧ୍ୟୟନ କରିବା ଚନ୍ଦ୍ରଶେଖରଙ୍କ ପକ୍ଷରେ କଳ୍ପନାତୀତ ଥିଲା । କିନ୍ତୁ ତାଙ୍କର ବିଶୁଦ୍ଧ ପ୍ରତିଭା ବଳରେ ସେ ସାମାନ୍ୟ ବାଉଁଶ ନଳୀ ସାହାଯ୍ୟରେ ସୂକ୍ଷ୍ମାତି ସୂକ୍ଷ୍ମ ଯନ୍ତ୍ରମାନ ପ୍ରସ୍ତୁତ କରି ସେଥିରେ ଗ୍ରହ ନକ୍ଷତ୍ରମାନଙ୍କର ଚଳନ ନିର୍ଭୁଲ ଭାବେ ଗଣନା କରିପାରୁଥିଲେ । ଦୀର୍ଘକାଳ ଭୋକ ଶୋଷ ଭୁଲି ଦିନରାତି ଗବେଷଣା ବଳରେ ଚନ୍ଦ୍ରଶେଖର ଜାଣିପାରିଲେ ଯେ କାଳକ୍ରମେ ଗ୍ରହ ନକ୍ଷତ୍ରମାନଙ୍କର ସ୍ଥିତି, ଗତି ଓ ପ୍ରକୃତିର ବହୁ ପରିବର୍ତ୍ତନ ଘଟିଛି ଏବଂ ସେଥିଯୋଗୁଁ ପ୍ରାଚୀନ ଜ୍ୟୋତିଷ ଶାସ୍ତ୍ରମାନ ଦୋଷ ଦୁଷ୍ଟ ହୋଇ ଯାଉଛି । ତେଣୁ ସେହି ସବୁ ଶାସ୍ତ୍ରମାନଙ୍କୁ ନିର୍ଭୁଲ କରି ଜ୍ୟୋତିମଣ୍ଡଳର ଗଣନାର ସେ ସମୟରେ ବହୁ ଭୁଲ ହୋଇଯାଇଥିବାର ଦେଖାଯାଇଥିଲା । ଏହି କଥା ଅନୁଭବ କରି ଚନ୍ଦ୍ରଶେଖର ନିଜ ଗବେଷଣା ସିଦ୍ଧ ସିଦ୍ଧାନ୍ତ ଅନୁଯାୟୀ ରଚନା କଲେ ''ସିଦ୍ଧାନ୍ତ ଦର୍ପଣ'' । ।

''ସିଦ୍ଧାନ୍ତ ଦର୍ପଣ'' ଆଧୁନିକ ଜ୍ୟୋତିଷ ଶାସ୍ତ୍ରର ଏକ ଅମୂଲ୍ୟ ଗ୍ରନ୍ଥ । ଖାଲି ଓଡ଼ିଶା ବା ଭାରତ ନୁହେଁ ଇଂଲଣ୍ଡ, ଆମେରିକା, ଜର୍ମାନି ପ୍ରଭୃତି ବହୁ ପାଶ୍ଚାତ୍ୟ ଦେଶର ଜ୍ୟୋତିର୍ବିଜ୍ଞାନୀମାନେ ମଧ୍ୟ 'ସିଦ୍ଧାନ୍ତ ଦର୍ପଣ'ର ସିଦ୍ଧାନ୍ତକୁ ନିର୍ଭୁଲ ଓ ଅମୂଲ୍ୟ ବୋଲି ଆକୁଣ୍ଠ ଚିତ୍ତରେ ପ୍ରକାଶ କରିଛନ୍ତି । 'ସିଦ୍ଧାନ୍ତ ଦର୍ପଣ' ହୁଏତ ଲୋକ ଲୋଚନକୁ ଆସିପାରି ନଥାନ୍ତା, ଯଦି ଚନ୍ଦ୍ରଶେଖର ମହାମନା ଯୋଗେଶ ଚନ୍ଦ୍ରଙ୍କ ସଂସ୍ପର୍ଶରେ ଆସି ନଥାନ୍ତେ । ଆଚାର୍ଯ୍ୟ ଯୋଗେଶ ଚନ୍ଦ୍ର ରାୟ ସେତେବେଳେ ଓଡ଼ିଶାର ବିଖ୍ୟାତ ଓ ଏକମାତ୍ର କଲେଜ ରେଭେନ୍ସା କଲେଜର ଅଧ୍ୟାପକ ଥାନ୍ତି । ସେ ଥିଲେ ଜଣେ ବିଖ୍ୟାତ ଶିକ୍ଷାବିତ୍, ପଣ୍ଡିତ ଓ ଗୁଣଗ୍ରାହୀ । ଚନ୍ଦ୍ରଶେଖରଙ୍କ ନୂତନ ଗଣନା ପଦ୍ଧତି ବିଷୟ ଜାଣିପାରି ସେ ଚନ୍ଦ୍ରଶେଖରକୁ ନିଜ ପାଖକୁ ଡକାଇ ତାଙ୍କ ସହ ଜ୍ୟୋତିଷ ଶାସ୍ତ୍ରର ବିସ୍ତୃତ ଆଲୋଚନା କରି ଓ 'ସିଦ୍ଧାନ୍ତ ଦର୍ପଣ' ଚନ୍ଦ୍ରଶେଖରଙ୍କ ଅଖଣ୍ଡ ପ୍ରତିଭା ସହ ପରିଚିତ ହେଲେ ଓ ସର୍ବସାଧାରଣଙ୍କୁ ଏହା ଜାଣିବାର ସୁଯୋଗ ଦେଲେ । ଫଳରେ ଚନ୍ଦ୍ରଶେଖରଙ୍କର ପ୍ରତିଭା ବିଶ୍ୱବିଦିତ ହୋଇ ପାରିଲା ଏବଂ ବ୍ରିଟିଶ୍ ସରକାର ତାଙ୍କ ପ୍ରତିଭାକୁ ସ୍ୱୀକାର କରି ତାଙ୍କୁ ''ମହା ମହୋପାଧ୍ୟାୟ'' ଉପାଧିରେ ଭୂଷିତ କରିଥିଲେ ।

ଚନ୍ଦ୍ରଶେଖର ପ୍ରକୃତରେ ଥିଲେ ଅନନ୍ତଦର୍ଶୀ । ତତ୍କାଳୀନ ପ୍ରାଚୀନ ଗଣନା ପ୍ରସୂତି ପଞ୍ଜିକାରେ ବହୁ ଭୁଲ ହେଉଥିବାରୁ ଓଡ଼ିଶାର ପୁରପଲ୍ଲୀରେ ପର୍ବପର୍ବାଣୀମାନଙ୍କର ତିଥିବାର ପାଳନ କରିବାରେ ଅସୁବିଧା ହେଉଥିବା ସେ ଅନୁଭବ କରି ନୂତନ ପଦ୍ଧତିରେ ପଞ୍ଜିକା ପ୍ରଚଳନ କଲେ । ମୁକ୍ତିମଣ୍ଡପ ପଣ୍ଡିତ ସଭା ଏହି ପଞ୍ଜିକାର ଗଣନା ଅନୁଧ୍ୟାନରେ ସବୁକ୍ଷେତ୍ରରେ ଏହା ନିର୍ଭୁଲ ଥିବା ଅନୁଭବ କଲେ ଓ ଏହାକୁ ଶ୍ରୀଜଗନ୍ନାଥଙ୍କ ମନ୍ଦିରର ନୀତି ପାଳନରେ ଅନୁସରଣ କରିବାକୁ ସିଦ୍ଧାନ୍ତ ନେଲେ । ସେହିଦିନଠାରୁ ପଠାଣି ସାମନ୍ତଙ୍କ ଗଣନା ଅନୁସୃତ ପଞ୍ଜିକା ଖାଲି ଜଗନ୍ନାଥ ମନ୍ଦିରରେ ନୁହେଁ ଓଡ଼ିଶାର ପୁରପଲ୍ଲୀରେ ପ୍ରଚଳିତ ହେଉଅଛି ।

ଏତେ ଗୁଣ ଓ ଜ୍ଞାନର ଅଧିକାରୀ ହୋଇ ମଧ୍ୟ ଚନ୍ଦ୍ରଶେଖରଙ୍କଠାରେ ଅହଂଭାବ ବା ଆଡ଼ମ୍ବର ନଥିଲା । ସେ ଖୁବ୍ ସରଳ ଜୀବନ ଯାପନ କରୁଥିଲେ । ପିଲାଦିନୁ ସେ ଥିଲେ ଚିର ରୁଗ୍ଣ । ଅପଶଁଆଣି ବୋଲି ତାଙ୍କର ମା ତାଙ୍କ ନାମ ରଖିଥିଲେ "ପଠାଣି" ସେହି ଡାକ ନାମରେ ଘରେ ଘରେ "ପଠାଣି ସାମନ୍ତ" ନାମରେ ପରିଚିତ । ତାଙ୍କର ପ୍ରଚଣ୍ଡ ପ୍ରତିଭା ସତ୍ତ୍ୱେ ସେ ଆଜୀବନ ଦୁଃଖ କଷ୍ଟରେ କାଳାତିପାତ କରିଛନ୍ତି ।

ଚନ୍ଦ୍ରଶେଖର ଥିଲେ ଅଶେଷ ଜଗନ୍ନାଥ ଭକ୍ତ । ଶେଷ ଜୀବନ ଜଗନ୍ନାଥଙ୍କ ପାଦପଦ୍ମରେ କଟାଇବା ଲକ୍ଷ୍ୟରେ ସେ ପୁରୀକୁ ଯାଇ ସେହିଠାରେହିଁ ମୃତ୍ୟୁ ବରଣ କରିଥିଲେ । ସେ ଭବିଷ୍ୟତ ଦର୍ଶୀ ଥିବାରୁ ନିଜର ଶେଷ ମୁହୂର୍ତ୍ତ ଜାଣି ପାରିଥିଲେ ଓ ସେଥିପାଇଁ ଜଗନ୍ନାଥଙ୍କ ପାଖକୁ ଚାଲିଯାଇଥିଲେ ।

ଚନ୍ଦ୍ରଶେଖରଙ୍କ ମୃତ୍ୟୁ ଆଜକୁ ୮୪ ବର୍ଷ ହୋଇ ଗଲାଣି । ଯଦିଓ ସେ ଏବେବି ଓଡ଼ିଶାରେ ସୁପରିଚିତ ତଥାପି ତାଙ୍କ ଯଥାଯଥ ପୂଜା ଏଯାଏଁ ହୋଇ ପାରିନି । ଖଣ୍ଡପଡା ରାଜ୍ୟରେ ଗୋଟିଏ ଛାପାଖାନା ରହିଛି ଏବଂ ଏହା ସାମନ୍ତ ଚନ୍ଦ୍ରଶେଖର ନାମରେ ନାମିତ । ସ୍ୱାଧୀନତା ପରେ ଏହି ଛାପାଖାନାଟି ସରକାରଙ୍କ ଅଧୀନକୁ ଆସିଛି । କଟକ ସରକାରୀ ମୁଦ୍ରଣାଳୟର ଶାଖା ମୁଦ୍ରଣାଳୟ ରୂପେ କାମ କରୁଛି । ଅଷ୍ଟମ ପଞ୍ଚମ ବାର୍ଷିକ ଯୋଜନା ସମୟ ମଧ୍ୟରେ ଏହି ଛାପାଖାନା ସମ୍ପ୍ରସାରଣ କରାଯିବ । ଗୋଟେ ଅଧେ ସ୍କୁଲ କଲେଜ ବା ମୁଦ୍ରଣାଳୟକୁ ତାଙ୍କର ନାମରେ ନାମିତ କରି ଓ ତାଙ୍କ ଜନ୍ମ ଦିନରେ ତାଙ୍କର ସ୍ମୃତି ସ୍ମରଣ କରି ଆମେମାନେ ଆଜି ଯାଏଁ ତାଙ୍କରି ପୂଜା କରୁଛୁ ମାତ୍ର । ତେବେ ଓଡ଼ିଶା ସରକାର ଏବେ ଏହି ମହାନ୍ ପ୍ରତିଭାଙ୍କ ନାମରେ ଯେଉଁ ଜ୍ୟୋତିର୍ବିଜ୍ଞାନ ଗବେଷଣା ଅନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି ଓ ସେଥିରେ ସାମନ୍ତଙ୍କ ସିଦ୍ଧାନ୍ତାନୁସାରେ ଜ୍ୟୋତିର୍ବିଜ୍ଞାନ ଉପରେ ଗବେଷଣା କରାଯିବାର ଯୋଜନା କରିଛନ୍ତି ତାହାଦ୍ୱାରା ଏହି ମହାତ୍ମାଙ୍କ ପ୍ରତିଭାର ଯଥାଯଥ ପୂଜା କରାଯାଇ ପାରିବ ବୋଲି ଆଶା ।



ଐତିହାସିକ 'ଦାଣ୍ଡିଯାତ୍ରା' ସ୍ମାରକୀ ଉତ୍ସବରେ ପ୍ରଧାନମନ୍ତ୍ରୀ

# ସ୍ୱାଧୀନତା ପରେ ଓଡ଼ିଶାରେ କୃଷିର ଉନ୍ନତି



ଡକ୍ଟର ଦାମୋଦର ଟେଲଙ୍ଗା

ସ୍ୱ ୧୯୩୬ ମସିହା ଅପ୍ରେଲ ପହିଲାରୁ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେଲା । ସେତେବେଳେ ମାତ୍ର ୬ଟି ଜିଲ୍ଲା ଥିଲା (କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, କୋରାପୁଟ ) । ଆଉ ସବୁଥିଲେ ଗଡ଼ଜାତ ଦେଶୀୟ ରାଜ୍ୟ । ଗଡ଼ଜାତ ମିଶ୍ରଣ ପରେ ୧୯୪୮ ପରେ ୧୩ଟି ଜିଲ୍ଲା ଗଠିତ ହେଲା । ଏହି ୧୩ଟି ଜିଲ୍ଲାର ଭୌଗଳିକ କ୍ଷେତ୍ରଫଳ ୧୫୫,୭୮୨ ବର୍ଗ କିଲୋମିଟର (୧୫-୫୭୮୨ ନିୟୁତ ହେକ୍ଟର) । ୧୯୫୦ ମସିହାରେ ଓଡ଼ିଶାର ଲୋକସଂଖ୍ୟା ଥିଲା ଏକ କୋଟି ୪୬ ଲକ୍ଷ । ୧୯୮ ସୁଦ୍ଧା ଦୁଇକୋଟି ଅଠାନବେ ଲକ୍ଷ (ଦୁଇଗୁଣରୁ ବେଶୀ) ଖ୍ରୀଷ୍ଟାବ୍ଦ ୨୦୦୦ ବେଳକୁ ୩କୋଟି ୭୨ଲକ୍ଷ ହେବ ବୋଲି କଳନା କରାଯାଉଛି । ଏହି କ୍ରମରେବର୍ଦ୍ଧିଷ୍ଣୁ ଜନତା ପାଇଁ କ୍ରମେ ଖାଦ୍ୟ ପାନୀୟ, ଗୃହ ଯୋଗାଣ, ଶିକ୍ଷା, ସ୍ୱାସ୍ଥ୍ୟ, ଇତ୍ୟାଦି ସମସ୍ୟା ବୃଦ୍ଧି ପାଇବାରେ ଲାଗିଛି । ଲୋକସଂଖ୍ୟା ବୃଦ୍ଧି ସହିତ କ୍ରମେ ଅଧିକରୁ ଅଧିକ ଜମିରେ ଚାଷ କରି ବିଭିନ୍ନ ଫସଲ ଉତ୍ପାଦନ କରି ଚାହିଦା ମେଣ୍ଟାଇବାକୁ ପଡ଼ୁଛି । (ସାରଣୀ ୧)

ଦେଶୀ ଜମିରେ ଚାଷ କରିବାପାଇଁ ଗୋଚର, ଅନାବାଦି, ଦଣ୍ଡା, ଡିହ ସମେତ ବିଭିନ୍ନ ପ୍ରକାର ପତିତ ଜମିକୁ ଆବାଦ କରାଯାଉଛି । ଜଙ୍ଗଲ କଟାଯାଇ ଚାଷ ଜମିରେ ପରିଣତ ହେଉଛି । ୧୯୫୦ରେ ମୋଟକ୍ଷେତ୍ରଫଳର ଶତକଡ଼ା ୪୨ ଭାଗ ଜଙ୍ଗଲ ବର୍ତ୍ତମାନ ୧୮ ଭାଗକୁ ହ୍ରାସ ପାଇଛି । ଜଳସେଚନ ସୁବିଧା ବଢ଼ିବା ହେତୁ ବହୁ ଫସଲି ଚାଷ ବୃଦ୍ଧି ପାଉଛି । ଅନ୍ୟ

### ସାରଣୀ ୧--ଜନ ସଂଖ୍ୟା ବୃଦ୍ଧି ଓ ଚାଷର ପରମାଣ

| ବିବରଣୀ | ଜନସଂଖ୍ୟା (କୋଟି) | ନିଟ୍ ଚାଷଜମି ପରିମାଣ (ନିୟୁତ ହେକ୍ଟର) | ମୋଟ୍ ଚାଷଜମି (ଖରିଫ୍+ରବି+ ଗ୍ରୀଷ୍ମ) | ଫସଲ ସାନ୍ଦ୍ରତା |
|---|---|---|---|---|
| ୧୯୫୦-୫୧ | ୧.୪୬୪ | ୫.୬୫୭ | ୫.୯୯୧ | ୧୦୫.୫୯ |
| ୧୯୬୧ | ୧.୭୫୫ | ୫.୮୧୧ | ୬.୩୬୭ | ୧୦୯.୫୬ |
| ୧୯୭୧ | ୨.୧୯୪ | ୫.୭୬୫ | ୬.୮୭୪ | ୧୧୯.୨ |
| ୧୯୮୧ | ୨.୬୩୭ | ୬.୧୩୦ | ୮.୭୪୬ | ୧୪୨.୭ |
| ୧୯୮୫ | ୨.୮୩୮ | ୬.୨୮୮ | ୮.୭୭୪ | ୧୩୯.୫ |
| ୧୯୮୬ | ୨.୮୮୨ | ୬.୩୫୪ | ୮.୯୩୨ | ୧୪୦.୫ |
| ୨୦୦୦ | ୩.୭୨୫ | ୬.୪୦୦ | ୯.୫୦୦ | ୧୬୦ |

ଭିତରେ ସହରାଞ୍ଚଳ, ରାସ୍ତାଘାଟ, ରେଳରାସ୍ତା ଇତ୍ୟାଦି ନିର୍ମାଣ ଲାଗି କୃଷି ଉପଯୋଗୀ ଜମି ନଷ୍ଟ ହେଉଛି । ନିଟ୍ ଚାଷଜମି ବେଶୀ ବଢ଼ାଇବାରେ ସୁବିଧା ନାହିଁ । ପତିତ ଜମି ଉଠିଆ ହେବ । ୨୦୦୦ ସେଚ ଓ ବୃଷ୍ଟିପୁଷ୍ଟ କୃଷି କୌଶଳ ବୃଦ୍ଧି ଓ ପ୍ରୟୋଗ କରି ୨୦୦୦ ବେଳକୁ ୭.୨ ନିୟୁତ ଟନ୍ ଖାଦ୍ୟଶସ୍ୟ ଉତ୍ପାଦନ କରିବାକୁ ପଡ଼ିବ । ସେତେବେଳକୁ (୧୨ ବର୍ଷ ଭିତରେ) କୃଷି ସାନ୍ଦ୍ରତା ୧୬୦ ପ୍ରତିଶତ କରିବାକୁ ପଡ଼ିବ ।

## ବୃଷ୍ଟିପାତ ଓ ଜଳସେଚନ

ବୃଷ୍ଟିପାଇଁ ଜଳ ଅନିବାର୍ଯ୍ୟ । ଜଳସଂପଦର ସର୍ବ ପ୍ରଥମ ଓ ସର୍ବୋଚ୍ଚ ପରିମାଣ ବ୍ୟବହାର କୃଷିରେ । ମୋଟ ଜଳସଂପଦର ଶତକଡ଼ା ୭୦ ଭାଗ ନିଶ୍ଚୟ କୃଷିରେ ବ୍ୟବହୃତ ହେବ । ୧୯୭୩ ମସିହା ସୁଦ୍ଧା (୧୯୦୧--୭୩) ଓଡ଼ିଶାର ହାରାହାରି ବୃଷ୍ଟିପାତ ଥିଲା ୧୪୯୮ ମିଲିମିଟର । ୧୯୮୫ ସୁଦ୍ଧା ଏହା ୧୩୪୫ ମିଲିମିଟରକୁ ହ୍ରାସପାଇଛି । ବୃଷ୍ଟିପାତରୁ ମିଳୁଥିବା ମୋଟ ଜଳ ପରିମାଣ ୨୩-୩୩୮ ନିୟୁତ ହେକ୍ଟର ମିଟର ବା ୨୩୩,୩୮୮ ନିୟୁତ ଘନ ମିଟର । ଏଥିରୁ ପ୍ରାୟ ୬୮,୪୯୮ ନିୟୁତ ଘନମିଟର ବାଷ୍ପୀଭବନ ଦ୍ୱାରା ନଷ୍ଟ ହୋଇଥାଏ । ୨୪,୦୬୨ ନିୟୁତ ଘନ ମିଟର ମୃତ୍ତିକାର ନିମ୍ନସ୍ତରକୁ ଚାଲିଯାଏ । ୭୪,୬୮୪ ନିୟୁତ ଘନମିଟର ଜଳ ସମୁଦ୍ରକୁ ଚାଲିଯାଏ । ଅବଶିଷ୍ଟ ୫୬,୨୨୪ ନିୟୁତ ଘନ ମିଟର ଜଳସେଚନ ନିମିତ୍ତ ମିଳିଥାଏ ।

ଏହି ଜଳକୁ ସେଚନ ପାଇଁ ସ୍ୱାଧୀନତା ପରେ ବିଭିନ୍ନ ଯୋଜନା ଦ୍ୱାରା ସେଚ ଜମିର ପରିମାଣ ବୃଦ୍ଧି କରାଯାଉଛି । ବର୍ତ୍ତମାନ ନିଟ୍ ଚାଷ ଜମିର ଶତକଡ଼ା ୨୩-୩ ଭାଗ ଜମି ସେଚିତ ହେଉଛି । ରବି ଓ ଖାଲୁଆ ପାଇଁ ୫,୭୫,୦୦୦ ହେକ୍ଟର ଜମିରେ ଜଳ ସେଚନ କରାଯାଉଛି । (ସାରଣୀ ୨)

ଜମି ଦ୍ୱିଗୁଣିତ ହୋଇଛି । ଜଳସେଚନ ହେତୁ ଧାନ ତଥା ଅନ୍ୟାନ୍ୟ ଫସଲର ଉତ୍ପାଦନ ବୃଦ୍ଧି ପାଇଛି । କେତେକ ଅଞ୍ଚଳରେ ଜଳାନୁବେଧନତା ହେତୁ ଉତ୍ପାଦନ ହ୍ରାସ ପାଇଛି । ମରୁଡ଼ି ଦାଉରୁ କେତେକ ପରିମାଣରେ ରକ୍ଷା ମିଳିଛି ।

## ବିଭିନ୍ନ ଜାତ ଫସଲର ବୃଦ୍ଧି ଓ ହ୍ରାସ

କୃଷି କୌଶଳର ଉନ୍ନତି ହେତୁ ଡିପ ଜମିରେ ଧାନ ଫସଲର ଚାଷ ହ୍ରାସ ପାଇଛି । ତା ଯାଗାରେ ତୈଳବୀଜ, ଡାଲି ଜାତୀୟ ଫସଲ ଓ ମାଣ୍ଡିଆ ଓ ଜୁଆର ଜାତୀୟ ଫସଲ ଚାଷ ବୃଦ୍ଧି ପାଇଛି । ୧୯୫୦ ମସିହାରେ ମୋଟ ଚାଷ ଜମିର ୯୨୫ ଜମିରେ ଖାଦ୍ୟ ଫସଲ ଉତ୍ପାଦନ ହେଉଥିଲା । ୧୯୮୪-୮୫ ସୁଦ୍ଧା ଏହା ୭୫ ଭାଗକୁ ହ୍ରାସ ପାଇଛି । ମୋଟ ଖାଦ୍ୟ ଫସଲର ଶତକଡ଼ା ୭୪ ଭାଗ ଜମିରେ ଧାନ ଚାଷ ହେଉଥିଲା । ବର୍ତ୍ତମାନ ଏହା ୪୮ ଭାଗକୁ ହ୍ରାସ ପାଇଛି । ଅନ୍ୟ ଦିଗରେ ତୈଳବୀଜ ଡାଲି ଜାତୀୟ ଫସଲର ଶତକଡ଼ା ଭାଗ ବୃଦ୍ଧି ପାଇଛି । ଗଞ୍ଜ ଓ ମାଦକ ଦ୍ରବ୍ୟଫସଲର ଭାଗ ହ୍ରାସ ପାଇଛି । ଆଖୁଫସଲର କୌଣସି ପରିବର୍ତ୍ତନ ହୋଇନାହିଁ । କେବଳ ଉନ୍ନତ ଜାତି ବ୍ୟବହାର ହେତୁ ଅମଳ ସାମାନ୍ୟ ବୃଦ୍ଧି ପାଇଥିଲେହେଁ ଆଖୁ କାରଖାନା ଗୁଡ଼ିକ କ୍ଷତିରେ ଚାଲିଛି । ମସଲା ଜାତୀୟ ଫସଲ ଚାଷ ପରିମାଣ ବୃଦ୍ଧି ପାଇଛି ।

## ବିଭିନ୍ନ ଫସଲ ଉତ୍ପାଦନ

୧୯୬୫ ମସିହାରେ ତାଇଚୁଙ୍ଗ୍ ଜାତୀୟ ଅଧିକ ଅମଳକ୍ଷମ ଧାନ ଚାଷ ପ୍ରବର୍ତ୍ତନ କରାଗଲା । ଏହାର ପ୍ରସାର କ୍ରମେ ବୃଦ୍ଧି ପାଉଛି । ଉଦ୍‌ବରଣ, ଓ ଶଙ୍କରଣ ଓ ପ୍ରଜନନ

**ସାରଣୀ ୨--ଓଡ଼ିଶାରେ ଜଳସେଚନର ଉନ୍ନତି**

| ବିବରଣୀ | ନିଟ୍ ଚାଷଜମି (ନିୟୁତ) | ମୋଟ୍ ଚାଷଜମି (ନିୟୁତ) | ନିଟ୍ ଜଳସେଚିତ | ମୋଟ୍ ଜଳସେଚିତ |
|---|---|---|---|---|
| ୧୯୫୦ | ୫.୬୫୭ | ୫.୯୯୧ | ୦.୭୬ | .. |
| ୧୯୬୪ | ୫.୯୮ | ୭.୪୪୬ | ୦.୭୯ | ୧.୩୧ |
| ୧୯୭୩-୭୪ | ୫.୭୩ | ୭.୨୮୪ | ୦.୮୭୮ | .. |
| ୧୯୮୦-୮୧ | ୬.୧୩୦ | ୮.୭୪୬ | ୧.୧୯୭ | ୧.୬୧୧ |
| ୧୯୮୪-୮୫ | ୬.୨୮ | ୮.୭୭୪ | ୧.୪୪୬ | ୨.୦୪୧ |

୧୯୮୪-୮୫ ମସିହା ସୁଦ୍ଧା ୨.୪୮୬ ନିୟୁତ ହେକ୍ଟର ଜମିରେ ଏକାଧିକ ଫସଲ ଚାଷ ହେଉଛି । ରବି ଓ ଗ୍ରୀଷ୍ମ ଋତୁରେ ୫ ଲକ୍ଷ ୭୫ ହଜାର ହେକ୍ଟର ଜମିରେ ଜଳସେଚନ ହେଉଛି । ଏହା ନିଟ୍ ଚାଷ ଜମିର ଶତକଡ଼ା ୯ ଭାଗ । ଖରିଫ୍ ଋତୁରେ ଜଳସେଚିତ

ହେତୁ ବର୍ତ୍ତମାନ ମୋଟ ଧାନ ଚାଷ ଜମିର ୨୫-୩୦ ଭାଗରେ ଅଧିକ ଅମଳକ୍ଷମ ଧାନ ଚାଷ ହେଉଛି । ମୋଟ ଧାନ ଉତ୍ପାଦନର ଶତକଡ଼ା ପ୍ରାୟ ୧୭ ଭାଗ ଅଧିକ ଅମଳକ୍ଷମ ଧାନରୁ ମିଳୁଛି । ହେଲେ, ଖରିଫ ଋତୁରେ ସବୁ କିସମ

ଜମିପାଇଁ ଅଧିକ ଅମଳକ୍ଷମ ଧାନ ଜାତି ଏ ପର୍ଯ୍ୟନ୍ତ ବାହାରି ନାହିଁ । ଗବେଷଣା ଚାଲିଛି । ଡେଙ୍ଗା ଦେଶୀ ଧାନ ମୁଖ୍ୟତଃ ଚାଷ ହେଉଛି ।

୧୯୫୦ ମସିହାରେ ମୋଟ ୩·୮୫୬ ନିୟୁତ ହେକ୍ଟର ଜମିରେ ଧାନଚାଷ ହେଉଥିଲା । ମୋଟ ୨୦-୦୬ ଲକ୍ଷଟନ ଚାଉଳ ଉତ୍ପାଦିତ ହେଉଥିଲା । ସେଥିରୁ ଡାଲୁଅ ଧାନ ଚାଉଳ ମାତ୍ର ୬ ହଜାର ଟନ ଥିଲା । ୧୯୮୫–୮୬ ସୁଦ୍ଧା ୪-୪୦୨ ହେକ୍ଟର ଜମିରୁ ଡାଲୁଅ ଧାନ ଜମି ପରିମାଣ ୬ଲକ୍ଷ ହଜାର ହେକ୍ଟରକୁ ପାଉଛି । ଡାଲୁଅ ଚାଉଳ ପରିମାଣ ୩ଲକ୍ଷ ୪୬ ହଜାରଟନ । ମୋଟ ୫୨ଲକ୍ଷ ୨୬ ହଜାର ଟନର ଶତକଡ଼ା ୬·୬୨ଭାଗ । ୩୫ ବର୍ଷ ମଧ୍ୟରେ ମୋଟ ଚାଉଳ ଆଦାୟ ୨·୬ ଗୁଣ (୧୬୦-୫ ଭାଗ) ବୃଦ୍ଧି ପାଇଛି । ଖରିଫ ଧାନର ଉତ୍ପାଦିକତା ୨·୨୩ ଗୁଣ ବୃଦ୍ଧି ପାଇଛି । ଖାଲ ଓ ଗହୀର ଓ ବୁଡ଼ି ଅଞ୍ଚଳ ଧାନ ଉତ୍ପାଦିକତା ଆଶାଜନକ ଭାବେ ବୃଦ୍ଧି ପାଉନାହିଁ (ସାରଣୀ ୩) ।

ହାରାହାରି ଉତ୍ପାଦିକତା ହେକ୍ଟର ପିଛାଥିଲା ଖୁବ୍ କମ୍ (ମାଣ୍ଡିଆ ୨୫୫ କି: ଗ୍ରା, ଜୁଆର ୪୪୨ କି. ଗ୍ରା·) । ୧୯୮୫-୮୬ ସୁଦ୍ଧା ଏହି ସବୁ ଫସଲ ଚାଷ ୬,୫୧.୦୦୦ ହେକ୍ଟରକୁ ବୃଦ୍ଧି ପାଇଛି । ମାଣ୍ଡିଆ ଓ ଜୁଆର ଫସଲର ଉତ୍ପାଦିକତା ଯଥାକ୍ରମେ ୮୩୭ ଓ ୯୬୬ କି. ଗ୍ରା. କୁ ବୃଦ୍ଧି ପାଇଛି । (ସାରଣୀ-୪) । ଅଧିକ ଉତ୍ପାଦନକ୍ଷମ ଜାତି ଉଦ୍‌ଭାବନ ହେତୁ ମକାର ଉତ୍ପାଦିକତା ୩ ଗୁଣ ବଢ଼ିଛି । ଅନ୍ୟାନ୍ୟ ଫସଲର ଉତ୍ପାଦିକତା କିନ୍ତୁ ସାମାନ୍ୟ ବୃଦ୍ଧି ପାଇଛି ।

## ଡାଲି ଜାତୀୟ ଫସଲ

ମୁଗ ବିରି, କୋଳଥ, ବୁଟ, ହରଡ ଓ ଚଣା ଓଡ଼ିଶାର ଡାଲିଜାତୀୟ ଫସଲ । ସବୁଠାରୁ ମୁଗ ଚାଷ ବେଶୀ । ୧୯୫୦-୫୧ ମସିହାରେ ପ୍ରାୟ ୪୧୦ ହେକ୍ଟର ଜମିରେ ଡାଲି ଜାତୀୟ ଫସଲ ଚାଷ ହେଉଥିଲା । ହେକ୍ଟର ପ୍ରତି

### ସାରଣୀ ୩--ଓଡ଼ିଶାରେ ଧାନ ଉତ୍ପାଦନର ବୃଦ୍ଧି

| ବିବରଣୀ | ଖରିଫ ଚାଉଳ | | ଡାଲୁଅ ଚାଉଳ | | ମୋଟ ଚାଉଳ | |
|---|---|---|---|---|---|---|
| | ବିଆଳି—ଶାରଦ ନିୟତ ହେକ୍ଟର | ଉତ୍ପାଦିକତା ହେକ୍ଟର ପ୍ରତି କି.ଗ୍ରା. | ହେକ୍ଟର (,୦୦୦) | ଉତ୍ପାଦିକତା | ନିୟୁତ ହେକ୍ଟର | ଉତ୍ପାଦିକତା |
| ୧୯୫୦—୫୧ | ୩-୮୪ | ୫୨୦ | ୧୦ | ୬୨୭ | ୩-୮୫ | ୫୬୦ |
| ୧୯୬୦—୬୧ | ୩-୭୬ | ୯୮୮ | ୩୩ | ୬୯୭ | ୩-୭୯ | ୯୮୬ |
| | ୪-୨୭ | ୧,୦୨୧ | ୪୬ | ୮୭୬ | ୪-୩୧ | ୧,୦୨୦ |
| ୧୯୭୦-୭୧ | ୪-୩୪ | ୯୦୨ | ୧୩୫ | ୧,୩୮୬ | ୪-୪୭ | ୯୧୭ |
| ୧୯୭୫-୭୬ | ୪-୫୦ | ୯୪୯ | ୧୮୦ | ୧,୪୩୧ | ୪-୬୮ | ୯୬୮ |
| ୧୯୮୦-୮୧ | ୪-୦୧ | ୧,୦୦୩ | ୧୭୨ | ୧,୫୭୨ | ୪,୧୯୧ | ୧,୦୨୬ |
| ୧୯୮୩-୮୪ | ୪-୧୫ | ୧,୧୪୮ | ୨୦୮ | ୧,୭୨୧ | ୪-୩୫ | ୧,୧୭୬ |
| ୧୯୮୫-୮୬ | ୪-୧୯୬ | ୧.୧୬୩ | ୨୦୬ | ୧.୬୭୯ | ୪-୪୦୨ | ୧.୧୮୭ |

ଗହମ— ଓଡ଼ିଶାରେ ଶୀତଋତୁ ମାତ୍ର ଦୁଇମାସ । ଥଣ୍ଡା କମପଡ଼େ । ଗହମ ପାଇଁ ଜଳସେଚନ ଆବଶ୍ୟକ । ପଟୁ ଓ ଦୋରସା ଉର୍ବରା ମୃତ୍ତିକା ଆବଶ୍ୟକ ମଧ୍ୟ । ଏଣୁ ଓଡ଼ିଶାରେ ଗହମ ବହୁଳ ପରିମାଣରେ ଚାଷ କରାଯାଏ ନାହିଁ । କିନ୍ତୁ ଜଳସେଚନର ସୁବିଧା ହେତୁ ଓ ଅଧିକ ଉତ୍ପାଦନକ୍ଷମ ଗହମ ଜାତି ଉଦ୍‌ଭାବନ ହେତୁ ଓଡ଼ିଶାରେ ଗହମ ଚାଷ ବୃଦ୍ଧି ପାଇବାରେ ଲାଗିଛି । ୧୯୫୦ ମସିହାରେ ପ୍ରାୟ ୫,୦୦୦ ହେକ୍ଟର ଜମିରେ ଗହମ ଚାଷ ହେଉଥିଲା । ଉତ୍ପାଦିକତାଥିଲା ହେକ୍ଟରପ୍ରତି ୬୩୦ କି.ଗ୍ରା. । ୧୯୮୫-୮୬ ସୁଦ୍ଧା ୫୬,୦୦୦ ହେକ୍ଟର ଜମିରେ ଗହମ ଚାଷ ହେଉଛି ଏବଂ ଉତ୍ପାଦିକତା ୧୮୦୦ କିଲୋଗ୍ରାମକୁ ବୃଦ୍ଧି ପାଇଛି ।

## ଅନ୍ୟାନ୍ୟ ଶସ୍ୟଜାତୀୟ ଫସଲ

ମକା, ମାଣ୍ଡିଆ, ଜୁଆର, ବାଜରା, ଗୁଲ୍‌ଦି, କୋଦୁଅ, ସୁଆଁ ଏହାର ଅନ୍ତର୍ଗତ । ୧୯୫୦ ମସିହା ସୁଦ୍ଧା ଏ ସବୁ ଫସଲ ୧,୯୮,୦୦୦ ହେକ୍ଟର ଜମିରେ ଚାଷ ହେଉଥିଲା ।

ପ୍ରାୟ ୫୨୦ କି: ଗ୍ରା: ଅମଳ ମିଳୁଥିଲା । ଅଧିକ ଅମଳକ୍ଷମ ଜାତି, ସାର, ଜଳସେଚନ ଓ ବୈଜ୍ଞାନିକ ପଦ୍ଧତି ଅନୁସରଣ ଦ୍ୱାରା ବର୍ତ୍ତମାନ ୧-୯୩୩ ନିୟୁତ ହେକ୍ଟର ଜମିରେ ଏହିସବୁ ଫସଲ ହେକ୍ଟର ପ୍ରତି ୫୭୧ କି-ଗ୍ରା ଅମଳ ହେଉଛି । ଏ କ୍ଷେତ୍ରରେ ଆମର ଅଗ୍ରଗତି ବିଶେଷ ଉଲ୍ଲେଖନୀୟ ହୋଇନାହିଁ । ଶୀତଦିନ ଲାଗି ଉପଯୁକ୍ତ ଅଧିକ ଅମଳକ୍ଷମ ଫସଲ ଜାତି ଉଦ୍‌ଭାବନ ହୋଇନାହିଁ ।

## ତୈଳଜାତୀୟ ଫସଲ

ସୋରିଷ, ରାଶି, ଅଳସୀ, ଚିନାବାଦାମ, ଫେସି ଓ ଜଡ଼ା ଆମର ପ୍ରଧାନ ତୈଳଜାତୀୟ ଫସଲ । ଏମାନଙ୍କ ମଧ୍ୟରୁ ଚିନାବାଦାମ ଚାଷ ଓ ଉତ୍ପାଦିକତା ବୃଦ୍ଧି ଉଲ୍ଲେଖ-ଯୋଗ୍ୟ । ଓଡ଼ିଶାରେ ଚିନାବାଦାମର ଉତ୍ପାଦିକତା ଭାରତରେ ମଧ୍ୟ ସର୍ବାଧିକ । ୧୯୫୦ ମସିହାରେ ମୋଟ ୨୫,୦୦୦ ହେକ୍ଟର ଜମିରେ ଚିନାବାଦାମ ଚାଷ ହେଉଥିଲା ।

## ସାରଣୀ ୪--ଅନ୍ୟାନ୍ୟ ଶସ୍ୟ ଜାତୀୟ ଫସଲର ଉନ୍ନତ

| ବିବରଣୀ | ୧୯୫୦-୫୧ | | ୧୯୮୫-୮୬ | |
|---|---|---|---|---|
| | ଚାଷଜମି (,୦୦୦ ହେକ୍ଟର) | ଉତ୍ପାଦିକତା (ହେକ୍ଟର ପ୍ରତି) କି. ଗ୍ରା. | ଚାଷଜମି (, ୦୦୦ ହେକ୍ଟର) | ଉତ୍ପାଦିକତା (ହେକ୍ଟର ପ୍ରତି) କି. ଗ୍ରା. |
| ମକା | ୨୩ | ୩୯୦ | ୧୬୫ | ୧,୦୫୫ |
| ମାଣ୍ଡିଆ | ୧୨୧ | ୨୫୫ | ୨୮୨ | ୮୩୭ |
| ଜୁଆର | ୭ | ୪୪୨ | ୩୫ | ୯୬୬ |
| ବାଜରା | ୪ | ୨୮୨ | ୧୧ | ୯୧୪ |
| ସୁଆଁ, କୁଲ୍ଥି ଆଦି କ୍ଷୁଦ୍ର ଶସ୍ୟ | ୪୩ | ୨୭୦ | ୧୫୮ | ୫୬୦ |

ଉତ୍ପାଦିକତା ଥିଲା ୮୫୩ କି ଗ୍ରା: । ବର୍ତ୍ତମାନ ୩୨୩ ହଜାର ହେକ୍ଟର ଜମିରେ ହାରାହାରି ୧୪୩୫ କି: ଗ୍ରା ଉତ୍ପାଦିକତାରେ ଚାଷ ହେଉଛି । ରବି ଓ ଖରାଦିଆ ଚିନାବାଦାମ ଚାଷରେ ବହୁତ ଉନ୍ନତି ସାଧିତ ହୋଇଛି । ଜଳ ସେଚିତ ଓ ବୃଷ୍ଟି-ପୁଷ୍ଟ ଅଞ୍ଚଳରେ ଏହା ଏକ ଲାଭଜନକ ଫସଲ ରୂପେ ପରି-ଗଣିତ ହୋଇଛି । ବୃଷ୍ଟିପୁଷ୍ଟ ଅଞ୍ଚଳରେ ଏହି ଫସଲ ମୁଗ ଫସଲକୁ ହଟାଇ ଦେଲଣି । ସୋୟାବିନ୍ ଗୋଟିଏ ଡାଲି ଓ ତୈଳବୀଜ ଜାତୀୟ ଫସଲ । ଏହାର ଚାଷ ଓଡ଼ିଶାରେ କମେ ବଢ଼ୁଛି । କେବଳ ଜଳସେଚିତ ଜମିରେ ଡାଲି ଓ ତୈଳଜାତୀୟ ଫସଲର ଅମଳ ଓ ମୋଟ ଉତ୍ପାଦନ ହ୍ରାସ ପାଇଛି । ସୋରିଷ ଓ ରାଶି ଫସଲରେ ଅଳ୍ପ ସାଫଲ୍ୟ ଲାଭ କରାଯାଇଛି । ଅନ୍ୟାନ୍ୟ ଫସଲର ଉତ୍ପାଦିକତା ବୃଦ୍ଧି ପାଇ ନାହିଁ । (ସାରଣୀ ୫)

କପାଚାଷ କରାଯାଇ ହେକ୍ଟର ପିଛା ୩୬ କି:ଗ୍ରା ମଞ୍ଜ-କପା ଉତ୍ପାଦିତ ହେଉଥିଲା । ବର୍ତ୍ତମାନ ଏହି ଫସଲ ମାତ୍ର ୩ ହଜାର ହେକ୍ଟର ଜମିରେ ଚାଷ ହେଉଛି । କିନ୍ତୁ ଉତ୍ପାଦିକତା ୧୭୦ କି:ଗ୍ରା:କୁ ବୃଦ୍ଧି ପାଇଛି । ଏହା ଅଧିକ ଅମଳକ୍ଷମ ଜାତି କପାଚାଷଯୋଗୁ ସମ୍ଭବ ହୋଇଛି ।

ଝୋଟ—ଏ ଫସଲର ଚାଷ ପ୍ରାୟ ୪୫ ହଜାର-୫୦ ହଜାର ହେକ୍ଟର ଜମିରେ ଉତ୍ପାଦିକତା ୯୭୯ କି: ଗ୍ରା:ରୁ ୧୪୯୮ କି:ଗ୍ରା:କୁ ବୃଦ୍ଧି ପାଇଛି । ମେସ୍ତାଦା ଖଟା କାଉଁରିଆର କ୍ଷେତ୍ରଫଳ ୭,୦୦୦ ହେକ୍ଟରରୁ ୪୨,୦୦୦ ହେକ୍ଟରକୁ ବୃଦ୍ଧି ପାଇଛି । ଉତ୍ପାଦିକତା ୮୫୦—୯୦୦ କି:ଗ୍ରା ରହିଛି ।

ଆଖୁ—ଏହି ଫସଲର କ୍ଷେତ୍ରଫଳ ବଢ଼ିଛି କିନ୍ତୁ ଉତ୍ପାଦିକତା ଅଳ୍ପ ବୃଦ୍ଧି ପାଇଛି । ୧୯୫୦ ମସିହାରେ ୨୫,୦୦୦ ହେକ୍ଟର

## ସାରଣୀ ୫--ତୈଳବୀଜ ଜାତୀୟ ଫସଲର ଉନ୍ନତ

| ବିବରଣୀ | ୧୯୫୦—୫୧ | | ୧୯୮୫—୮୬ | |
|---|---|---|---|---|
| | ଚାଷଜମି (,୦୦୦ ହେକ୍ଟର) | ଉତ୍ପାଦିକତା (ହେକ୍ଟର ପ୍ରତି) କି.ଗ୍ରା. | ଚାଷଜମି (,୦୦୦ ହେକ୍ଟର) | ଉତ୍ପାଦିକତା |
| (୧) | (୨) | (୩) | (୪) | (୫) |
| ଚିନାବାଦାମ | ୨୫ | ୫୮୩ | ୩୨୩ | ୧,୪୩୪ |
| ରାଶି | ୧୦୨ | ୨୨୫ | ୨୨୮ | ୫୨୮ |
| ସୋରିଷ | ୨୬ | ୪୨୪ | ୧୩୬ | ୪୫୭ |
| ଅଳସୀ | ୧୦ | ୨୯୮ | ୧୭୭ | ୩୮୪ |
| ଅନ୍ୟାନ୍ୟ | ୨୫ | ୨୮୦ | ୨୪୯ | ୪୧୯ |
| ମୋଟ | ୧୭୮ | ୩୫୫ | ୯୮୭ | ୭୮୭ |

କପା—ଏ ଫସଲର ଚାଷ ଓ ଅମଳ ବେଶୀ ବୃଦ୍ଧି ପାଇନାହିଁ । ୧୯୫୪—୫୫ ମସିହାରେ ୯,୭୯୦ ହେକ୍ଟର ଜମିରେ

ଜମିରେ ହେକ୍ଟର ପ୍ରତି ୪୪ ଟନ ଆଖୁ ଉତ୍ପାଦିତ ହେଉଥିବା ସ୍ଥଳେ ୧୯୮୫—୮୬ରେ ଏହି ଫସଲ ୪୮,୦୦୦ ହେକ୍ଟର

ଜମିରେ ହାରାହାରି ୬୫ ଟନ ଉତ୍ପାଦିକତାରେ ଚାଷ ହେଉଛି । ଆଶାଜନକ ଭାବେ ଆଖୁ ଫସଲର ପ୍ରସାର ଓ ଉତ୍ପାଦିକତା ବୃଦ୍ଧି ନପାଇଥିବାରୁ ଚିନିକଳଗୁଡ଼ିକ ବେଶୀ ଆଖୁ ପେଡ଼ିବାକୁ ପାଉ ନାହାନ୍ତି । ଏଥିପାଇଁ ମଧ୍ୟ ଅନ୍ୟାନ୍ୟ କାରଣ ଦାୟି ।

ଆଳୁ—ଏ ଫସଲର ଉତ୍ପାଦନ ହ୍ରାସ ପାଇବାରେ ଲଗିଛି । ୧୯୫୦–୫୧ରେ ୩,୦୦୦ ହେକ୍ଟର ଜମିରେ ଚାଷ ହେଉଥିଲା । ଏହା କ୍ରମେ ବଢ଼ି ୧୯୬୪–୬୭ ମଧ୍ୟରେ ୩୧,୦୦୦ ହେକ୍ଟରକୁ ବ୍ୟାପିଥିଲା । ଉତ୍ପାଦିକତା ୧୧'୭–୧୨ଟନକୁ ବୃଦ୍ଧି ପାଇଥିଲା । କିନ୍ତୁ କ୍ରମେ ଏହା ହ୍ରାସ ପାଇ ୧୯୮୫ରେ ୯,୦୦୦ ହେକ୍ଟରରେ ଚାଷ ହୋଇଛି । ଉତ୍ପାଦିକତା ୯'୫ ଟନକୁ ହ୍ରାସ ପାଇଛି । ଏଥିପାଇଁ ଜଳ ସେଚନ, ଶୀତଳ ଭଣ୍ଡାର ଓ ମଞ୍ଜି ଯୋଗାଣର ଅବ୍ୟବସ୍ଥା ଦାୟି ।

## ମସଲା ଜାତୀୟ ଫସଲ

୧୯୫୦–୧୯୮୫ ମଧ୍ୟରେ ଏସବୁ ଫସଲ ଚାଷ ୩୩,୦୦୦ ହେକ୍ଟରରୁ ୧୫୭ ହଜାର ହେକ୍ଟରକୁ ବୃଦ୍ଧି ପାଇଛି । କିନ୍ତୁ ଏହିସବୁ ଫସଲର ଉତ୍ପାଦିକତାରେ କୌଣସି ଉନ୍ନତି ସାଧିତ ହୋଇନାହିଁ । ଧନିଆ ଚାଷ ହ୍ରାସ ପାଇଛି । ତ୍ରିକୋଣ ଭୂମି ୧ ଓ ୨ରେ ଜଳ ସେଚନର ପ୍ରସାର ଓ ଜଳ ନିୟନ୍ତ୍ରଣ ବିଫଳତା ବିଭିନ୍ନ କାରଣମାନଙ୍କ ମଧ୍ୟରୁ ମୁଖ୍ୟ ।

## ପନିପରିବା ଓ ଫଳ ଚାଷ

ବାଗିଆଡେ ଓ ଢିପ ଜମିମାନଙ୍କରେ ପନିପରିବା ଓ ଫଳ ଚାଷ ବୃଦ୍ଧି ପାଇଛି । ଯେଉଁ ଅଞ୍ଚଳରେ ପରିବା ଚାଷ ହେଉ ନଥିଲା ସେ ଅଞ୍ଚଳରେ ଏବେ ବହୁ ପରିମାଣରେ ଉତ୍ପାଦିତ ହୋଇ ବିକ୍ରି ହେଉଛି । ବାଗିଆଡେ କଦଳୀ, ଅମୃତଭଣ୍ଡା ନଡ଼ିଆ, ଆମ୍ବ ଓ ଲେମ୍ବୁଚାଷ ବୃଦ୍ଧି ପାଇଛି । ବାରି ଓ ବଗିଚାକୁ ମିଶାଇ ଆମ ରାଜ୍ୟରେ ବର୍ତ୍ତମାନ ପ୍ରାୟ ୫ଲକ୍ଷ ୨୨ ହଜାର ହେକ୍ଟର ଜମିରେ ପରିବା ଓ ଏକ ଲକ୍ଷ ତେଷଠି ହଜାର ହେକ୍ଟର ଜମିରେ ଫଳ ଚାଷ ହେଉଛି । ଆମ ରାଜ୍ୟର ଚାହିଦା ଆମେ ପୂରଣ କରି ପାରୁନାହୁଁ । ଏଣୁ ବାହାର ରାଜ୍ୟରୁ ଆମକୁ ପନିପରିବା ଓ ଫଳ ଆମଦାନି କରିବାକୁ ପଡୁଛି । ଓଡିଶାରେ ବ୍ୟାପକ ଅଞ୍ଚଳ (୪୦ ପରସେଣ୍ଟ୍) ଫଳ ଓ ପନିପରିବା ଚାଷ ପାଇଁ ଉପଯୁକ୍ତ । ଏ ଦିଗରେ ଆମର ଉନ୍ନତି ସନ୍ତୋଷ ଜନକ ନହେଲେ ମଧ୍ୟ ହତୋତ୍ସାହ ଜନକ ନୁହେଁ ।

## ସାର ବ୍ୟବହାର

୧୯୫୦ ମସିହାରେ ରାଜ୍ୟରେ ପ୍ରାୟ ରାସାୟନିକ ସାର ବ୍ୟବହୃତ ହେଉନଥିଲା । ବର୍ତ୍ତମାନ ହେକ୍ଟର ପ୍ରତି ୧୫'୭୪ କି:ଗ୍ରା (ଯବକ୍ଷାରଯାନ, ଫସଫେଟ ଓ ପଟାସ) ବ୍ୟବହୃତ ହେଉଛି । ହେଲେହେଁ, ଏହା ଅନ୍ୟାନ୍ୟ ରାଜ୍ୟ ତୁଳନାରେ ବହୁତ କମ୍ । ସମ୍ବଲପୁରରେ ସର୍ବାଧିକ ହେକ୍ଟର ପିଛା ୫୦ କି:ଗ୍ରା ଓ କଳାହାଣ୍ଡିରେ ୧ କି:ଗ୍ରା ବ୍ୟବହୃତ ହେଉଛି । କଳାହାଣ୍ଡିରେ ଚାଷୀ ଏବେବି ଭାବୁଛନ୍ତି ଯେ ସାର ଦେଲେ ମାଟିର ଉତ୍ପାଦିକତା ନଷ୍ଟ ହେଉଛି ।

ପୋକ ଓ ରୋଗପାଇଁ ବ୍ୟବହୃତ ଔଷଧ ପରିମାଣ ଏପର୍ଯ୍ୟନ୍ତ ଉଲ୍ଲେଖନୀୟ ସ୍ତରକୁ ଆସିନାହିଁ ।

## ଖାଦ୍ୟ ଉତ୍ପାଦନ

କୃଷି ଉପରେ ଅଧିକ ଗୁରୁତ୍ୱ ଆରୋପ ହେତୁ ଉତ୍ପାଦନ ବୃଦ୍ଧି ପାଇଛି (ସାରଣୀ ୬) । ମୋଟ ଖାଦ୍ୟ ଶସ୍ୟ ଉତ୍ପାଦନ

**ସାରଣୀ ୬--ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି**

| ବିବରଣୀ | ଚାଷଜମି ନିୟୁତ ହେକ୍ଟର | ମୋଟ ଉତ୍ପାଦନ ନିୟୁତ ଟନ |
|---|---|---|
| ୧୯୫୦-୫୧ | ୪'୩୮ | ୨'୩୯ |
| ୧୯୬୦-୬୧ | ୪'୪୪ | ୪'୦୩ |
| ୧୯୬୪-୬୫ | ୫'୩୧ | ୪'୯୨ |
| ୧୯୭୦-୭୧ | ୫'୭୪ | ୪'୮୬ |
| ୧୯୭୫-୭୬ | ୬'୪୮ | ୫'୫୭ |
| ୧୯୮୦-୮୧ | ୬'୯୧ | ୫'୯୮ |
| ୧୯୮୫-୮୬ | ୭'୦୪ | ୬'୯୭ |

୧୯୫୦ ମସିହାରୁ ୧୯୮୫ ଭିତରେ ୨'୯ ଗୁଣ (୧୯୨ %) ବୃଦ୍ଧି ପାଇଛି । ସେହି ଅନୁସାରେ ମୁଣ୍ଡପିଛା ଖାଦ୍ୟ ଖାଇବା ମଧ୍ୟ ବୃଦ୍ଧି ପାଇଛି । ପ୍ରଥମ ପଞ୍ଚବାର୍ଷିକ ଯୋଜନା ଶେଷ ବେଳକୁ ମୁଣ୍ଡପିଛା ଦୈନିକ ୩୫୭ ଗ୍ରାମ ଚାଉଳ ସମେତ ୩୬୭ ଗ୍ରାମ ମୋଟ ଦାନା ଜାତୀୟ ଖାଦ୍ୟ, ୪୬ ଗ୍ରାମ ଡାଲି, ୧୧ ଗ୍ରାମ ତେଲ ଓ ୧୪ ଗ୍ରାମ ଚିନି ମିଳୁଥିଲା । ଲୋକସଂଖ୍ୟା ଦୁଇଗୁଣରୁ ଅଧିକ ବୃଦ୍ଧି ସତ୍ତ୍ୱେ ଉତ୍ପାଦନ ବୃଦ୍ଧି ହେତୁ ବର୍ତ୍ତମାନ ଜଣେ ଲୋକ ଦିନକୁ ୫୦୦ ଗ୍ରାମ ଚାଉଳ ସମେତ ୫୬୩ ଗ୍ରାମ ମୋଟ ଦାନାଜାତୀୟ ଖାଦ୍ୟ, ୧୦୬ ଗ୍ରାମ ଡାଲି, ୭୪ଗ୍ରାମ ତେଲ ଓ ୩୦ ଗ୍ରାମ ଚିନି ପାଇ ପାରୁଛି । କୃଷି ଉତ୍ପାଦନ ମନ୍ଥର ଗତିରେ ବୃଦ୍ଧି ପାଇଛି ବୋଲି ମୋର ଧାରଣା ।

କୃଷି କଲେଜ
ଭୁବନେଶ୍ୱର ।

○



# ବ୍ରିଟିଶ ଶାସନରେ ଓଡ଼ିଶାର ଆଦିବାସୀ



ଶ୍ରୀ ବଳରାମ ମହାନ୍ତି

ବ୍ରିଟିଶ ସରକାର ୧୮୦୩ ମସିହାରେ ଓଡିଶାକୁ ସଂପୂର୍ଣ୍ଣରୂପେ ଶାସନାଧୀନ କରିଦେବା ପରେ ବିଶାଳ ଓଡିଆ ଭାଷୀ ଅଂଚଳକୁ ଖଣ୍ଡ ଖଣ୍ଡ କରି ସ୍ୱତୋଟି ପ୍ରଦେଶ ସହିତ ଯୋଡି ଦେଲେ । ସେଥିଭିତରୁ ବଂଗ ପ୍ରଦେଶର ଅନ୍ତର୍ଭୁକ୍ତ ହୋଇଥିବା ଓଡିଶାର ଉପକୂଳବର୍ତ୍ତୀ ଅଂଚଳ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାମାନଙ୍କରେ ଆଦିବାସୀଙ୍କ ସଂଖ୍ୟା ଥିଲା ଅତି ଅଳ୍ପ । ମାତ୍ର ଏହି ଡିଭିଜନ ସହିତ ରହିଥିବା କେତୋଟି ପୂର୍ବତନ ଗଡଜାତ ଅଂଚଳରେ କେତେକ ଆଦିବାସୀ ବାସ କରୁଥିଲେ । ମାତ୍ର ଓଡିଶାର ଅଧିକାଂଶ ଆଦିବାସୀ ପୂର୍ବତନ ଗଡଜାତ ଅଂଚଳ, କନ୍ଧମାଳ ଅଂଚଳ ତଥା ମାନ୍ଦ୍ରାଜ ପ୍ରଦେଶ ସହିତ ଗଞ୍ଜାମ ଓ କୋରାପୁଟ ଜିଲ୍ଲାମାନଙ୍କରେ ଥିଲେ । ଏହି ଆଦିବାସୀ ବହୁଳ ଅଂଚଳଗୁଡ଼ିକ ଥିଲା ଅଗମ୍ୟ ଅଂଚଳ । ସମତଳ ଅଂଚଳର ଅଧିବାସୀଙ୍କ ସହିତ ଏହି ଅଂଚଳଗୁଡ଼ିକ ଏକ ପ୍ରକାର ବିଚ୍ଛିନ୍ନ ହୋଇ ରହିଥିଲା । ଅନ୍ୟ ଅଂଚଳଠାରୁ ବିଚ୍ଛିନ୍ନ ହୋଇ ରହିବା ଫଳରେ ଆଦିବାସୀ ବହୁଳ ଅଂଚଳର ଆଦିବାସୀମାନେ ସେମାନଙ୍କର ଚଳଣି, ପର୍ବପର୍ବାଣୀ ଓ ନୃତ୍ୟଗୀତର ମୌଳିକତା ରକ୍ଷା କରି ପାରିଥିଲେ ତେଣୁ ଆଦିବାସୀଙ୍କ ସଂସ୍କୃତିକ ପରମ୍ପରା ଅକ୍ଷୁର୍ଣ୍ଣ ରହି ପାରିଛି ।

ବ୍ରିଟିଶ ଶାସକମାନେ ଆଦିବାସୀ ବହୁଳ ଅଂଚଳରେ ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବା ଏବଂ ସେହି ଅଂଚଳରୁ ରାଜସ୍ୱ ସଂଗ୍ରହ କରିବା ନିମନ୍ତେ ସମତଳ ଅଂଚଳରୁ ଏହିସବୁ ଅଂଚଳକୁ ରାସ୍ତାଘାଟ ସଂଯୋଗ ନିର୍ମାଣ କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ବ୍ରିଟିଶ ସରକାର କଂଧଙ୍କ ଭଳି କେତେକ ଆଦିବାସୀଙ୍କ ବିଦ୍ରୋହର ସମ୍ମୁଖୀନ ହୋଇଥିଲେ ତେଣୁ ସେମାନଙ୍କ ବିଦ୍ରୋହକୁ ଦମନ କରିବାକୁ ପଡିଥିଲା । ବ୍ରିଟିଶ ଶାସନ ପୂର୍ବରୁ ଆଦିବାସୀ ବହୁଳ ଅଂଚଳରେ ଗ୍ରାମର ମୁଖିଆମାନେ ଲୋକଙ୍କଠାରୁ ରାଜସ୍ୱ ଆଦାୟ କରୁଥିଲେ ଏବଂ ତଦ୍ଦ୍ୱାରା ଗ୍ରାମର ଆଦିବାସୀମାନଙ୍କ ସହିତ ସେମାନଙ୍କର ପ୍ରତ୍ୟକ୍ଷ ସଂପର୍କ ରହିଥିଲା ଏବଂ ସେମାନେ ତାଂକ ଉପରେ ନିଜର କର୍ତ୍ତୃତ୍ୱ ବିସ୍ତାର କରି ପାରୁଥିଲେ । ମାତ୍ର ବ୍ରିଟିଶ ସରାକାର ଆଦିବାସୀଙ୍କଠାରୁ ରାଜସ୍ୱ ଆଦାୟ କରିବାରୁ ଏହି ଗ୍ରାମ ମୁଖିଆଂକର କର୍ତ୍ତୃତ୍ୱ ଗ୍ଳୁଲିଗଲା । ତେଣୁ ସେମାନେ ପ୍ରଥମରୁ ବ୍ରିଟିଶ ଶାସନରେ ଅସନ୍ତୋଷ ପ୍ରକାଶ କରିଥିଲେ । ଆଦିବାସୀ ବହୁଳ ଅଂଚଳ ସହିତ ସମତଳ ଅଂଚଳର ଯୋଗାଯୋଗ ସ୍ଥାପିତ ହୋଇଯିବା ପରେ ବ୍ରିଟିଶ ସରକାରଙ୍କର ଯେତିକି ସୁବିଧା ହେଲା ତା' ଅପେକ୍ଷା ଅଧିକ ସୁବିଧା ହେଲା ଅବିବେକୀ ଓ ଅର୍ଥଲୋଭୀ ମହାଜନ ଓ ବ୍ୟବସାୟୀ ଏବଂ ଧର୍ମ ପ୍ରଚାରକ ମାନଙ୍କର । ରାସ୍ତାଘାଟ ଖୋଲିଯିବାରୁ ଏହି ମହାଜନ ଓ ବ୍ୟବସାୟୀମାନେ ଆଦିବାସୀ ବହୁଳ ଅଂଚଳକୁ ଯାଇ ସେମାନଙ୍କୁ ଶୋଷଣ କଲେ ଏବଂ ସେମାନଙ୍କ ସ୍ୱତ୍ୱଜମିକୁ ଦଖଲ କରି ନେଲେ । ମିଶନାରୀମାନେ ଯାଇ ଖ୍ରୀଷ୍ଟିଆନ ଧର୍ମ ପ୍ରତି ଆଦିବାସୀମାନଙ୍କୁ ଆକୃଷ୍ଟ

ତରିବା ନିମନ୍ତେ କାର୍ଯ୍ୟ ଆରମ୍ଭ କଲେ । ଜର୍ମାନୀ ଏଭାଙ୍ଗେଲିଷ୍ଟମିଶନ କୋରାପୁଟରେ ୧୮୨୨ ମସିହାରେ ସେମାନଙ୍କ ମିଶନ ସ୍ଥାପନ କରିଥିଲେ । ରୋମାନ କାଥଲିକ୍ ଜେସୁଇଟ୍ ମିଶନ ସେହି ସମୟରେ ସେମାନଙ୍କ ମିଶନର କାର୍ଯ୍ୟ ଆରମ୍ଭ କରିଥିଲେ । ଗୀର୍ଜାଛଡା ସେମାନେ ଆଧୁନିକ ସ୍କୁଲ ଓ ଡାକ୍ତରଖାନାମାନ ସ୍ଥାପନ କରିଥିଲେ । ଏହି ଅଂଚଳରେ ବାସ କରୁଥିବା ଶବରା, ସାନ୍ତାଳ, କନ୍ଧ, ଓରାଓଁ ଓ କିଶାନ ପ୍ରଭୃତି ଆଦିବାସୀମାନଙ୍କୁ ଏକ ନୂତନ ଧର୍ମ ଭାବରେ ଖ୍ରୀଷ୍ଟିଆନ ଧର୍ମ ଆକୃଷ୍ଟ କରି ଥିଲା । ସେମାନଙ୍କ ଭିତରୁ ଯେଉଁମାନେ ଏହି ଧର୍ମ ଗ୍ରହଣ କଲେ ସେମାନେ ଶିକ୍ଷା ଓ ସ୍ୱାସ୍ଥ୍ୟରକ୍ଷାର ସୁବିଧା ପାଇଲେ ତଥା ଅଂଧବିଶ୍ୱାସ ଯୋଗୁ ସେମାନେ ଉର୍ଜାନ୍ତ ହୋଇ ଯେପରି ହନ୍ତସନ୍ତ ହେଉଥିଲେ ସେଥିରୁ ରକ୍ଷା ପାଇଲେ । ମାତ୍ର ପରବର୍ତ୍ତୀ ସମୟରେ ଆଦିବାସୀମାନଙ୍କୁ ଜବରଦସ୍ତି ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରାଯାଉଥିବାର ଅଭିଯୋଗ ହେଲା ଯାହା ଫଳରେ ଏହି ଧର୍ମ ପ୍ରଚାରକ ମାନଙ୍କର ଆଧୁନିକ ଶିକ୍ଷା ଓ ସ୍ୱାସ୍ଥ୍ୟ ସୁବିଧା ଯୋଗାଇ ଦେବା ଉଦ୍ଦେଶ୍ୟ ପ୍ରତି ସନ୍ଦେହ ଆରୋପ କରାଗଲା ।

ବ୍ରିଟିଶ ଶାସନର ପ୍ରଥମ ଭାଗରେ ଆଦିବାସୀ ଅଂଚଳରେ କିପରି ଶାସନ ନୀତି ପ୍ରୟୋଗ କରାଯିବ ସେ ସମ୍ବନ୍ଧରେ ଶାସକଙ୍କ ଭିତରେ ମତଭେଦ ଦେଖା ଦେଇଥିଲା । ଡକ୍ଟର ହଟନ୍ ଓ ଗ୍ରୀଗସନଙ୍କ ଭଳି ବ୍ରିଟିଶ ଶାସକ ଯେ କି ଆଦିବାସୀମାନଙ୍କ ଭିତରେ ବହୁବର୍ଷ ସେମାନଙ୍କର ସ୍ୱିଁକିରୀକାଳ ଅତିବାହିତ କରିଥିଲେ ଏବଂ ଆଦିବାସୀଙ୍କ ଚଳଣି ଓ ପରଂପରା ବିଷୟରେ ବିଶେଷ ଅଭିଜ୍ଞତା ହାସଲ କରିଥିଲେ, ସେମାନଙ୍କୁ ଅଣଆଦିବାସୀଙ୍କ ଶୋଷଣ ଓ ଅନଧିକାର କାର୍ଯ୍ୟରୁ ରକ୍ଷା କରିବା ପାଇଁ କିଛିଦିନ ଅଲଗା କରି ରଖିବା ସପକ୍ଷରେ ମତ ପ୍ରକାଶ କରିଥିଲେ । ରାଜନୀତିଜ୍ଞ, ସାମାଜିକ କର୍ମୀ ଓ ଧର୍ମପ୍ରଚାରକଙ୍କ ନାଁରେ ସେମାନେ ଆଦିବାସୀ ମାନଙ୍କୁ ଶୋଷଣ କରିବାର ସମ୍ଭାବନା ଥିବାରୁ ସେମାନଙ୍କ ଠାରୁ ଆଦିବାସୀଙ୍କୁ ଅନ୍ତତଃ କିଛିକାଳ ଅଲଗା ରଖିବାକୁ ହେବ ବୋଲି ସେମାନେ ପ୍ରସ୍ତାବ ଦେଇଥିଲେ । ବିଶିଷ୍ଟ ବିଦ୍ୱାନ ଓ ଲେଖକ ଭେରିଆର ଇଲଉଇନ୍ ଯେ କି ତାଙ୍କର ସମସ୍ତ ଜୀବନ ଓଡିଶା ଓ ମଧ୍ୟପ୍ରଦେଶର ଆଦିବାସୀଙ୍କ ଭିତରେ ଅତିବାହିତ କରିଥିଲେ, ସେ ମଧ୍ୟ ଏହି ଭଳି ମତ ପ୍ରକାଶ କରିଥିଲେ । ମାତ୍ର ଅନ୍ୟ କେତେକ ଶାସକ ଏହା ସହିତ ଏକମତ ହୋଇ ନଥିଲେ । ସେମାନଙ୍କ ମତରେ ଆଦିବାସୀମାନଙ୍କ ଅର୍ଥନୈତିକ ଓ ସାମାଜିକ ଅବସ୍ଥାର ଉନ୍ନତି କରିବା ପାଇଁ ସେମାନଙ୍କୁ ଅଣଆଦିବାସୀଙ୍କ ସହିତ ମିଶାଇ କାର୍ଯ୍ୟ କରିବାକୁ ହେବ । ତା'ହେଲେ ସେମାନେ ଅଣଆଦିବାସୀଙ୍କ ସ୍ତରକୁ ଆସି ପାରିବ । ସେମାନେ ଆଶଙ୍କା କରିଥିଲେ ଯେ ଯେଉଁ ଆଦିବାସୀମାନଙ୍କୁ ଅଣଆଦିବାସୀଙ୍କଠାରୁ ବିଚ୍ଛିନ୍ନ କରି ଯୁଗ ଯୁଗ ଧରି ଅବହେଳା କରାଯାଇଛି, ସେମାନଙ୍କ ପ୍ରତି ଯଦି ତୁରନ୍ତ ଦୃଷ୍ଟି ଦିଆ ନ ଯାଏ ତା'ହେଲେ ଏହି ଲୋକମାନେ ହିଁ ସମଗ୍ର ଦେଶର ଅଗ୍ରଗତିରେ ଅନ୍ତରାୟ ସୃଷ୍ଟି କରିବେ ।

ବ୍ରିଟିଶ ସରକାର ସେମାନଙ୍କ ଶାସନର ପ୍ରଥମ ଭାଗରେ କଂଧଙ୍କ ଭଳି ଆଦିବାସୀମାନଙ୍କ ବିଦ୍ରୋହର ସମ୍ମୁଖୀନ ହେବାକୁ ପଡିଥିଲା । ମାଂଦ୍ରାଜ ପ୍ରଦେଶ ଅନ୍ତର୍ଭୁକ୍ତ ହୋଇ ରହିଥିବାବେଳେ ୧7୨୫ ମସିହାରେ ପାରଳାଖେମୁଣ୍ଡି ଜମିଦାର ଗଜପତି ଦେବଙ୍କ ରାଜସିଂହାସନ ପାଇଁ ଯଥାର୍ଥ ଦାବୀକୁ ବ୍ରିଟିଶ ସରକାର ସମର୍ଥନ ନ କରିବାରୁ ତାଂକ ସପକ୍ଷରେ କଂଧ ଜାତିର ମୁଖ୍ୟ ବିଶୋଇ ବିଦ୍ରୋହ କରିଥିଲେ । ମାଂଦ୍ରାଜ ସରକାରଙ୍କ ଦ୍ୱାରା ନିଯୁକ୍ତ ସ୍ୱତନ୍ତ୍ର କମିଶନର ଜର୍ଜରସେଲ ଜୀଙ୍ଗିଗ ବିଶୋଇଙ୍କ ବିରୁଦ୍ଧରେ ଦୃଢ ପଦକ୍ଷେପ ନେଲେ ଏବଂ ତାଂକ ଶକ୍ତିଶାଳୀ ଦୁର୍ଗକୁ ଧ୍ୱଂସ କରିଦେଲେ । ଲାବଣ୍ୟ କୋଟା ଓ ରାୟଗଡାର ବିଶୋଇମାନେ ତାଂକୁ ସମର୍ଥନ କରିଥିଲେ । ରସେଲ ସାହେବ ଶେଷରେ ଏହି ବିଦ୍ରୋହକୁ ଦମନ କରିଦେଲେ । ଏହାପରେ ଗଂଜାମ ଜିଲ୍ଲାର ବିଖ୍ୟାତ ସାହିତ୍ୟିକ ଭଂଜରାଜ ପରିବାରର ଧନଂଜୟ ଭଂଜଙ୍କ ଦାବୀ ଉପେକ୍ଷିତ ହେବାରୁ ତାଂକ ସପକ୍ଷରେ କଂଧ ଜାତିର ମୁଖ୍ୟ ଦୋହରା ବିଶୋଇ ତାଂକ ଦାବୀକୁ ସମର୍ଥନ ଜଣାଇ ବ୍ରିଟିଶ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ଧନଂଜୟ ଭଂଜଙ୍କ ମୃତ୍ୟୁପରେ ମଧ୍ୟ କଂଧ ବିଦ୍ରୋହ ତୀବ୍ର ଆକାର ଧାରଣ କରିଥିଲା । କଂଧମାନେ ଦୁଇଜଣ ବ୍ରିଟିଶ ସାମରିକ ଅଫିସର ଓ 4୫ଜଣ ସୈନ୍ୟଙ୍କୁ ହତ୍ୟା କରିଥିଲେ । ଏହି ବିଦ୍ରୋହକୁ ଦମନ କରିବା ପାଇଁ ରସେଲ 7ଟା କଂଧଗ୍ରାମକୁ ଧ୍ୱଂସ କରି ଦେଇଥିଲେ ମାତ୍ର ଦୋହରା ବିଶୋଇ ଅନୁଗୁଳକୁ ଖସି ପଳାଇ ଥିଲେ ଏବଂ ସେଠାରେ ତାଂକୁ ଅନୁଗୁଳର ରାଜା ବ୍ରିଟିଶ ସରକାରଙ୍କୁ ଧରେଇ ଦେଇ ଥିଲେ । ଦୋହରା ବିଶୋଇଙ୍କ ପରେ ମଧ୍ୟ ଚକରା

ବିଶୋଇ ବିଦ୍ରୋହୀ କଂଧଙ୍କ ନେତୃତ୍ୱ ନେଇଥିଲେ । 1817 ମସିହାରେ ଓଡିଶାରେ ବ୍ରିଟିଶ ଶାସନ ବିରୁଦ୍ଧରେ ଯେଉଁ ବିଦ୍ରୋହ ବହ୍ନି ଜଳି ଉଠିଥିଲା ଯାହାକୁ ବ୍ରିଟିଶ ଐତିହାସିକମାନେ ''ପାଇକ ବିଦ୍ରୋହ'' ବୋଲି ଅଭିହିତ କରିଥିଲେ ତାହା ପ୍ରକୃତରେ ଥିଲା ପ୍ରଥମ ସ୍ୱାଧୀନତା ସଂଗ୍ରାମ । ଯେଉଁ 1857 ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବୋଲି କୁହାଯାଇଥାଏ ତା'ର 40 ବର୍ଷ ପୂର୍ବରୁ ଏହି ସଂଗ୍ରାମ ଓଡିଶାରେ ଆରମ୍ଭ ହୋଇଥିଲା । ଏହି ସଂଗ୍ରାମରେ ଅଗ୍ରଣୀ ହୋଇଥିଲେ ଆଦିବାସୀ କଂଧମାନେ ।

ବ୍ରିଟିଶ ସରକାର ସ୍ୱାଧୀନତା ପୂର୍ବରୁ ଭାରତରେ ଯେଉଁ ସବୁ ଶାସନତାନ୍ତ୍ରିକ ସଂସ୍କାରମାନ ପ୍ରବର୍ତ୍ତନ କରିଥିଲେ ସେଥିରେ ସେମାନେ ଆଦିବାସୀ ବହୁଳ ଅଂଚଳକୁ ଅଣଆଦିବାସୀଙ୍କଠାରୁ ଦୂରରେ ରଖିଥିଲେ । 1919 ମସିହା ଭାରତ ଶାସନ ଆଇନରେ ଆଦିବାସୀ ବହୁଳ ଅଂଚଳ ପାଇଁ ସ୍ୱତନ୍ତ୍ର ଶାସନ ବ୍ୟବସ୍ଥା କରିଥିଲେ । ଏମିତିକି 1935 ଭାରତ ଶାସନ ଆଇନରେ ଆଦିବାସୀ ବହୁଳ ଅଂଚଳକୁ ଆଂଶିକ ହୁତ୍ରମୁଦି ମାହାଲ ବୋଲି ନିର୍ଦ୍ଧାରଣ କରିଥିଲେ ଏବଂ ସେହି ଅନୁସାରେ କୋରାପୁଟ ଜିଲ୍ଲାର ଆଦିବାସୀ ବହୁଳ ଅଂଚଳ ଓ ଗଂଜାମ ଜିଲ୍ଲାର ଏହି ଅଂଚଳକୁ ଆଂଶିକ ହୁତ୍ରମୁଦି ଅଂଚଳ ଓ ଏଜେନ୍ସି ଅଂଚଳ ବୋଲି କୁହାଯାଉଥିଲା । ଏସବୁ ଅଂଚଳର ଶାସନ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଖାସ ଶାସନାଧୀନ ହୋଇ ରହିଥିଲା ।

113 ବାପୁଜୀନଗର,
ଭୁବନେଶ୍ୱର ।



ଭୁବନେଶ୍ୱରରେ ଗୋଆ ଦିବସ ପାଳନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଓ କେନ୍ଦ୍ରମନ୍ତ୍ରୀ ଗୋମାଙ୍ଗୋଙ୍କ ଜ୍ୟୋତି ଆବାହନ

# ସମନ୍ୱିତ ପଦକ୍ଷେପ :



## ଦୁଃସାହସିକ କ୍ରୀଡ଼ା

ମୁଲାୟମ୍ ଗାଲିଚା ପରି ଖେଳ ପଡ଼ିଆଟିଏ ତିଆରି ହୋଇଛି । ଟ୍ରାକ୍ କଟା ହୋଇଛି । ତା ଉପରେ ଫଟ୍ କରି ଦୌଡ଼ି ପଳେଇବା, ବଲ୍‌ଟାଏ ସଟ୍ କରି କାଟି ନେଇ ଗୋଲ୍ କରି ଦେବାରେ ବାହାଦୁରୀ ଅଛି । ସେହି ବାହାଦୁରୀ ପଛରେ ଅନେକ ଦିନର ଅଭ୍ୟାସ, ଶିକ୍ଷା ଆଶା ଏବଂ ଆକାଂକ୍ଷା ଜଡ଼ିତ । କେଉଁ କୌଶଳକୁ ଆୟତ୍ତ କଲେ ଗୋଡ଼ ଦୁଇଟା ହରିଣ ପରି କୁଦି ପଡ଼ିବ । କେଉଁ କାଇଦା ଅଭିଆର କଲେ ଛାତିଟା ଆଗକୁ ଯାଇ ପ୍ରଥମ କରିଦେବ, କେଉଁ ପ୍ରକାର ହାତହଲା ଶିଖିଲେ ପବନ ସମୁଦ୍ରଟାକୁ କାଟିଦେଇ ଦେହଟାକୁ ଆଗେଇ ନେଇ ହେବ; ଦେହ ପଛେଇ ଯାଉଥିଲେ ମନଟା ଇଞ୍ଜିନ୍‌ର କାମକରି କେମିତି ଆଗକୁ ନେବ— ଏହା ଉତ୍ତମ ପ୍ରଶିକ୍ଷକ, ଉତ୍ତମ ପରିବେଶ ପାଇଲେ ଭଣା ଅଧିକେ ସମସ୍ତେ କରି ପାରିବେ ।

କିନ୍ତୁ ଟ୍ରାକ୍ ନଥାଇ, କଅଁଳ ଦୁବର ପରଶ ନଥାଇ, ଦୌଡ଼ିବା କୁଦିବା ବିଷୟରେ କିଛି ନଜାଣି ଘଣ୍ଟାଘଣ୍ଟା ଧରି ଦୌଡ଼ିବା, ହଠାତ୍ ଅଜଣା ଜାଗାକୁ ମାଡ଼ିଯିବାରେ ଗୋଟାଏ ଅଜବ ଶିହରଣ ଅନୁଭବ ହୁଏ । ଗାଁ ମଶାଣିରେ ନାମଧେୟ, ଅନାମଧେୟ ଅସଂଖ୍ୟ ଭୂତ । ନିଶା ଗର୍ଜୁଥିବା ରାତିରେ ସେହି ଭୂତକୁ ଦେଖିବା ପାଇଁ ମଶାଣିରେ ଟହଲ ମାରିପାରିଲେ ବାହାଦୁରୀ ଜଣାପଡ଼ିବ । ପରଗାଁ ପାଣି ଅଜଣା— ପୋଖରୀରେ କେତେ ପାଣି ଅଛି, ନଦୀ ଗଭୀର ଅଗାଧ କାତ କି ନୁହେଁ, ତା' ଭିତରେ ନାହୁଡ଼ମରା ମାଛ, ଥଣ୍ଟିଆ ମଗର ଅଛି କି ନାହିଁ ଚିନ୍ତା ନକରି ଯିଏ କୂଳପଥର ଉପରୁ ଡେଇଁପଡ଼ି ପହଁରି ପହଁରି ଗରୁଡ଼ ଖାନ ହେଉ ବା ନଦୀର ଅପର ପାଖକୁ ଯାଇପାରେ ସେ ହେଉଛି ପାରିଲା ପୁଅ— ବାହାଦୁର୍ ।

ବାହାଦୁର୍ ହେବ କିଏ ? ଯାହାର ରକ୍ତ ଗରମ, କାମ କରିବା ପାଇଁ ଅସରନ୍ତି ଇଚ୍ଛା, ସିଏ ଖପରଖପର ହୋଇପାରେ, ଯିଏ ଧରାକୁ ସରା ମନେ କରେ । ସେ ଆଉ କେହି ନୁହେଁ— ସେ ତରୁଣ ଗୋଷ୍ଠୀ । ତାଙ୍କୁ ଅଗନାଅଗନି ବନସ୍ତ ଅଟକେଇ ପାରିବ ନାହିଁ । ବଣା ପାହାଡ଼ର ବାନା ପାଟେଗୀ କିମ୍ବା ମାଲ୍ୟଗିରିର ସମଳ ଘାଟି ରୋକି ପାରିବ ନାହିଁ । ପଡ଼ିଆପାଖ ଶବରୀ ନଦୀର ହୁଁକାର ଝଙ୍କାରକାରି ବନ୍ଧୁର ନଦୀଶଯ୍ୟା ସେମାନଙ୍କ ପ୍ରତିବନ୍ଧକ ହୋଇପାରିବ ନାହିଁ । କଙ୍କଡ଼ା ବିଛା, ବୋଡ଼ାସାପ, ଖାରି ପାଣି, ପଚା ଝାଡ଼ିପତ୍ର, ଘୋଘୋ ସମୁଦ୍ର, ନିଶୁନ ଝାଉଁବଣ, ହେଣ୍ତାଳ ଅରମା ସେମାନଙ୍କ ସାମନାରେ କିଛି ନୁହେଁ ।

ସେ ଗୋଷ୍ଠୀ ଆଣ୍ଠୁରେ ନାକ ଲଗେଇ ପାହାଡ଼ ଲଙ୍ଘିଯିବେ, କୁଆରିଆ ନଈରେ ବାଉଁଶ ପକେଇ ପାଣିମାପି ପାର ହୋଇଯିବେ । ଟିକେ ସୂର୍ଯ୍ୟ କିରଣ ପଡ଼ୁନଥିବା ବଣ ପାହାଡ଼, ବାଘଭାଲୁ, ହାତୀ ସାପ, ଜିଆ, ପୋକରେ ସାଲୁବାଲୁ ଜଙ୍ଗଲକୁ ଅନାୟାସରେ ଅତିକ୍ରମ କରିଯିବେ ।

ଏହି ଅତିକ୍ରମ କରିବାରେ ମଜା ଅଛି— ଏଇଠି ଏକୁଟିଆ ଦୌଡ଼ି ପ୍ରଥମ ହେବା ଗୌରବ ନାହିଁ । ଏଇଠି ରହିଛି ଅମଡ଼ା ମାଡ଼ିବା, ଅବାଟରେ ବାଟ ତିଆରି କରିବା, ମିଳିମିଶି ବାଧାବନ୍ଧନ, ଅର୍ଗଳି ଟପି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା । ଏକ ଯାହା କରି ପାରିବ ଅନେକ ତା ଠାରୁ ଢେର ବଡ଼ କାମ କରି ପାରିବ । ଯୋଡ଼ାକୁ ଯଦି ଘୋଡ଼ା ସରି ନୁହେଁ, ପାଞ୍ଚ ଦଶ, ପନ୍ଦର କୋଡ଼ିଏ ମିଶିଲେ ହିଂସ୍ରଜନ୍ତୁ ଡ଼ରେ ପଳେଇବେ, ନିଶୁନ ଝାଉଁବଣ ବଇଁଶୀ ଫୁଙ୍କି ଅଭିନନ୍ଦନ ଜଣେଇବ । ଉଚ୍ଚ ପାହାଡ଼ ଗୋଟାଏ ଉଠାଣି ରାସ୍ତା ପରି ମନେ ହେବ ।

ଯିଏ ଦଳ ଭିତରେ ଯାଇଥିବେ ସେମାନେ ମନେ ପକାନ୍ତୁ— ସେରଙ୍ଗମାଳରୁ ପୁଟାସିଙ୍ଗି, ମାଧପୁରରୁ ଖଜୁରୀପଦା, ନୂଆଗାଁରୁ ସାରଙ୍ଗଗଡ଼, ସୋରଡ଼ାରୁ କାଟିଙ୍ଗୀ, ଗୁଡ଼ାରୀରୁ ଚନ୍ଦ୍ରପୁର, ତୁମ୍ବାରୁ ରାମଗିରି— ହାଟୁଆ, ବାଟୁଆ, ମାଳବ୍ୟବସାୟୀ- ଏକାଠି ହେଇ ପରସ୍ପରକୁ ସାହାଯ୍ୟ କରି ଦୁଇଦିନର ବାଟ ଗୋଟାଏ ଦିନରେ ଶେଷ କରି ଦିଅନ୍ତି । କେହି ପଡ଼ିଯାଉଥିଲା ବେଳେ ଉଠେଇ ଦେବା, ଗୋଡ଼ ବାନ୍ଧି ବସିପଡ଼ିଲେ "ଚାଲ, ଚାଲ" କହି ଦୁଇପାଦ ଆଗେଇ ଦେବା, ଝୁଣ୍ଟିପଡ଼ି ରକ୍ତ ଝରିପଡ଼ିଲେ ପୋଡ଼ା କନା ଖଣ୍ଡେ ଲଗେଇ ଦେବା, ଶୋଷ ହେଲେ ପାହାଡ଼ି ଝରଣାରୁ ଚଳାଚଳା ପାଣି ଆଣି ପିଆଇଦେବା, ଭୋକକଲେ ଗଗନଧୂରି ଆମ୍ବ ଖୁଆଇଦେବା ସେମାନଙ୍କ ପାଇଁ ନିତିଦିନିଆ ଘଟଣା ।

ନୂଆ ଯୁବକ ହୁଡୁ ହୋଇ ଉଠୁରି ଉଠୁଛନ୍ତି । ସେମାନଙ୍କ ପାଇଁ ଆଗକୁ ଜୀବନ ସଂଗ୍ରାମ ରହିଛି । ସବୁବେଳେ ଏକୁଟିଆ ଦୌଡ଼ିଲେ ଜୀବନ ପଥଟା ସୁଗମ ହୁଏ ନାହିଁ । ହେବ କେମିତି— ସବୁବେଳେ ଦୁବଘାସର ଗାଲିଚା ଅଛି ନା ଚକ୍ ପକା ରାସ୍ତା ଅଛି ! କେଉଁଠି ବନ୍ଧୁର ପଥ, କେଉଁଠି କଣ୍ଟାଝଣ୍ଟା ବାଟ । ଏକୁଟିଆ ଚାଲିଚାଲି ସେଥିରେ ଚିଟା ଲାଗିବ । ଗୋଟାଏ କୋଶ ଦଶକୋଶ ପରି ଲାଗିବ । ଚିହ୍ନା ବାଟ ଅଚିହ୍ନା ମନେହେବ । ଏକାଠି ହୋଇ ଦୌଡ଼ିଲେ, ଚାଲିଲେ, ପାହାଡ ଚଢ଼ିଲେ

ପକ୍ଷୁ ଗିରି ଲଙ୍ଘି ପାରିବ । ଯେତେବେଳେ ବଣ ଜଙ୍ଗଲ, ଯେତେ ନିଛାଟିଆ ଯାଗା ହେଲେ ବୁଝା ସହର ପରି ମନେ ହେବ ।

ଆଗାମୀ ଶତାବ୍ଦୀ ଅନେକ ଜଟିଳ ପ୍ରକ୍ରିୟା ଭିତରେ ଗତିକରିବ । ମଣିଷର ଜୀବନଧାରା ବଦଳିଯିବ । ଏବେ ଯଦି ଜୀବନଟା ଖାଲି ଡାଗିଛି ବୋଲି ମନେ ହେଉଛି ସେତେବେଳେ ସେ ଦୌଡୁଥିବ । ସେହି ବଳମାନ, ଗତିମାନ, ଅହରହ ବ୍ୟସ୍ତ ସ୍ଥିତି ପାଇଁ ମୂଳରୁ ପ୍ରସ୍ତୁତି ଆବଶ୍ୟକ । ପ୍ରତ୍ୟେକ ଦୌଡ ପାଇଁ ଶରୀରଟା ଅଭ୍ୟସ୍ତ ହେବା ଦରକାର । ଯିଏ ମାରାଥନ୍ ଦୌଡୁଛି ତାର ଗୋଡହାତ, ଛାତି, ମନ ସବୁ ସେଥିପାଇଁ ପ୍ରସ୍ତୁତ । ସେହି ପ୍ରସ୍ତୁତି ପାଇଁ ଅନେକ ମେହନତ୍, ଅନେକ କଷ୍ଟ ସହିବାକୁ ପଡ଼େ । କଷ୍ଟ ନକଲେ କିଛି କାମ ହୁଏକି ?

ଛୋଟିଆ ବୋତାମଟିଏ ଉଠେଇବା ପାଇଁ ବୁଢ଼ା ଆଙ୍ଗୁଠି ତିଣି ଆଙ୍ଗୁଠି ଅନାୟାସରେ କାମ କରିଯିବେ । ଛତାଟାଏ ଉଠେଇବା ପାଇଁ ପାଞ୍ଚ ଆଙ୍ଗୁଠି ଓ ପୁରାହାତରେ ଆବଶ୍ୟକତା ରହିଛି । ବସ୍ତାଏ ଚାଉଳ ଉଠେଇବା ପାଇଁ ଦୁଇହାତ, ଛାତି, ପେଟ ଓ ଅଣ୍ଟାର କାମ ପଡେ । କାମର ଓଜନ ଯେତିକି ବଢେ ମଣିଷ ଶରୀରର ସେତିକି ଅଧିକା ଅଂଶ ଭାଗୀଦାର ହୁଏ, ସମନ୍ୱୟ ପାଇଁ ମନ ଓ ମସ୍ତିଷ୍କର ଲୋଡ଼ାପଡେ଼ ।

ଜୀବନ ମଧ୍ୟ ସେମିତି । ଅନାୟାସ, ନୂତନତା ବିହୀନ, ଶାଗପେଜ ଜୀବନ ପାଇଁ ଅନ୍ୟର ଆବଶ୍ୟକତା ନଥାଇ ପାରେ । କିନ୍ତୁ ନୂଆ କାମ କରି, ପ୍ରକୃତିକୁ ଜିଣି, ବିପଦକୁ ବରଣ କରି ଅସମ୍ଭବକୁ ସମ୍ଭବ କରେଇ ପାରିଲେ ଯେଉଁ ଆନନ୍ଦ, ଯେଉଁ ଗର୍ବକିଣା ଭାବନା ଆସେ ତାହା ମଣିଷକୁ କାଳଜୟୀ କରିଦିଏ । ଏମିତି ଗର୍ବକିଣା ମନୋଭାବ ଆସିଥିଲା ଏଭେରେଷ୍ଟ ଶିଖରକୁ ପହଞ୍ଚିଲା ବେଳେ, ଏମିତି ଆନନ୍ଦ ଆଣିଥିଲା ଚନ୍ଦ୍ରପୃଷ୍ଠରେ ବେହରଣ ବେଳେ, ପ୍ରକୃତିକୁ ଜୟ କରିବା ଅଦମ୍ୟ ଇଛା ଫଳବତୀ ହୋଇଥିଲା ସୁମେରୁକୁ ଅତିକ୍ରମ କଲାବେଳେ । ଏହି ନୂତନ କାଳ ଅତିକ୍ରମୀ ପଦକ୍ଷେପ, ଅତିମାନୁଷିକ ଜୀବନ ଏକୁଟିଆ ସମ୍ଭବ କରେଇ ହେବ ନାହିଁ । ଏଥିପାଇଁ ଦଶ ଓ ଦେଶରେ ସାହାଯ୍ୟ ଆବଶ୍ୟକ । ଏଥିପାଇଁ ଆବଶ୍ୟକ ଅନେକ ସମନ୍ୱୟ । ସେହି ସମନ୍ୱୟ ହେବ ଆଗାମୀ ଶତାବ୍ଦୀର ଜୀବନଧାରା ।

ହେଇ ଦେଖନ୍ତୁ– ପାହାଡ଼ର ଉତ୍ତୁଙ୍ଗ ଶିଖର ଅରୋହଣ କରିବା– ଏକୁଟିଆ ଏହା କରିହୁଏ ନାହିଁ । ସାଥୀ ନିହାତି ଦରକାର । ସବୁସାଥୀ ପରସ୍ପରର ହାତଧରି ଉପରକୁ ଉଠିବ । ଖସି ପଡୁଥିବା ସାଙ୍ଗର ହାତଧରି ଟାଣି ନେବେ । ତଣ୍ଟିଶୁଖି ଯାଉଥିଲେ ପାଣି ଢୋକେ ପିଆଇ ଦେବେ । ଝଡ଼ବତାସରେ ଝୁଙ୍କି ପଡ଼ିଥିବା ତାର ପରି ଅବଶ ମନଟା ଥକି ପଡ଼ିଲେ ଦୁଇ ପଦ କଥା କହି ଚେଙ୍ଗା କରିଦେବେ ।

ପୁଣି– ବାହାବା କରିବା ପାଇଁ ଦେଖଣାହାରି ଆବଶ୍ୟକ । ପାଲଲହଡ଼ାର ମାଲୟଗିରି ପାହାଡ଼ ଶିଖରରେ ପହଞ୍ଚି ସୀତାଙ୍କ ଏବ୍ରୁତିଶାଳ ରୂପା ବିରାଟ ପଥର ସ୍ତୁପ, ସବୁଦିନେ ପାଣି ଭର୍ତ୍ତି ହୋଇ ରହିଥିବା ଚହଲା, ଯନ୍ତ୍ରଣା ଜର୍ଜରିତ ଅଭିଶାପଗ୍ରସ୍ତ କୃଷ୍ଣକାୟ ଅନ୍ଧକ ଶାଳଗଛ ବିଷୟରେ ଶୁଣିବା ପାଇଁ ଶ୍ରୋତା ରହିବା ନିହାତି ଦରକାର ।

ବୁମାରୁ ରାମଗିରି ଯାଇଥିବା ଶିଖର ଅଭିଯାତ୍ରୀ ଦଳ ପାଖରୁ ପର୍ଶୁରାମ କୁଣ୍ଡର ଅତିକାୟ ପଥର ଖୋଲ, ଦର୍ପିତ ଜମଦଗ୍ନିପୁତ୍ରର ପଥର ଉପରେ ପାଦଚିହ୍ନ କଥା ଶୁଣିବା ପାଇଁ ଉତ୍ସୁକ ଶ୍ରୋତା ଆବଶ୍ୟକ । ସୁରଙ୍ଗି କମଳା ଦେଖି ଆଶାୟୀ ଆଖି କେମିତି ପାହାଡ଼ ଝରଣାକୂଳକୁ ଟାଣି ହୋଇଯାଏ, ଗଣ୍ଡିକା କେମିତି ଆଗପଛ ହୁଏ, ପାଖୁଡା ନଖୋଲି ଚୋପାସହ କମଳା କେମିତି ପାଟି ଭିତରେ ଲୁଚି ଯାଏ– ଏସବୁ ଶୁଣିବା ପାଇଁ ଲୋକ ଦରକାର ।

ସମ୍ବଲପୁରରୁ କଟକ– ମହାନଦୀରେ ଶହଶହ ବର୍ଷ ଧରି ଚାଲିଥିଲା ମାଲ୍ ଚଢ଼ା ଉତରା – ନେବା ଆଣିବା । ଖରୀ, ଜୀସ୍ତ, ମଙ୍ଗୁଆଳ, ମଙ୍ଗରାଜ– କେତେନାମ ଏହି ନୌକା ଚାଳନାରୁ ଓଡ଼ିଆ ଭାଷା ଭିତରେ ପଶି ଆସିଛି । ନଈ କୂଳେକୂଳେ ଅନେକ ଦେଉଳ, ଅନେକ ଗ୍ରାମ ଦେବତୀ, ସିନ୍ଦୁରଲଗା ଠାକୁରାଣୀ, ଝଙ୍କାଳିଆ ବରଗଛ ମୂଳେ ମହାପୁରୁଷ । ସେମାନଙ୍କ ରାଗ, ରୋଷ, ଅଭିମାନ, ସ୍ନେହ କରୁଣା । ପୁଣି ନଦୀଅତଡ଼ା ଉପରେ ବିରାଟ କାୟ ସାପ । ମଙ୍ଗକାଟି, ସୁଅ ବଦଳେଇ ନଈର ବାଙ୍କ ପାର ହେଲାବେଳେ ହାତୀ ପଲର ଶୁଣ୍ଢ ଟେକା ରାଧୁଆ । ଅଥଳଗଣ୍ଡ ପାର ହେଉହେଉ କଳା ଧୁର୍ସୁମା ବିରାଟ ପଥରର ବାଟ ଆଗୁଳା– ଏ ସବୁ ଦେଖିବ, ସହିବ, ଅନ୍ୟକୁ କହିବ । ସେତେବେଳେ ସେସବୁ ଦେହସୁହା ହୋଇ ଯାଇଥିଲା । ଏବେ ସେ ସବୁକୁ ଦେଖିବା, ପଥରର ବାଟକାଟି ନାଆ ଚଳେଇ ଆଗେଇବା ପାଇଁ ଦେହ ଶୀତେଇ ଉଠିବ । ଗୋଡ଼ ହାତ ଥରିଯିବ ।

ଆଗେ ଯାହା ଅନାୟାସଥିଲା ଏବେ ଆୟାସ ସାଧ୍ୟ ହେବ କାହିଁକି । ବାଉଁଶ ଭେଳାଧରି, ଦିନଦିନ, ସପ୍ତାହ ସପ୍ତାହ ମହାନଦୀ ସୁଅରେ ଭାସି ଆସିବା ଯେଉଁ ନୂଆ ଉନ୍ମାଦନା ଆଣେ ତାହା ନୂଆ ବାହାଘରର ଉନ୍ମାଦନାଠାରୁ କିଛି କମ ନୁହେଁ । ଏକାଠି ରହି, ଭେଳାରେ ରାନ୍ଧି, ପାଣିରେ ଚବର ଚବର ହେଇ, ମଶାଡ଼ାଆଁଶ ଚଢ଼ି ଗନ୍ତବ୍ୟ ସ୍ଥଳକୁ ଆସିବାରେ ଅନେକ ଆନନ୍ଦ ।

ଆଗେ ଗମ୍ୟ ଥିଲା, ଏବେ ଅଗମ୍ୟ । ତାକୁ ପୁଣି ଗମନା ଗମନର ପଥ କରି ଅମଡ଼ା ସଫା କରିବାରେ ମଜା ଅଛି ।

ଓଡ଼ିଶାରେ ଅନେକ ଜାଗା ଅଛି ଯାହା ମୂଳରୁ ଅଗମ୍ୟ । ତା'ର ଅଗମ୍ୟ ପଣିଆକାଟି ଗାଁ ପୋଖରୀ ହିଡ଼ର ଚଲାବାଟ କରିବା ପାଇଁ ଦରକାର ତରୁଣ ଗୋଷ୍ଠୀର ଦୁଃସାହସିକ ପଦକ୍ଷେପ । ସେହି ଦୁଃସାହସିକ ପଦକ୍ଷେପର ଅଭ୍ୟାସ ସୋପାନ ଦୁଃସାହସିକ କ୍ରୀଡ଼ା । ଅଭ୍ୟାସ କରିକରି ଦୁଃସାହସିକ ପଦକ୍ଷେପ ନିର୍ଭର କରିଦେଲେ ତାହା ଆସନ୍ତାକାଲିର ନାଗରିକକୁ ସୁଯୋଗ ଦେବ ନିଜର ଅପୁରନ୍ତ ଶକ୍ତିକୁ ବିନିଯୋଗ ପାଇଁ । ଅପୁରନ୍ତ, ଅଦମ୍ୟଶକ୍ତି, କଳ୍ପନା ଓ ସୁନେଲି ସ୍ୱପ୍ନର ଅସରନ୍ତି ଗନ୍ତାଘର– ତରୁଣ ତରୁଣୀ । ସେମାନେ ଏହି ଅସରନ୍ତି ଗନ୍ତାଘରକୁ ରୂପଦେଲେ ନୂଆ ଦେଶ ଗଢ଼ି ଉଠିବ, ନୂଆ ସମନ୍ୱିତ ଭାବଧାରା ମୂର୍ତ୍ତିମନ୍ତ ହେବ । ସେ ହେବ ଆଗାମୀ ଶତାବ୍ଦୀର ନୂତନ ଦିଗ୍‌ଦର୍ଶନର ପ୍ରତୀକ ।

କ୍ରୀଡ଼ା ନିର୍ଦ୍ଦେଶାଳୟ,
ଭୁବନେଶ୍ୱର-୭୫୧୦୧୨



# ଲକ୍ଷ୍ମଣ ନାୟକ

ଜାତୀୟ କବି ବୀର କିଶୋର ଦାସ

ମରି ନାହିଁ କେବେ ମୁଁ ମରିବି ନାହିଁ
ମୋ ପାଇଁ ଭାବନା କରିବ ନାହିଁ । (ପଦ)
ମୋ ନିଜ ସ୍ମୃତିକି କରି ମୁଁ ସଞ୍ଚାଳି
ଯାଉଛି ଯିବି ମୋ ପ୍ରାଣଦୀପ ଜାଳି
ଗଗନ ପଥରୁ ତାରକା କୁଞ୍ଜରୁ
ଆକୁଳେ ତୁମକୁ ଥିବି ଅନାଇ...... ।
ମନରେ ଏତିକି ଆଜି ମୋର ଖୁସି
ବିନା ଦୋଷେ ଭାଇ ପିନ୍ଧିଲି ମୁଁ ଫାଶୀ
ପୂନା ସହରକୁ ପ୍ରଣାମ କରି ମୁଁ
ଢାଳି ଦେଇ ପ୍ରାଣ ପୃଥିବୀ ପାଇଁ ।
ନାସିକାରେ ଥିବ ଯାବତ ନିଶ୍ୱାସ
ଶୋଷକ ଜାତିକି ନକର ବିଶ୍ୱାସ
ଶୋଷଣ ନୀତିକି ବିଧ୍ୱଂସ ନକରି
ଘରକୁ ତୁମର ଫେରିବ ନାହିଁ ।
ବିଶ୍ୱର କଳଙ୍କ କରି ବିଧଉତ
ମାଡ଼ି ଆସୁଅଛି ଭୀମ କାଳ ସ୍ରୋତ
ଓଲଟ ପାଲଟ ହୋଇଯିବ ସବୁ
ଦେଖି କରି କେଉେ ଡ଼ରିବ ନାହିଁ ।
ଶେଷ କଥା ଶେଷ ଯୁଦ୍ଧ ଏ ତୁମର
ସ୍ୱର୍ଗ ମୂଲିଆଟି ଦେବତା ମୋହର
ଗଣ୍ଡେ ଖାଇ ଖଣ୍ଡେ ପିନ୍ଧିବେ ସେମାନେ
ନିରାଶ ତାହାଙ୍କୁ କରିବ ନାହିଁ ।

ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ଫାଶୀରେ ଚଢ଼ିଲୁ ଆମରି ପାଇଁ ।
ମୁକତି ଲଢ଼େଇ ଡ଼ାକରା ପାଇ
ଆଗଭର ହୋଇ ଆସିଲୁ ଧାଇଁ ।
ଜାତିକୁ କରି ତୁ ଗଳାର ମାଳି
ଦେଶ ଲାଗି ଦେଲୁ ଜୀବନ ଢ଼ାଳି ।

ଲକ୍ଷଣ ଭାଇରେ ଲକ୍ଷଣ ଭାଇ
କୋରାପୁଟେ ଥିଲୁ ଜନମ ପାଇ ।
କୋରାପୁଟ ଜିଲ୍ଲା ଜଙ୍ଗଲଭରା
ଦିନରେ ଯେଉଁଠି ନପଡ଼େ ଖରା ।
ଜଙ୍ଗଲେ ଥାଆନ୍ତି ଆମରି ଭାଇ
ଛନ୍ଦ କପଟ ସେ ଜାଣନ୍ତି ନାହିଁ ।
ମଠ ମନ୍ଦିରର ଗିରିଜା ଗଢ଼ି
ଦିଅନ୍ତି ନାହିଁ ସେ ଦିହିଁକୁ ପଢ଼ି ।
ଖାଆନ୍ତି ନାହିଁ ସେ ଭାତରେ ଘିଅ
କୁନ୍ଦି ହେଲା ପରି ତାଙ୍କରି ଦେହ ।
କିଏ ସରକାର କିଏ ବା ରଜା
ଜାଣନ୍ତି ନାହିଁ ସେ କାହା ପରଜା ।
ଲକ୍ଷଣ ଭାଇରେ ଲକ୍ଷଣ ଭାଇ
ଏଭଳି ଜାଗାରେ ଜନମ ପାଇ;
କିଏ ଶିଖାଇଲା ଦେଶର କଥା
ଫାଶୀକାଠେ ଦେଲୁ ପତାଇ ମଥା ।
ମାଆ କିଏ ତୋର ଖାଇ ଯା' କ୍ଷୀର
କାମ କରି ହେଲୁ କରମବୀର ।
କାହା ସାଥେ ମିଶି ଖେଳିଲୁ ଧୂଳି
ଡ଼ରିଗଲା ତତେ ବନ୍ଧୁକ ଗୁଳି ।
କେଉଁ ଗୁହାଳିରେ ପାଠ ତୁ ପଢ଼ି
ଜାତି ଇତିହାସ ପଲ୍ଲୁରେ ଗଢ଼ି ?
ହାତହତିଆର ନ ଥିଲା ତୋର
କେଉଁ ଗୁରୁ ଆସି ଦେଲା ମନ୍ତର ।
ଭାରତ-ଜନନୀ ମୁକତି ପାଇଁ
ଜଳନ୍ତା ନିଆଁକୁ ପଡ଼ିଲୁ ଡେଇଁ ।
ଲକ୍ଷଣ ଭାଇରେ ଲକ୍ଷଣ ଭାଇ
ଯୁଦ୍ଧରେ ପଶିଲୁ ଆମରି ପାଇଁ ।
ଦେଶ ସାରା ଯେବେ ଲାଗିଲା ଗୋଳ
ସାଇ ପଡ଼ିଶା ତୁ କରିଲୁ ଠୁଳ ।

ଶରବେ ଦେଖି ତୋ ବିଜୟୀ ମଥା
ଅଗ୍ନିଆ ହୋଇରେ କହିଲୁ କଥା ।
କହିଦେଲୁ ସଫା- "ଏ ଦେଶ ଛାଡ଼ି
ବିଦେଶୀଏ ତମେ ଯାଅରେ ଚାଲି ।
ଶୋଷି ଆମ ରକ୍ତ ନକର ଶେଷ
ଆମେ ଚଳାଇବୁ ଆମରି ଦେଶ ।"

ଲକ୍ଷଣ ଭାଇରେ ଲକ୍ଷଣ ଭାଇ
ତୋର କଥା ସିଏ ଶୁଣିଲେ ନାହିଁ ।
କୋରାପୁଟ ସାରା ପଡ଼ିଲା ଡାକ
ଥରି ଉଠିଲା ଏ ଓଡ଼ିଶା ଯାକ ।
କୋରାପୁଟବାସୀ ଉଠିଲେ ଡାକି
ମେଳ ବାନ୍ଧିଗଲେ ମେଳିଆ ଜାତି ।

ସରକାରୀ ଘର ଜଙ୍ଗଲ କୋଠି
ଚଢ଼ାଉ କରିଲେ ଗୋଟିକି ଗୋଟି ।
ଚଉକିଦାରର ଜୀବନ ଗଲା
କିଏ ଜାଣେ ସିଏ କେମିତି ମଲା ?

ଲକ୍ଷଣ ଭାଇରେ ଲକ୍ଷଣ ଭାଇ
ବିନାଦୋଷେ ତୋତେ କରିଲେ ଦାୟୀ ।
ଭାଗରେ ତୋତେ ରେ ଆଣିଲେ ଧରି
ଖାଲି ମନମୁଖୀ ବିଚାର କରି ।
ଶୁଣାଇଲେ ରାୟ ପାଇବୁ ଫାଶୀ
ଜିଅଲ ଭିତରେ ରହିଲୁ ଆସି ।

ରହିଲା ତୋ ପାଶେ କଡ଼ା ପହରା
କାଳେ କିଛି କଥା ଘଟିବ ପରା ।
ଜୀବନ ଭିକ ତୁ ମାଗିବା ପାଇଁ
କିଏ କେତେ କଥା କହିଲେ ଭାଇ ।
ଜବାବ ଦେଲୁ ତୁ ନବାବ ପରି
ମରିବା ପାଇଁକି ନଡ଼ରୁ ଡରି ।
କହିଲୁ– "ପୋଥି ବା ପୁରାଣେ କାହିଁ
ମିଛର ଜୟତ କେଉଁଠି ନାହିଁ ।
ସତରେ ଦୁନିଆ ଚାଲିଛି ସଦା
ମରିବାକୁ ମତେ ନ ଦିଅ ବାଧା ।
ବିନା ଦୋଷେ ଦୋଷ ମାନିବି କିଆଁ
ମରଣରେ ଭଲିଯିବିରେ ନିଆଁ ।

ଲକ୍ଷଣ ଭାଇରେ ଲକ୍ଷଣ ଭାଇ
ତୋ'ଠାରୁ ଏଭଳି ଜବାବ ପାଇ ।
ଉଚ୍ଛଳା ଚାଲିଲା ମରଣ ବେଦୀ
ସେ ବେଦୀ ଆମର ମରମଭେଦୀ ।
ବାରବାର ବେଦୀ ପରଖ ହେଲା
ଘନେଇ ଆସିଲା ଫାଶୀର ବେଳା ।

ଲକ୍ଷଣ ଭାଇରେ ଲକ୍ଷଣ ଭାଇ
ସେଦିନ କଥା ମୁଁ ଭୁଲିବି ନାହିଁ ।
ସକାଳ ପହରୁ ପଡ଼ିଲା ଭୁରି
ଛାଡ଼ିଯିବ ତୁମେ ମରତ-ପୁରୀ ।
ପାଦୁ ପାଦୁ ଭାରି ଯିବ ଯେ ଚାଲି
ସବୁରି ମନକ ହୋଇଲା ଭାରି ।
କେତେ ସାଥୀ ଦୁଃଖେ କରିଲେ ଦେଖା
ତୁମ ମନ ଦୁଃଖ ନଥିଲା ଏକା ।

ଗଲା ଦିନ କହି ଗଲ ତ ଯାହା
ଇତିହାସେ ଲେଖା ରହିବ ତାହା ।
କହିଲ– "ଆଉ କି ଅଛିରେ ଡେରି
ବିଦେଶୀଏ ଯିବେ ଯିବେ ରେ ଫେରି ।
ତୁମେ ଚଳାଇବ ତୁମରି ଦେଶ
ମୋର କାମ ଯାହା କଲି ମୁଁ ଶେଷ ।"

ଲକ୍ଷଣ ଭାଇରେ ଲକ୍ଷଣ ଭାଇ
ସୁରୁଯ ଲୁଚିଲେ ପଶ୍ଚିମେ ଯାଇ ।
କାଳ ରାତି ତହୁଁ ଆସିଲା ଘୋଟି
ମୁଦା ହେଲୁ ଆମେ ଗୋଟିକି ଗୋଟି ।
ଅଖିଆ ଅପିଆ ରାତିରେ ରହି
ଲୁହା ବାଡ଼ ପାଖେ ଥାଉ କାନେଇ ।
ଘଣ୍ଟାରେ ଯେମିତି ବାଜିଲା ଚାରି
ସଜଡ଼ା ଚାଲିଲା ତମ ସୁଆରି ।

ଜୟ ନାଦ ଦେଇ ବାପୁଜୀ ନାମେ
ଛାତିଫଟା ହୁରି ଛାଡ଼ିଲୁ ଆମେ ।
ରାମ ନାମ ଡାକ ମୁହଁରୁ ତୋର
ଭାସି ଆସି ଛାତି କଲା ପଥର ।
ଆଣିଲେ ସିପାହୀ ତୋତେ ରେ ଧରି
ଜିଅଲ ପାଚେରୀ ଉଠିଲା ଥରି ।

ଏଠିକା ଘଟଣା ଘଟିଲା ଯାହା
ଲେଖି ନପାରିବି ଆଉ ମୁଁ ତାହା ।

ଲକ୍ଷଣ ଭାଇରେ ଲକ୍ଷଣ ଭାଇ
ଜୀବନବତୀ ତୋ ଦେଲେ ଲିଭାଇ ।
ଇଆଡ଼େ ଆମେ ରେ କାନ୍ଦିଲୁ ବସି
ସିଆଡ଼େ ବାଜିଆ ଉଠିଲା ହସି ।
ନନ୍ଦନ ବନରୁ କୁସୁମ ତୋଳି
ପୁଞ୍ଜି ରଖିଥିଲା ଚନ୍ଦନ ଗୋଳି ।
ଗଳାରେ ମାଳତି ପିନ୍ଧାଇ ଦେଇ
ପାଛୋଟି ନେଲା ଯେ ଉଷତ ହୋଇ ।
ସାଥୀ ଭଗବତୀ ସାଥିରେ ନେଇ
କହିଲେ "ଚିହ୍ନୁଚ କିଏ ସେ ଏଇ ?"
"ଚିହ୍ନି ପାରିବିନି ?" କମଳାକ୍ଷଣୀ
କୋଳ କରି ନେଲେ ଉତ୍କଳମଣି ।
ଶୁଣି ମାୟାଧର ଆସିଲେ ଧାଇଁ
ବିରଳା ଭୂମିରୁ ଥିଲେ ଯେ ଯାଇ ।
ଉରମ ମାଟିରେ ରକତ ଢାଳି
ମରଣ ପଥେ ଯେ ଗଲେ ରେ ଚାଲି ।
ସଭିଏ ଆସି ତ ହୋଇଲେ ଠୁଳ
ଖେଳିଲା ସିଆଡେ ଖୁସିର ରୋଳ ।
କବିବାଣୀନିଧି ଶାରଦାମିତ
ଲେଖି ରଖିଥିଲେ ସ୍ୱାଗତ ଗୀତ ।
ବାବୁ ନିରଞ୍ଜନ ସେ ଗୀତ ଗାଇ
ସବୁରି ଅନ୍ତର ଦେଲେ ଥରାଇ ।
ଲକ୍ଷଣ ଭାଇରେ ଲକ୍ଷଣ ଭାଇ
କହିବୁ କଥାଏ ମୋତେ ଫିଟାଇ ।
କେତେ କେତେ ଯୁଗ ଖଟିଲେ ଏଠି
ସେଠି ଯାଇ ତୋତେ ପାରିବି ଭେଟି ?

# ପରିବେଶ ଦୂଷିତ ମୁକ୍ତ ଜୁଆର ବିଦ୍ୟୁତ୍

ଇଞ୍ଜିନିୟର ଜ୍ୟୋତି ପ୍ରକାଶ ସାହୁ

ବିଦ୍ୟୁତ୍ ଶକ୍ତି ହିଁ ବାସ୍ତବରେ କଳ କାରଖାନା-ଗୁଡ଼ିକର ଅସଲ ଶକ୍ତି । ଏହା ବ୍ୟତୀତ ଦେଶର ଆର୍ଥିକ ପ୍ରଗତି ଅଚିରେ ଓଲଟି ଯିବ । ଲୋକସଂଖ୍ୟା ବଢ଼ି ଚାଲିଛି । ସେହି ଅନୁପାତରେ କଳକାରଖାନା ବଢ଼ି ଚାଲିଛି । ଅଥଚ ଶକ୍ତି ଅଭାବ ଲାଗି ରହିଛି । ଏଥିପାଇଁ କାହାର ନିଶା ନାହିଁ, ଚିନ୍ତା ନାହିଁ, ଉଦ୍ୟମ ନାହିଁ ।

ଗତାନୁଗତିକ ପ୍ରଥାରେ ଉତ୍ପନ୍ନ ଶକ୍ତି ଦିନକୁ ଦିନ ଖର୍ଚ୍ଚ ବହୁଳ ଓ ବିପଦପୂର୍ଣ୍ଣ ହୋଇଉଠୁଛି । ପୃଥିବୀ ଗର୍ଭରେ ଥିବା ଖଣିଜ ଶକ୍ତି ଦ୍ରୁତ ଗତିରେ ନିଃଶେଷ ହେବାରେ ଲାଗିଛି । ଏଣେ ପରିବେଶ ଦୂଷିତ ହେବାରେ ଲାଗିଛି । ଏଇ ଅବସରରେ ଶକ୍ତି ଉତ୍ପାଦନ ପାଇଁ ଅନ୍ୟ ପନ୍ଥା ଆମେ ବାଛିବାକୁ ବାଧ୍ୟ ହେବା । ଆମ ଆଖି ଆଗରେ ଅଛି ଆଚ୍ଛନ୍ନ ବାୟୁମଣ୍ଡଳ ଓ ସୁବିସ୍ତୀର୍ଣ୍ଣ ନୀଳ ଜଳରାଶି । ଅମାପ ଅକ୍ଷୟ ସୌର ରଶ୍ମି । ଏଇଥିରୁ ଆମେ ପାଇବା ଆଗାମୀ ଶତାବ୍ଦୀର ସ୍ପୃହିଦା-ବିଦ୍ୟୁତ୍ ଶକ୍ତି । ପୃଥିବୀ ପୃଷ୍ଠରେ ବିଦ୍ୟୁତ୍ ଉତ୍ପାଦନର ଏତେଗୁଡ଼ିଏ ଉପାୟ ଥିବାବେଳେ ହଠାତ୍ ଆମେ ବାୟୁମଣ୍ଡଳରୁ ଶକ୍ତି ଉତ୍ପାଦନ କରି ପରିବେଶ ଦୂଷିତ କରିଦେବା ଉଚିତ ନୁହେଁ । ଏଇ ପରିପ୍ରେକ୍ଷୀରେ ବିଦ୍ୟୁତ୍ ସ୍ପୃହିଦା ମେଣ୍ଟାଇବା ପାଇଁ ଅନ୍ୟ ପନ୍ଥା କ'ଣ ହୋଇପାରେ? ଏଇ ଜଳ ସ୍ରୋତ ଜୁଆର ଶକ୍ତି । ପୃଥିବୀର ତିନିଚତୁର୍ଥାଂଶ ଘେରି ରହିଛି ଜଳର ଆସ୍ତରଣ । ସାଗର, ମହାସାଗରର ଜଳସ୍ରୋତ ଭୀଷଣ ଭୟଙ୍କର । ଏଥିରେ ସଞ୍ଚିତ ଅଛି ଅମାପ ଶକ୍ତି । ଏଇ ଶକ୍ତିରୁ ପାଇବା ଆମେ ବିଦ୍ୟୁତ୍ ଶକ୍ତି । ସମ୍ପ୍ରତି ଭାରତରେ ଅକ୍ଷୟ ଶକ୍ତିର ବିନିଯୋଗ ଉପରେ ଗୁରୁତ୍ୱ ଦିଆଯାଉଛି ।

କେନ୍ଦ୍ରୀୟ ଶକ୍ତି ନିଗମ ଓ ସରକାରଙ୍କ ଶକ୍ତି ବିଭାଗ, ବିଜ୍ଞାନ ଓ କାରିଗରୀ ବିଭାଗ ସହାୟତାରେ ଅନେକ କାର୍ଯ୍ୟକ୍ରମ ଶକ୍ତି ଅଭାବ ମେଣ୍ଟାଇବା ଲାଗି ହାତକୁ ନେଇଛନ୍ତି ।

ବୈଜ୍ଞାନିକମାନଙ୍କ ମତରେ ସୌର, ବାୟୁ, ଜଳ ଓ ଖଣିଜ ଶକ୍ତି ସହିତ ଜୁଆର ଶକ୍ତି ବିଦ୍ୟୁତ୍ ଅଭାବ ମେଣ୍ଟାଇବାରେ ଅନେକ ପରିମାଣରେ ଉପଯୋଗୀ ହୋଇ ପାରିବ । ପୃଥିବୀରେ ୧.୫ରୁ 2 ନିୟୁତ ମେଗାୱାଟ ଜୁଆର ଶକ୍ତି ସଞ୍ଚିତ ଅଛି । ଏହା ପୃଥିବୀର ସମଗ୍ର ବିଦ୍ୟୁତ୍ କେନ୍ଦ୍ରଗୁଡ଼ିକର ମୋଟ ଶକ୍ତିଠାରୁ ଢେର ଅଧିକ । ଅବଶ୍ୟ ସଞ୍ଚିତ ବିଶାଳ ଜୁଆର ଶକ୍ତିର କିୟଦଂଶ ଆମେ କାମରେ ଲଗାଇବା । ବିଭିନ୍ନ ଦେଶରେ ଥିବା ଜୁଆର ଶକ୍ତିର ଆନୁମାନିକ ପରିମାଣ ହେଲା: ଋଷିଆ-2୭,000ମେଗାୱାଟ, ଆମେରିକା।6,000 ମେଗାୱାଟ, ଭାରତ।2,000 ମେଗାୱାଟ୍, ଫ୍ରାନ୍ସ।1,000 ମେଗାୱାଟ, ମିଳିତ ରାଜ୍ୟ 2,000 ମେଗାୱାଟ, ଜାପାନ2,000ମେଗାୱାଟ୍ ।

ଜୁଆର ଶକ୍ତି ବିନିଯୋଗର ବଡ଼ କାରଣ ହେଲା ଏହା ପରିବେଶ ଦୂଷିତ କରେ ନାହିଁ । ପରମାଣୁ, କୋଇଲା ଓ ଜଳ ଶକ୍ତି ଭଳି ଜୁଆର ଶକ୍ତି ପ୍ଲାଣ୍ଟଗୁଡ଼ିକ

ଅବାରିତ ଶକ୍ତି ପ୍ରଦାନ କରିଆନ୍ତି ଓ ବିଶ୍ୱସ୍ତ ଶକ୍ତି ରୂପେ ''ଶୀର୍ଷ ସମୟର ଦାବୀ' (Peak hour demand) କୁ ପୂରଣ କରିପାରନ୍ତି । ଉଦାହରଣରେ, ଭାରତ ସରକାରଙ୍କର 600 ମେଗାୱାଟ ବିଶିଷ୍ଟ ଗୁଜୁରାଟର କାଣ୍ଡଲାଠାରେ କଚ୍ଛ ଉପକୂଳରେ ପ୍ରଥମ ଜୁଆର ପ୍ଲାଣ୍ଟ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରେ । ଏହି ପ୍ଲାଣ୍ଟଟି ପୃଥିବୀର ଷଷ୍ଠ ପ୍ଲାଣ୍ଟ ହେବ ଓ 1997 ସୁଦ୍ଧା ତିଆରି ସରିବ । ଏହା ପୂର୍ବରୁ ରୁଷିଆରେ ତିନୋଟି, ଫ୍ରାନ୍ସରେ ଗୋଟିଏ ଓ ଚୀନରେ ଗୋଟିଏ ପ୍ଲାଣ୍ଟ ବସି ସାରିଛି ।

ଆଠ ଶହ ବର୍ଷ ପୂର୍ବେ ସମୁଦ୍ର ଜୁଆରରୁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଉଥିଲା । ଇଉରୋପର ଖାଡି ଅଞ୍ଚଳରେ ଅନେକ ଜୁଆରକଳ ଚଳାଇ ଲୋକେ ଶସ୍ୟ କ୍ଷେତ୍ରରେ ବ୍ୟବହାର କରୁଥିଲେ । ପଚାଶ ବର୍ଷ ପୂର୍ବେ ଇଂଲଣ୍ଡରେ ପ୍ରାୟ 20ଟି ଜୁଆରକଳ ଚାଲୁଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ କୋଇଲା ଓ ଖଣିଜ ତୈଳ ବ୍ୟବହାର ବୃଦ୍ଧି ପାଇଲା । ଫଳରେ ଲୋକେ ସମୁଦ୍ର ଢେଉକୁ କାମରେ ଲଗାଇବା ପଦ୍ଧତି ଭୁଲିଗଲେ ।

ପୃଥିବୀର ସମୁଦ୍ର ଉପକୂଳରେ ଜୁଆର ବିଦ୍ୟୁତ୍ କେନ୍ଦ୍ର ଗଢି ତୋଳିବା ସମ୍ଭବ ନୁହେଁ । ଯେଉଁଠି ଉପସାଗରୀୟ ଅଞ୍ଚଳ କାହାଳୀ ପରି ଗୋଜିଆ ହୋଇଥାଏ, ସେଠାରେ ବନ୍ଧ ବାନ୍ଧିବା ସହଜ ଓ ଜୁଆର ସମୟରେ ଜଳର ଉଚ୍ଚତା ଅନ୍ତତଃ 4 ମିଟର ବଢିଯାଏ । ଏପରି ସ୍ଥାନରେ ବିଦ୍ୟୁତ୍ କେନ୍ଦ୍ର ଗଢିବା ବିଜ୍ଞାନ ସମ୍ମତ । ସମଗ୍ର ପୃଥିବୀରେ ଏଭଳି ସୁବିଧାଜନକ 24ଟି ସ୍ଥାନ ନିରୂପିତ ହୋଇଛି । ଭାରତର କଚ୍ଛ ଓ କ୍ୟାମ୍ବେ ଉପକୂଳ ଏମାନଙ୍କ ମଧ୍ୟରେ ସ୍ଥାନ ପାଇଛି ।

ପୃଥିବୀର ପ୍ରଥମ ଜୁଆର ବିଦ୍ୟୁତ୍ କେନ୍ଦ୍ର 1967ରେ ଫ୍ରାନସର 'ଲାଁ-ରାସ' ନଦୀ କୂଳରେ ସ୍ଥାପିତ ହୋଇଥିଲା । ଏହା 240 ମେଗାୱାଟ ଶକ୍ତି ଉତ୍ପାଦନ କରୁଛି ଓ ଏଥିରେ 24ଟି ଟର୍ବାଇନ୍ ବସିଛି । ଏଥିପାଇଁ 5 କୋଟି ପାଉଣ୍ଡ ଖର୍ଚ୍ଚ ହୋଇଥିଲା । ଏଥିରୁ ଉତ୍ପନ୍ନ ବିଦ୍ୟୁତ୍‌ରେ ଜଳ ବିଦ୍ୟୁତ୍ ଅପେକ୍ଷା ଅଧିକ 2.5ଗୁଣ ଖର୍ଚ୍ଚ ପଡୁଥିଲେ ହେଁ ଏହା ଜୁଆର ବିଦ୍ୟୁତ୍‌ର ବ୍ୟବସାୟିକ ବିନିଯୋଗର ଉତ୍କର୍ଷତା ପ୍ରତିପାଦନ କଲା । ଏହି କେନ୍ଦ୍ରଟି ଫ୍ରାନସକୁ ଯେଉଁ ପରିମାଣ ଶକ୍ତି ଯୋଗାଇ ଦେଉଛି ତା'ଠାରୁ 30ଗୁଣ ଅଧିକ ଶକ୍ତି ଉତ୍ପାଦନ ପାଇଁ ଗ୍ରେଟ୍ ବ୍ରିଟେନର ସେଭାର୍ଣ୍ଣ ନଦୀର ତୀର ଅଞ୍ଚଳରେ ପ୍ରାୟ 12 କିଲୋମିଟର ବନ୍ଧ ତିଆରି ହୋଇଛି । ଏହି କେନ୍ଦ୍ର ବ୍ରିଟେନର ମୋଟ ବିଦ୍ୟୁତ୍ ଗ୍ରହିତାର ଆଠଭାଗରୁ ଅନ୍ତତଃ ଏକ ଭାଗ ମେଣ୍ଟାଇ ଅଣପାରମ୍ପରିକ ଶକ୍ତିର ଗାରିମା ବଢାଇ ପାରିବ ।

1968 ରେ ପୃଥିବୀର ଦ୍ୱିତୀୟ ଜୁଆର ବିଦ୍ୟୁତ୍ କେନ୍ଦ୍ର ସୋଭିଏତ୍ ରୁଷର ବରେଣ୍ଟ୍ ସାଗରର କିଶଲଗୁବାଠାରେ ବସିଲା । ଏଥିରେ ସୋଭିଏତ୍ ଭାସମାନ ଗଠନ କାରିଗରୀ କୌଶଳ ବ୍ୟବହୃତ ହୋଇଅଛି । ଏଥିପାଇଁ ଡ୍ୟାମ ତିଆରି କରିବା ବା ଶକ୍ତି କେନ୍ଦ୍ରରୁ ଜଳ ନିଷ୍କାସନ କରିବା ଅନାବଶ୍ୟକ । ଲାଁ-ରାସଠାରେ ଉତ୍ପାଦିତ ଜୁଆର ଶକ୍ତି ଏଥିପାଇଁ ଅଧିକ ଖର୍ଚ୍ଚ ବହୁଳ ହୋଇଥିଲା । ଏହାଛଡା ରୁଷିଆ ଉତ୍ତର ଉପକୂଳରେ ମୁରମାନସ୍କ ଅଞ୍ଚଳରେ ପରୀକ୍ଷାମୂଳକ ଭାବେ ପ୍ରାୟ 400 କିଲୋୱାଟ ବିଦ୍ୟୁତ୍ ଉତ୍ପାଦନ କରିବା ସମ୍ଭବ ହୋଇଛି । ରୁଷ୍ ବୈଜ୍ଞାନିକମାନେ ଉତ୍ତର ସାଗର ମେଜେନସ୍କାୟ ଅଞ୍ଚଳରେ 56 କିଲୋମିଟର ଲମ୍ବ ବନ୍ଧଦ୍ୱାରା 2,200 ବର୍ଗ କିଲୋମିଟର ଆୟତନର ଏକ ବିଶାଳ ଜଳାଧାରରେ ଜୁଆର ଜଳକୁ ଅଟକାଇ ସେଥିରୁ ଘଣ୍ଟାରେ 320 ଲକ୍ଷ ମେଗାୱାଟ୍ ବିଦ୍ୟୁତ୍ ଉତ୍ପାଦନର ପରିକଳ୍ପନା କରିଛନ୍ତି ।

ପୃଥିବୀର ତୃତୀୟ ଜୁଆର ବିଦ୍ୟୁତ୍ କେନ୍ଦ୍ର ଫ୍ରାନ୍ସ ସହଯୋଗିତାରେ ଦକ୍ଷିଣ କୋରିଆରେ ଗଢି ଉଠିଛି । ଫ୍ରାନ୍ସ ଭୂମି ତଳେ କୋଇଲା ବା ତୈଳ ଭଣ୍ଡାର ଖୁବ୍ ସାମାନ୍ୟ । ତେଣୁ ଫରାସୀ ବୈଜ୍ଞାନିକମାନେ ଜୁଆରଭଟ୍ଟାର ଶକ୍ତି ପ୍ରତି ଅଧିକ ମନୋନିବେଶ କରିଛନ୍ତି । ଏହାଛଡା ଆର୍ଜେଣ୍ଟିନାର ସନ୍‌ଜୋସ୍ ଉପସାଗର, କାନାଡାର ଫାଣ୍ଡି ଉପସାଗର, ଅଷ୍ଟ୍ରେଲିଆର ଉତ୍ତର ପୂର୍ବ ଉପକୂଳରେ ମଧ୍ୟ ଜୁଆରର ଜଳରୁ ବିଦ୍ୟୁତ୍ ଉତ୍ପାଦନର ପରିକଳ୍ପନା କରାଯାଇଛି ।

ଇଂଜିନିୟରମାନେ ଉପଲବ୍ଧି କରିଛନ୍ତି ଯେ ଛୋଟ ଛୋଟ ଟର୍ବାଇନ୍ ସାହାଯ୍ୟରେ ଖୁବ୍ ଅଳ୍ପ ଖର୍ଚ୍ଚରେ ସମୁଦ୍ର ଢେଉରୁ ବିଦ୍ୟୁତ୍ ଉତ୍ପାଦନ କରିବା ସମ୍ଭବ । ନଦୀ ସ୍ରୋତ ମୁହଁରେ ବା ସମୁଦ୍ର ଉପକୂଳ ଅଞ୍ଚଳରେ ଯେଉଁଠି ପାଣି ଗଭୀର ନ ହେଲେ ମଧ୍ୟ ସ୍ରୋତ ଖୁବ୍ ପ୍ରଖର, ସେଭଳି ସ୍ଥାନରେ ଏହି ଛୋଟ ଟର୍ବାଇନ୍ ରଖି ଇଚ୍ଛା ଅନୁସାରେ ଅଳ୍ପ ଖର୍ଚ୍ଚରେ ସ୍ଥାନୀୟ ଗ୍ରହିତାଙ୍କୁ ସ୍ତୁହିଁ ଶକ୍ତି ଉତ୍ପାଦନ କରାଯାଇ ପାରିବ ।

ଭାରତର କଚ୍ଛ, କ୍ୟାମ୍ବେ ଓ ପଶ୍ଚିମବଙ୍ଗର ସୁନ୍ଦରବନ ଅଞ୍ଚଳରେ ଜୁଆର ସୀମା ଖୁବ୍ ଅଧିକ ।

କେବଳ କଚ୍ଛ ଉପକୂଳରେ 7,000 ମେଗାୱାଟ୍ ଜୁଆର ଶକ୍ତି ସଞ୍ଚିତ ଅଛି । କଚ୍ଛ ପ୍ରୋଜେକ୍ଟ ପଶ୍ଚିମାଂଚଳ ଗ୍ରୀଡ୍ ସହିତ ସଂଯୋଗ କରାଯିବ ଓ ଶତକଡା ଶହେ ଭାଗ ଶକ୍ତି କେବଳ ପଶ୍ଚିମ ଭାରତରେ ବ୍ୟବହୃତ ହୋଇଯିବ । ତେଣୁ ସେହି ଅଂଚଳରେ କୋଇଲା ଶକ୍ତି ଉପରେ ଆଉ ନିର୍ଭର କରିବାକୁ ପଡିବ ନାହିଁ ।

ପୃଥିବୀରେ ପ୍ରଥମଥର ପାଇଁ ସୋଭିଏତ୍ ୟୁନିଅନ ଦ୍ୱାରା ଭାସମାନ ପ୍ରକ୍ରିୟାରେ ଜୁଆର ବିଦ୍ୟୁତ୍ କେନ୍ଦ୍ର ସ୍ଥାପନ କରାଯାଇଅଛି । ଏହାଦ୍ୱାରା ଜୁଆର ଶିଳ୍ପ ସ୍ଥାପନ ପାଇଁ ଆବଶ୍ୟକ ହେଉଥିବା ବୃହତକାୟ ଯନ୍ତ୍ରପାତିର ଆବଶ୍ୟକତା ଅନେକ କମି ଯାଇଅଛି ଓ ଅଗମ୍ୟ ଉପକୂଳ ଅଂଚଳରେ ପ୍ରବେଶ ସହଜ ହୋଇ ପାରିଛି ।

ଆଉ ଏକ ଗୁରୁତ୍ୱପୂର୍ଣ୍ଣ ସୋଭିଏତ୍ ଅବଦାନ ହେଲା ଅନେକ କିଲୋମିଟର ଲମ୍ବା ଡ୍ୟାମ ନିର୍ମାଣରେ ନିୟନ୍ତ୍ରିତ ବ୍ଲାଷ୍ଟିଂଗ୍ ସ୍ତର୍ଜ ପ୍ରକ୍ରିୟାର ଗଭୀର ପ୍ରୟୋଗ । ଏହା ଅଧିକ ଶ୍ରମ ବଂଚାଏ ଓ ସମୁଦ୍ର ତଳେ ଗଭୀର ଜଳକୁ ଭେଦ କରି ନିୟନ୍ତ୍ରିତ ବ୍ଲାଷ୍ଟିଂଗ୍ ସ୍ତର୍ଜ ପ୍ରୟୋଗ ଦ୍ୱାରା ଅନେକ ସହାୟକ ଯନ୍ତ୍ରପାତି ଅଦରକାର କରିଥାଏ । ଏହା ହିଁ ବିଶେଷ ପ୍ରଣିଧାନ ଯୋଗ୍ୟ । ଚିରାଚରିତ ପ୍ରଥାରେ ନିର୍ମିତ ଡ୍ୟାମର ନିର୍ମାଣ ଖର୍ଚ୍ଚ ତୁଳନାରେ ଏହା 10ରୁ 20ଗୁଣ ଶସ୍ତା ପଡିଥାଏ । ଇତ୍ୟବସରେ ଆମ ହିମାଚଳ ପ୍ରଦେଶର ବରାଶୀ ନଦୀରେ ବ୍ଲାଷ୍ଟିଂଗ୍ ସ୍ତର୍ଜ ପ୍ରକ୍ରିୟାରେ ସୋଭିଏତ୍ ୟୁନିଅନର ପ୍ରତ୍ୟକ୍ଷ ସହାୟତା-ରେ ଏକ ବନ୍ଧ ନିର୍ମାଣ ସ୍ଥିରିଛି ।

ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ସୋଭିଏତ୍ ଅବଦାନ ହେଲା ପରମାଣୁ, ତାପଜ ଓ ଜଳ ବିଦ୍ୟୁତ୍ ଗ୍ରୀଡ୍‌ଗୁଡିକ ସହିତ ଏକକବେସିନ୍ ଜୁଆର ବିଦ୍ୟୁତ କେନ୍ଦ୍ରର ସଂଯୋଗୀ-କରଣ । ବଳକା ପରମାଣୁ ଓ ତାପଜ ଶକ୍ତି ଦ୍ୱାରା ରାତ୍ରିରେ ଜୁଆର=ବିଦ୍ୟୁତ୍=ଟର୍ବାଇନ୍‌ଗୁଡିକ ଏକକବେସିନକୁ ପମ୍ପଦ୍ୱାରା ଜଳଯୋଗାଇ ଥାନ୍ତି । ଏହା ଜୁଆର ବିଦ୍ୟୁତ୍ କେନ୍ଦ୍ରକୁ ''ଶୀର୍ଷ ସମୟ''ରେ Peak hour ଶକ୍ତି ଉତ୍ପାଦନ ବଢାଇବାରେ ସାହାଯ୍ୟ କରିଥାଏ । ଅନ୍ୟ ପକ୍ଷରେ ଜଳ ବିଦ୍ୟୁତ୍ କେନ୍ଦ୍ରଗୁଡିକ ସମୁଦ୍ର ବା ନଦୀ ଜୁଆରିଆ ନଥିବା ସମୟରେ ଜୁଆର ବିଦ୍ୟୁତ୍ କେନ୍ଦ୍ରକୁ ଜଳ ଭରଣା କରି ପାରିବେ । ଗତ 20 ବର୍ଷ ଧରି କିଶଲାୟା ଜୁଆର ବିଦ୍ୟୁତ୍ କେନ୍ଦ୍ର ସଠିକ୍, ବିଶ୍ୱସ୍ତ ଓ ଦକ୍ଷ ଭାବେ କାର୍ଯ୍ୟ କରି ଇଞ୍ଜିନିୟରିଂ ବିଦ୍ୟାର ପରାକାଷ୍ଠା ପ୍ରଦର୍ଶନ କରି ଆସୁଅଛି । ଛୋଟ ଛୋଟ ଜୁଆର କେନ୍ଦ୍ରଗୁଡିକ ଆଜି ପୃଥିବୀରେ ବଡ ବଡ ଜୁଆର ବିଦ୍ୟୁତ୍ ପ୍ରୋଜେକ୍ଟ ସ୍ଥାପନ କରିବାର ଖୋରାକ ଯୋଗାଇ ଅଛନ୍ତି । କାନାଡାର ଫାଣ୍ଡି ସାଗରରେ ଏଭଳି ଏକ ବିରାଟ ପ୍ରୋଜେକ୍ଟ କାର୍ଯ୍ୟକାରୀ ହେଉଅଛି ।

ଏକକସରଣୀ( One pool )ଜୁଆର ବିଦ୍ୟୁତ୍ କେନ୍ଦ୍ରଗୁଡିକର ନିର୍ମାଣ କୌଶଳ ଆଜି ପୃଥିବୀରେ ସର୍ବତ୍ର ଗ୍ରହଣୀୟ ହୋଇ ପାରିଛି । ଏହା ବିଭିନ୍ନ ପ୍ରକାର ବିଦ୍ୟୁତ୍ ଶକ୍ତିକୁ ଆନ୍ତଃଗ୍ରୀଡ୍ ସହିତ ସଂଯୋଗ କରାଯାଇ ପାରୁଛି । ଏହାହିଁ କାନାଡିଆନମାନଙ୍କର ଜୁଆର ବିଦ୍ୟୁତ୍ କେନ୍ଦ୍ରର ନିର୍ମାଣ କୌଶଳ । କାନାଡାର କୁମ୍ବରଲ୍ୟାଣ୍ଡଠାରେ 1.2 ନିୟୁତ କିଲୋୱାଟ୍ ଓ କୋବେକୁଇଡ୍‌ଠାରେ 4 ନିୟୁତ କିଲୋୱାଟ୍ ଶକ୍ତିର ଜୁଆର ବିଦ୍ୟୁତ୍ କେନ୍ଦ୍ର ସ୍ଥାପନ କରାଯାଉଛି, ଯାହାକି ଆର୍ଥିକ ଦୃଷ୍ଟିକୋଣରୁ ଲାଭଜନକ ।

ଭବିଷ୍ୟତରେ ସମୁଦ୍ର ଉପରେ ଭାସମାନ ସହର ତିଆରି କରାଯିବାର ପରିକଳ୍ପନା ରହିଛି । ଏହିସବୁ ଭାସମାନ ସହରଗୁଡିକ ପାଇଁ କର୍କଟ ଓ ମକରକ୍ରାନ୍ତିର ମଧ୍ୟବର୍ତ୍ତୀ ଅଂଚଳରେ ଯେଉଁ ବିସ୍ତୀର୍ଣ୍ଣ ସାମୁଦ୍ରିକ ଅଂଚଳ ରହିଛି ସେହି ଅଂଚଳରେ ନିର୍ମାଣ କରାଯିବ । ସାମୁଦ୍ରିକ ଉଷ୍ଣତାର କମ୍‌ବେଶୀ ପାର୍ଥକ୍ୟକୁ ବିନିଯୋଗ କରି ବିଦ୍ୟୁତ୍ ଉତ୍ପାଦନ କରିବାର ସୁବିଧା ସେଠାରେ ଅଛି । ସୂର୍ଯ୍ୟକର ଲମ୍ବ କିରଣ ସେଠାରେ ତୀକ୍ଷ୍ଣ ଭାବରେ ପଡିଥାଏ । ଫଳତଃ ଜଳସ୍ତରର ତାପ 25 ଡିଗ୍ରୀ ସେଲସିୟସ୍‌ରେ ପହଂଚିଥାଏ । କିନ୍ତୁ ସମୁଦ୍ର ପୃଷ୍ଠରୁ ଏକ ହଜାର ମିଟର ଗଭୀର ଜଳର ତାପମାତ୍ରା ମାତ୍ର 5ଡିଗ୍ରୀ ସେଲ-ସିୟସ୍ । ଜଳ ତାପର ଏହି ପାର୍ଥକ୍ୟ ବେଶ୍ ବୈଜ୍ଞାନିକ ଉପଯୋଗୀ । ଏଇ ପାର୍ଥକ୍ୟ ହିଁ ଯାନ୍ତ୍ରିକ ଉପାୟରେ ଜଳକୁ ବାଷ୍ପୀଭୂତ କରିବ । ବାଷ୍ପ ଟର୍ବାଇନ୍ ଘୂରାଇବ । ଅବଶ୍ୟ ଏହା ଏକ କଳ୍ପନାରେ ସୀମିତ । ଆଉ ଏକ ପରିକଳ୍ପନା ହେଲା କଳ୍ପିତ ସାମୁଦ୍ରିକ ସହରର ଏକ ହଜାର ମିଟର ଗଭୀରରେ ଝୁଲାଇ ରଖାଯିବ ବଡ ବଡ ବେସିନ୍, ଯେଉଁଥିରେ କି 'ଫ୍ରେୟନ' ନାମକ ତରଳ ରାସାୟନିକ ପଦାର୍ଥ ରଖାଯିବ । ଏହି ଫ୍ରେୟନ 22 ଡିଗ୍ରୀ ସେଲସିୟସରେ ବାଷ୍ପୀଭୂତ ହୁଏ । ସମୁଦ୍ର ଉପରେ 25 ଡିଗ୍ରୀ ସେଲସିୟସରେ ସେହି ବାଷ୍ପର ସ୍ତ୍ରପ ବଢେ । ଏହି ସ୍ତ୍ରପରେ ଟର୍ବାଇନ ଘୂରି ପାରିବ । ବିଦ୍ୟୁତ୍ ଉତ୍ପାଦନ ସହ ପମ୍ପ ସାହାଯ୍ୟରେ ଫ୍ରେୟନକୁ

ସମୁଦ୍ରର ତଳାରେ ମିଟର ଗଭୀରତାରେ ଥିବା ବେସିନ୍‌କୁ ପୁନଃ ପ୍ରେରଣ କରାଯାଇ ପାରିବ । ଏହାଦ୍ୱାରା କମ୍ ଖର୍ଚ୍ଚରେ ଫେସୁନର ପୁନଃ ପୁନଃ ବ୍ୟବହାର କରାଯାଇ ନୂତନ କାରିଗରୀ ଜ୍ଞାନ ଆହରଣ କରାଯାଇ ପାରିବ ।

କହିବା ବାହୁଲ୍ୟ ଯେ ସୋଭିଏତ୍ କାରିଗରୀ ବିଦ୍ୟାଦ୍ୱାରା ଭାରତରେ ଜୁଆର ବିଦ୍ୟୁତ୍ ଶକ୍ତି ଉତ୍ପାଦନ ପାରସ୍ପରିକ ସହଯୋଗ କ୍ରମେ ଫଳବତୀ ହୋଇପାରିଛି । ସପ୍ତମ ଯୋଜନା କାଳରେ ଦେଶରେ ଅଣପାରଂପରିକ ଶକ୍ତି ଉତ୍ପାଦନ ପାଇଁ କେନ୍ଦ୍ର ସରକାର 412 କୋଟି ଟଙ୍କାର ଖର୍ଚ୍ଚ ଅଟକଳ କରିଛନ୍ତି । ଉଚ୍ଚ ଓ ନୀଚ ଜୁଆର ସ୍ରୋତରୁ ଅଧିକ ଶକ୍ତି ପାଇବା ଲାଗି ଭାରତୀୟ ବୈଜ୍ଞାନିକମାନେ ଅଧିକ ମନୋନିବେଶ କରିବେ ବୋଲି ଆଶା କରାଯାଏ ।

---

ଏସ୍.ଟି.ଓ. ଟେଲିକମ୍ୟୁନିକେସନ,
ଓଡିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡ, ସ୍ୱୈଦ୍ବାର ।



**୧୯୮୮– ବଜେଟ୍ ଉପସ୍ଥାପନ ପାଇଁ ବିଧାନସଭା ଅଭିମୁଖେ ଅର୍ଥମନ୍ତ୍ରୀ ଶ୍ରୀ ଯୁଗଳକିଶୋର ପଟ୍ଟନାୟକ**

# ଆମ ମାତୃଭାଷା ଓ ମାତୃଭୂମିର ସୁଯୋଗ୍ୟ ସନ୍ତାନ

ଶ୍ରୀମତୀ ଛବି ମହାନ୍ତି

ଆମ ମାତୃଭୂମି ଓ ମାତୃଭାଷାର ପ୍ରଶସ୍ତି ବିଭିନ୍ନ ସାଧୁସନ୍ଥ, କବି, ଲେଖକ ଓ ଜନସେବକ ବିଭିନ୍ନ ସମୟରେ ଯେପରି ଗାନ କରି ଯାଇଛନ୍ତି, ତାର ପଟାନ୍ତର ନାହିଁ । ଓଡ଼ିଶାର ଜଣେ ପରମସନ୍ଥ ପ୍ରେମାଶ୍ରୟୀ ବାବା ମଧୁସୂଦନ ଲେଖିଛନ୍ତି:—

"ମାତା, ମାତୃଭୂମି, ମାତୃଭାଷା ତିନି
ସ୍ୱର୍ଗୁଁ ଗରୀୟସୀ ତ୍ରୈବର୍ଗ ଦାୟିନୀ, "

ବ୍ରହ୍ମଷି ଭକ୍ତକବି ମଧୁସୂଦନ ରାଓ ଲେଖିଛନ୍ତି:—

"ମାତୃଭୂମି, ମାତୃଭାଷା ଉଭୟେ ଜନନୀ
ସେବିବାକୁ ଭକ୍ତିଭରେ ଦିବସ ରଜନୀ
ଏମାନଙ୍କ ଜନ୍ୟ ହେଉ ସଫଳ ମୋହର
ଏ ଭିକ୍ଷା କରନ୍ତୁ ପୂର୍ଣ୍ଣ ପ୍ରଭୁ ମହେଶ୍ୱର"

ପୁଣି ସ୍ୱଭାବକବି ଗଙ୍ଗାଧର ମେହେର ଲେଖିଛନ୍ତି:—

"ମାତୃଭୂମି, ମାତୃଭାଷାରେ ମମତା ଯାହୃଦେ
ଜନମି ନାହିଁ,
ତାକୁ ଯେବେ ଜ୍ଞାନୀ ଗଣରେ ଗଣିବା ଅଜ୍ଞାନୀ
ରହିବେ କାହିଁ ?
ଉନ୍ନତହେବା ପାଇଁ କର ଯେବେ ଆଶା,
ଉନ୍ନତ କର ଆଗେ ନିଜ ମାତୃଭାଷା । "

ସ୍ୱର୍ଗତ ନାରୀକବି କୁନ୍ତଳା କୁମାରୀ ସାବତ ଓଡ଼ିଆ ଜାତିର ସ୍ୱାଭିମାନ ସଂପର୍କରେ ଲେଖିଛନ୍ତି:—

"ନିରାଶାର ଗିର ନଶୋଷୁ ରସନା
କହାଙ୍କୁ ତାହା ଏଜାତି ଶ୍ରବଣରେ
ତେଇଶକୋଟି ପ୍ରାଣ ନବ ଜାଗରଣେ
ଦିଅ ଉଠିବାକୁ ନବ ବିକ୍ରମରେ ।

ଓଡ଼ିଆ ଭାଷାର ମୃତବତ୍ ଅବସ୍ଥାରେ କବିବର ରାଧାନାଥ ଆଶାର ବାଣୀ ଶୁଣାଇଛନ୍ତି:—

ପାହିଲାଣି ଘୋର ତାମସ ରଜନୀ
ଫୁଟିବ ଉତ୍କଳ ଭାଷା କମଳିନୀ

ପୁଣି ଉତ୍କଳ ଜନନୀର କମନୀୟ ରୂପ ବୈଭବ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଭାଷାରେ ବେଶ୍ ହୃଦୟ ଗ୍ରାହୀ ହୋଇଛି:—

ବନ୍ଦେ ଉତ୍କଳ ଜନନୀ ।
ଚାରୁହାସମୟୀ ଚାରୁଭାଷମୟୀ ଜନନୀ ଜନନୀ

ଓଡ଼ିଶା ଯେତେବେଳେ ସ୍ୱତନ୍ତ୍ର ପ୍ରଦେଶ ରୂପେ ନିଜର ସ୍ୱୀକୃତି ଲାଭ କରି ନଥିଲା, ପଣ୍ଡିତ ଗୋଦାବରୀଶ ମିଶ୍ର ଲେଖିଥିଲେ:—

"ବାଲି ଧୂଳି ମାଟି ପଙ୍କେ ସିନା ଗଢ଼ା
ସରଗୁ ବଡ଼ ଏ ଜନମ ଭୂଇଁ
କିପରି ଦେଖିବି ହରିନେବ ପର
ଏ ପିଣ୍ଡେ ବାବୁରେ ପରାଣ ଥାଇ ।

ଉତ୍କଳ ଗୌରବ ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଓଡ଼ିଆଜାତିକୁ ଗୋଟିଏ ଡ଼ାକରା ଦେଇ ଥିଲେ ଜାତିପାଇଁ ନିଜର ଜୀବନକୁ ଅର୍ପଣ କରିବା ଲାଗି । ସେଥିପାଇଁ ସେ ଲେଖିଛନ୍ତି:—

"ନିଜର ଜୀବନ ଜାତିକୁ ଅର୍ପଣ
କଲେ ମିଳେ ଜାତି ପ୍ରାଣ
ଜାତୀରେ ଜୀବନ ନ ମିଳିବ କଲେ
ହାଟେବାଟେ ଅନ୍ୱେଷଣ "

ପୁଣି ସେ କହିଛନ୍ତି:-"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"

ଏହି ବାକ୍ୟଟି ବହୁ କାଳରୁ ଶୁଣାଯାଉଛି, କିନ୍ତୁ ତାର ଅର୍ଥ ବୁଝିବାକୁ ବୋଧହୁଏ କେହିଚେଷ୍ଟା କରନ୍ତି ନାହିଁ । ଦେଖନ୍ତୁ, ପ୍ରଥମେ ଜନନୀ, ଦ୍ୱିତୀୟରେ ଜନ୍ମଭୂମି, ତୃତୀୟରେ ସ୍ୱର୍ଗ । ମନୁଷ୍ୟ ଜନ୍ମରେ ପ୍ରତ୍ୟେକ ମନୁଷ୍ୟର ଜୀବନକୁ ଗୋଟିଏ ସ୍ରୋତ ବୋଲି ମନେକଲେ ଦେଖିବେ, ଏହି ସ୍ରୋତର ଆଦ୍ୟରେ ଜନନୀ, ମଧ୍ୟରେ ଜନ୍ମଭୂମି ଓ ଶେଷରେ ସ୍ୱର୍ଗ । ପ୍ରତ୍ୟେକ ଆତ୍ମାର ଏହି ଗତି । ମନୁଷ୍ୟ ଜୀବନରେ ଅଦ୍ୟ ଜନନୀ, କାର୍ଯ୍ୟ-ଜନ୍ମଭୂମି, ପୁରସ୍କାର-ମୁକ୍ତି ବା ସ୍ୱର୍ଗ । ଏଥିପାଇଁ ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ ମଧ୍ୟ ଗରୀୟସୀ । ପ୍ରତ୍ୟେକ ମନୁଷ୍ୟର ଗୋଟିଏ ଆତ୍ମା ଅଛି । ତାହା ଈଶ୍ୱରଙ୍କର ଅଂଶ । ଏହି ଆତ୍ମା ପୃଥିବୀରେ କାର୍ଯ୍ୟକରି ଈଶ୍ୱରଙ୍କଠାରେ ମିଶିଯିବ । ଏ ଆତ୍ମା କେଉଁଠାରେ କାର୍ଯ୍ୟ କରୁଛି ? କିପରି ସ୍ୱର୍ଗଗତ କରୁଛି ? ଏ ଆତ୍ମା ଜନ୍ମଭୂମିରେ କାର୍ଯ୍ୟକରେ । ଏ ପୃଥିବୀରେ ହିଁ ମନୁଷ୍ୟ ଦୟା, ଧର୍ମ, ପରୋପକାର କରି ସ୍ୱର୍ଗପ୍ରାପ୍ତ ହୁଏ । ତେଣୁ ନିଃସ୍ୱାର୍ଥଭାବରେ ମାତୃଭୂମି ପ୍ରତି ଓ ଭାଇମାନଙ୍କ ପ୍ରତି ଆପଣାର କର୍ତ୍ତବ୍ୟ କର୍ମ କର । ମନୁଷ୍ୟଠାରୁ କୌଣସି ପୁରସ୍କାର ଆଶା ନରଖ । ଈଶ୍ୱର ଆଶୀର୍ବାଦ କରିବେ" ।

ଓଡ଼ିଆ ଭାଷା ଆନ୍ଦୋଳନର ଜାଗ୍ରତ ପ୍ରହରୀରୂପେ କର୍ମବୀର ଗୌରୀ ଶଙ୍କର ରାୟଙ୍କ ସମ୍ପାଦନାରେ ଓଡ଼ିଶାର ପ୍ରଥମେ ସମ୍ବାଦ ପତ୍ର ଉତ୍କଳଦୀପିକା ୧୮୬୬ ମସିହାରେ ପ୍ରକାଶ ପାଉଥିଲା । ଏହା ବ୍ୟତୀତ ଅନ୍ୟ ଏକ ବ୍ୟାଙ୍ଗମନର ଯୁବକ ପ୍ୟାରୀ ମୋହନ ଆଚାର୍ଯ୍ୟଙ୍କ ଓଡ଼ିଆଭାଷା ଆନ୍ଦୋଳନରେ ଯଥେଷ୍ଟ ଅବଦାନ ରହିଛି ।

୧୮୭୦ ମସିହାରେ 'ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ' ବୋଲି ବଙ୍ଗବାସୀମାନେ ପ୍ରଚାର କରନ୍ତି । ଏହିପରି ଏକ ସଙ୍କଟମୟ ପରିସ୍ଥିତିରେ ଉତ୍କଳ ଜନନୀ ଜନ୍ମ ଦିଅନ୍ତି ୪ ଜଣ ସାହିତ୍ୟରଥିଙ୍କୁ ୧୮୪୩ରେ ଫକୀରମୋହନ, ୧୮୪୮ରେ ରାଧାନାଥ, ୧୮୫୩ରେ ଭକ୍ତକବି ମଧୁସୂଦନ ଓ ୧୮୬୨ରେ ସ୍ୱଭାବ କବି ଗଙ୍ଗାଧର ମେହେରଙ୍କୁ ଯେଉଁମାନେ ଆମ ମାତୃଭାଷାର ମର୍ଯ୍ୟାଦା ବୃଦ୍ଧି କରିଛନ୍ତି, ସେମାନଙ୍କ ଅବିରତ ମସୀ ଚାଳନାରେ ।

ଓଡ଼ିଶାର ଯଦି ସ୍ଥାୟୀ ସଂପତ୍ତି ବୋଲି କିଛି ଥାଏ ଓ ତାହା ସୂର୍ଯ୍ୟ ଚନ୍ଦ୍ର ଆତଯାତ ହେଉଥିବା ପର୍ଯ୍ୟନ୍ତ ତିଷ୍ଠି ରହିଥିବେ, ସେହି ଦୁଇଟି ସଂପତ୍ତି ହେଲେ, 'ମହାପ୍ରଭୁ ଜଗନ୍ନାଥ' ଓ ଅତିବଡ଼ି ଜଗନ୍ନାଥ ଦାସଙ୍କ ବିରଚିତ 'ଅତିବଡ଼ି ଭାଗବତ, ମାଦଳା ପାଞ୍ଜି, ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଓ ବିନୋଦ୍ କାନୁନ୍‌ଗୋଙ୍କ ଦ୍ୱାରା ସଙ୍କଳିତ ଓଡ଼ିଆ ଜ୍ଞାନମଣ୍ଡଳ । ଏହା ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ପୁଷ୍ଟ କରିଛି । ଏହା ବ୍ୟତୀତ ତ୍ରୟୋଦଶ ଶତାବ୍ଦୀରେ ରଚିତ ଜୟଦେବଙ୍କ ଗୀତ ଗୋବିନ୍ଦ ଓ ତାପରେ ଶୂଦ୍ରମୁନୀ ସାରଳା ଦାସଙ୍କ ରଚିତ ମହାଭାରତ, ଉତ୍କଳ ବାଲ୍ମିକୀ ବଳରାମଙ୍କ ରଚିତ 'ରାମାୟଣ' ଓ ନୀଳମଣି ବିଦ୍ୟାଳଂକାରଙ୍କ 'ଅଳଙ୍କାର ଦର୍ପଣ', ଜ୍ୟୋତିର୍ବିଦ୍ ଚନ୍ଦ୍ରଶେଖରଙ୍କ ରଚିତ 'ସିଦ୍ଧାନ୍ତ ଦର୍ପଣ' ଓଡ଼ିଆ ଜାତିର ଅମୂଲ୍ୟ ସଂପଦ ।

ଏହାଛଡ଼ା ଓଡ଼ିଶା ମାଟିର ସୁଯୋଗ୍ୟ ସନ୍ତାନ, ଯେଉଁମାନେ ଏହି ଜନ୍ମଭୂମିର ଗୌରବ ବର୍ଦ୍ଧନ କରିଛନ୍ତି, ସେମାନେ ଓଡ଼ିଆଙ୍କ ମାନସପଟରୁ କେବେ ବିସ୍ମୃତ ହେବେ ନାହିଁ, ସେମାନେ ହେଲେ, ଅତିବଡ଼ି ପଞ୍ଚସଖାଙ୍କ ମଧ୍ୟରୁ 'ଅଚ୍ୟୁତାନନ୍ଦ, ଯଶୋବନ୍ତ, ଶିଶୁ ଅନନ୍ତ, ରସକବି ଦୀନକୃଷ୍ଣ, କବି ସମ୍ରାଟ ଉପେନ୍ଦ୍ରଭଞ୍ଜ, ପ୍ରେମିକ କବି ଅଭିମନ୍ୟୁ କବିସୂର୍ଯ୍ୟ ବଳଦେବ, କୃଷ୍ଣପ୍ରାଣ ଗୋପାଳକୃଷ୍ଣ, ଆଦର୍ଶ ରାଜା ସୁଜନ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, କର୍ମବୀର ଗୌରୀଶଙ୍କର, ପ୍ରକୃତିପ୍ରିୟ ରାଧାନାଥ, ସାମ୍ବାଦିକ ନୀଳମଣି, ଉତ୍କଳ କେଶରୀ ମଧୁସୂଦନ, ଦେଶପ୍ରାଣ ଗୋପବନ୍ଧୁ, ସଂସ୍କାରକ ବିଶ୍ୱନାଥ ଓ ବାଗ୍ମୀ ବିଶ୍ୱନାଥ କର, ବାରିଷ୍ଟର ବିଶ୍ୱନାଥ ମିଶ୍ର, ପ୍ରିୟଦର୍ଶୀ ବ୍ରଜସୁନ୍ଦର, ପଲ୍ଲୀପ୍ରାଣ ନନ୍ଦକିଶୋର, ରାଜକବି ବଳଭଦ୍ର, ପ୍ରେମପଞ୍ଚାମୃତର ପ୍ରଣେତା ଭୂପତିପଣ୍ଡିତ, ନାଟ୍ୟକାର ରାମଶଙ୍କର, ସାଧକ କବି ଚିନ୍ତାମଣି, ବାଣୀ ଭୂଷଣ ମୃତ୍ୟୁଞ୍ଜୟ ଉତ୍କଳ-ଭାରତୀ କୁନ୍ତଳା କୁମାରୀ, ନାରୀ କବି ସୁଲକ୍ଷଣା ଦେବୀ, ନାରୀ କବି ବିଦ୍ୟୁତ୍ ପ୍ରଭା, କାନ୍ତ କବି ଲକ୍ଷ୍ମୀକାନ୍ତ, ଗୀତି କବି ପଦ୍ମଚରଣ, ଜାତୀୟ କବି ବୀର କିଶୋର ଓ ବାଞ୍ଛାନିଧି ମହାନ୍ତି, ଉତ୍କଳ ରତ୍ନ ପଦ୍ମମଣି, ଗଣକବି ବୈଷ୍ଣବ ପାଣି, ଜଗନ୍ନାଥ ପାଣି ଓ ବାଳକୃଷ୍ଣ ମହାନ୍ତି, ଦେଶ ସେବକ ଆଚାର୍ଯ୍ୟ ହରିହର, ଉତ୍କଳ ଦୁର୍ବାସା ନୀଳକଣ୍ଠ, ଜନସେବକ ଗୋଦାବରୀଶ, ଐତିହାସିକ କୃପାସିନ୍ଧୁ, ଜଗବନ୍ଧୁ ସିଂହ, ଶିବ ପ୍ରସାଦ ମିଶ୍ର, ଶିକ୍ଷାବିତ୍ ଡ. ପ୍ରାଣକୃଷ୍ଣ ପରିଜା, ମାୟାଧର ମାନସିଂହ, କବିଚନ୍ଦ୍ର କାଳୀଚରଣ ପଟନାୟକ, ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, ଜନସେବକ ଗୋପବନ୍ଧୁ ଚୌଧୁରୀ, ବିଶିଷ୍ଟ ଗବେଷକ ଓ ପ୍ରତ୍ନତତ୍ତ୍ୱବିତ୍, ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି, ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସ, କେଦାରନାଥ ମହାପାତ୍ର, ଶ୍ରୀ ବିପିନ୍ ବିହାରୀ ନାଥ, ପ୍ରଭାତ ମୁଖାର୍ଜି, ବିଶିଷ୍ଟ ଜନସେବୀ ଓ ସମାଲୋଚକ ଗୋଦାବରୀଶ ମହାପାତ୍ର, ଯବନ ଭକ୍ତକବି ସାଲବେଗ ଓ ବାକର ମହମଦ, ସିଦ୍ଧ ସନ୍ଥ ଗୋରେଖ ନାଥ, ସନ୍ଥକବି ଭୀମ ଭୋଇ, ପ୍ରସିଦ୍ଧ ସାଧୁ ସନ୍ଥ ଅରକ୍ଷିତ ଦାସ; ବିଶ୍ୱଗୁରୁ ଅବଧୂତ ବାୟା ବାବା, ନାମାଚାର୍ଯ୍ୟ ବାୟାବାବା, ସର୍ବଧର୍ମ ସମନ୍ୱୟ ମତବାଦ ପ୍ରଚାରକ ପ୍ରେମାଚାର୍ଯ୍ୟ ବାବା ମଧୁସୂଦନ, ଠାକୁର ଅଭିରାମ ପରମହଂସ ଓ ଅନ୍ୟାନ୍ୟ ବହୁ ସାଧୁ ସନ୍ଥ, ଜନସେବକ ଓ ବିଶିଷ୍ଟ ସମାଲୋଚକ ଗୋଦାବରୀଶ ମହାପାତ୍ର, ବିପ୍ଳବୀ ସାରଙ୍ଗଧର ଓ ଅନ୍ୟାନ୍ୟ ବହୁ ଦେଶରେ ଥିବା ଶିକ୍ଷାବିତ୍ ବୈଜ୍ଞାନିକ, କଳାକାର, ସ୍ୱାଧୀନତା ସଂଗ୍ରାମୀ, ସାହିତ୍ୟିକ, କବି, ଯେଉଁମାନଙ୍କର ନାମ ଏଠାରେ ଉଲ୍ଲେଖ କରାଯାଇ ପାରିନାହିଁ ।

ତେଣୁ ପ୍ରତି ଅପ୍ରେଲ ପହିଲା ହେଉଛି ସେହି କୃତୀ ସନ୍ତାନମାନଙ୍କ ସ୍ମୃତି ସ୍ମରଣର ଦିନ, ଯେଉଁଦିନ ସେମାନଙ୍କ ବିଷୟରେ ସ୍ମୃତିଚାରଣ କରିବାକୁ ଅପୂର୍ବ ସୁଯୋଗ ମିଳିଥାଏ । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଏକ ପଂକ୍ତି ଏ କ୍ଷେତ୍ରରେ ମନେପଡେ "ଇତିହାସ ଯାର ଭୀମ ଲଳିତ, ସନ୍ତତି କରେ ପୂତ ମହତ, ଭୂଷିତ କରେ ସେ ଜନନୀ ତନୁ କୀର୍ତ୍ତି କୁସୁମମାଳେ" । ତାହାହିଁ ହେବ ବାସ୍ତବରେ ବୀରପୂଜା ଓ ପ୍ରତିଭା ପୂଜା ।

---

ଡି-୧୧-
ବ୍ଲକ୍ ନଂ-୨
ଜୟଦେବ ବିହାର, ଭୁବନେଶ୍ୱର-୧୩



OGP—MP-VI (I. & P. R.) 71—15,000—21-3-1988



ରାଷ୍ଟ୍ରପତି ଆର୍. ଭେଙ୍କଟରମଣଙ୍କର ଅହମ୍ମଦନଗରରେ ପଦାତିକ ବାହିନୀକୁ ପତାକା ପ୍ରଦାନ । ସେନାଧ୍ୟକ୍ଷ ଜେନେରାଲ୍ କେ. ସୁନ୍ଦରଜୀ ରାଷ୍ଟ୍ରପତିଙ୍କ ବାମ ପାର୍ଶ୍ୱରେ

